# ସକାଳର କଥା

(ଉପନ୍ୟାସ)

ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର



**ସକାଳର କଥା**

(ଉପନ୍ୟାସ)

ଔପନ୍ୟାସିକା : **ଡକ୍ଟର ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର**
'କୈବଲ୍ୟ', ବଳଗଣ୍ଡି, ବଡ଼ଦାଣ୍ଡ, ପୁରୀ

ପ୍ରକାଶକ : **ବିଜୟିନୀ ପବ୍ଲିକେଶନ୍ସ**
ଶଙ୍କରପୁର, ଅରୁଣୋଦୟ ମାର୍କେଟ୍, କଟକ - ୧୨

ପ୍ରଥମ ପ୍ରକାଶନ : ଶ୍ରୀଗୁଣ୍ଡିଚା, ୪ ଜୁଲାଇ ୨୦୧୯

ପ୍ରଚ୍ଛଦ : ରମାକାନ୍ତ ସାମନ୍ତରାୟ

ମୁଦ୍ରଣ : ସଙ୍ଗୀତା ପ୍ରିଣ୍ଟର୍ସ, କଟକ

---

**Sakalara Katha**

(Novel)

Writer : **Dr. Swarajya Laxmi Mishra**
'Kaibalya', Balagandi, Badadanda, Puri.

Publisher : **Bijayinee Publications**
Shankarpur, Arunodaya Market, Cuttack - 753 012
Voice : 0671-2328723, 9439241471

First Edition : Srigundicha, 4 July 2019

Cover Art : Ramakanta Samantaray

Printed at : Sangeeta Printers, Cuttack

---

Price : ₹ 180 ISBN : 978-93-88422-47-5

# କଥା ଦୁଇପଦ

ସୁଖର କଥା ଉପନ୍ୟାସ 'ସକାଳର କଥା' ପ୍ରକାଶ ହେବାକୁ ଯାଉଛି । ବିଜୟିନୀ ପବ୍ଲିକେଶନ୍, ପ୍ରକାଶକ ଶ୍ରୀଯୁକ୍ତ ଦିଲୀପ କୁମାର ବେହେରା ଉପନ୍ୟାସଟିର ପ୍ରକାଶନ ଦାୟିତ୍ୱ ନେଇ ମୋତେ ବାଧିତ କରିଛନ୍ତି । ମୁଁ ଆଗରୁ ବି କହିଛି, ଆଜି ପୁଣିଥରେ କହୁଛି, ନିଜ ଲେଖା ସଂପର୍କରେ ଅଧିକା ମୋର କିଛି କହିବାର ନାହିଁ । ମୋ ହାତଗଢ଼ା ଚରିତ୍ରମାନେ ହିଁ ନିଜକଥା କହିବା ସଂଗେ ସଂଗେ ପରିବେଶ, ପରିସ୍ଥିତି ଓ ସମୟ ସହିତ ମୋ କଥା ବି ପରୋକ୍ଷରେ କହିବେ । ଆଉ ପାଠକ ନିଜେ ତା'ର ମୂଲ୍ୟାଙ୍କନ କରିବେ ।

ତଥାପି କହୁଛି : ୨୦୧୫ ମହାପୂଜା ସଂଖ୍ୟା 'ଜନସୁଧା'ରେ ଉପନ୍ୟାସ 'ସିନ୍ଦୂରା ଫାଟିବାର ବେଳ' ପ୍ରକାଶିତ ହୋଇ ବହୁ ପାଠକୀୟ ଶ୍ରଦ୍ଧା ଲାଭ କରିଥିଲା । ଉପନ୍ୟାସଟିକୁ ପଢ଼ି ସେତେବେଳେ ବହୁପାଠକ ମୋ ନିକଟରେ ମୃଦୁ ଅଭିଯୋଗ ବାଢ଼ିଥିଲେ । ଅଭିଯୋଗ ଥିଲା ଯେ- ଲେଖିକା, ମୁଖ୍ୟ ଚରିତ୍ର ଲକ୍ଷ୍ମୀ ଚରିତ୍ର ପ୍ରତି ଅବିଚାର କରିଛନ୍ତି । ତା'ର ଛୋଟ ଜୀବନରେ ଅନେକ ସଂଘର୍ଷ ଭିତରେ ପାଦେ ପାଦେ ହୋଇ ଆଗକୁ ବଢ଼ିବାକୁ ପ୍ରୟାସ କରିଥିବା ଲକ୍ଷ୍ମୀକୁ ଉଚିତ ନ୍ୟାୟ ମିଳିନି । ହତାଶ ହେଇଛନ୍ତି ପାଠକ । ବୋଧେ ଉତ୍କଣ୍ଠା ନେଇ ପାଠକ

ଯେତେବେଳେ ଲକ୍ଷ୍ମୀର ଖବର ଜାଣିବା ପାଇଁ ଅପେକ୍ଷା କରିଛି- କିଛି ଗୋଟାଏ ଘଟିବ, ତା' ଦୁଃଖ ରାତିର ଅବସାନ ହେବ ନିଶ୍ଚୟ ଆଉ ଅନ୍ଧାର ରହିବନି, ସକାଳ ହେବ ଅଥବା ତା' ପାଇଁ କିଛି ସୁନେଲି ଭବିଷ୍ୟତର ସ୍ୱପ୍ନ ଦେଖାଇବେ ଲେଖିକା । କିଛି ନ ହେଲେ ଲକ୍ଷ୍ମୀର ମାଟ୍ରିକ ପରୀକ୍ଷା ଫଳର ଖବର ଶୁଣେଇ, ତା' ସଫଳତାର ବାର୍ତ୍ତା ଦେବେ । ଲକ୍ଷ୍ମୀ ଯେ, ଆକାଶ ଛୁଇଁବାକୁ ହାତ ବଢ଼େଇଥିଲା; ସ୍ୱପ୍ନ ଦେଖିଥିଲା । ତା' ସହିତ ଅନ୍ୟ ଚରିତ୍ରମାନେ ମଧ ଅନେକ ସ୍ୱପ୍ନ ଦେଖିଥିଲେ ଲକ୍ଷ୍ମୀକୁ ନେଇ ।

କିନ୍ତୁ ଲେଖିକା- ହଠାତ୍ ଉପନ୍ୟାସଟିକୁ ନିର୍ମମ ଭାବେ ସାରିଦେଇ ପାଠକୀୟ ଉତ୍କଣ୍ଠାକୁ ଆହୁରି ବଢ଼େଇଦେଲେ । 'କ'ଣ ହେଲା ଲକ୍ଷ୍ମୀର...', 'କ'ଣ ହୋଇପାରେ...' 'କ'ଣ ହେଇଥିବ ଲକ୍ଷ୍ମୀର...' ଭଳି ଅନେକ ପ୍ରଶ୍ନ ଆସି ଠିଆହେଲା ମନରେ ।

ଅବଶ୍ୟ, ମଣିଷ ତା'ର ଅର୍ଥପୂର୍ଣ୍ଣ ଜୀବନଟିଏ ବଂଚିବା ପାଇଁ ଅହରହ ସଂଘର୍ଷ କରି ଚାଲିଥାଏ, ଆସୁ ଯେତେ ଝଡ଼୍‌ଝନ୍‌ଜା, ବିପଦଆପଦ ପଛଘୁଞ୍ଚା ଦିଏନା । ଦମ୍ଭର ସହିତ ସାମ୍‌ନା କରେ । ହାର୍ ମାନେନା । ତା'ର ବିଶ୍ୱାସ, ସବୁଦିନେ ଏଇ ଅନ୍ଧାର ନଥିବ ସକାଳ ଆସିବ, ଆଲୁଅକୁ ନେଇ । ସେଇ ସକାଳକୁ ହିଁ ମଣିଷର ଅପେକ୍ଷା । ସେଥିପାଇଁ ତ ପୂର୍ବାକାଶରେ ଚମତ୍‌କାରୀ ସିନ୍ଦୂରିତ ଆଲୁଅ ଲକ୍ଷ୍ମୀ ମନରେ ଅନନ୍ତ ଆଶାର ସମ୍ଭାର ନେଇ ଠିଆ ହୋଇଛି; ଏବଂ ପାଠକୀୟ ଚେତନା ମଧ- ସହୃଦୟତାର ସହିତ ତାକୁ ଗ୍ରହଣ କରିନେଇଛି- ଏଥର ସକାଳ ଆସିବ ନିଶ୍ଚୟ ଅପାର ସମ୍ଭାବନାର ହୀରାଟିଆ ସକାଳ ।

ହେଲେ କାହିଁ ସେଇ ଝଲମଲ ସକାଳ ? ଆମେ ଯେ ଅପେକ୍ଷା ରଖିଛୁ- ଆପଣଙ୍କ ପାଖରୁ 'ଲକ୍ଷ୍ମୀପୁରାଣ' ଶୁଣିବାକୁ ।

ମୋ ପାଖରେ ଅନ୍ୟ କିଛି ଉପାୟ ନ ଥିଲା । ଲକ୍ଷ୍ମୀ ପାଠକଙ୍କ ଚେତନାକୁ ଆପ୍ଳୁତ କରି ରଖିଛି । ମୋତେ ଉତ୍ତର ଦେବାକୁ ହେବ । ସବୁ ନହେଲେ ବି କିଛି ପ୍ରଶ୍ନର ଉତ୍ତର ତ ଦେବାକୁ ହେବ । କାରଣ ସାହିତ୍ୟ ସମାଜ ପାଇଁ ଉଦ୍ଦିଷ୍ଟ । ସମାଜ ପାଇଁ ତା'ର କିଛି ପ୍ରତିବଦ୍ଧତା ଅଛି । ସେ ଅଙ୍ଗୀକାରବଦ୍ଧ । ଆଉ ମୋ ଚରିତ୍ରମାନେ ତ ପୂରାପୂରି ସାମାଜିକ । ସମାଜରେ ଚଲାଫେରା କରୁଥିବା ନିତିଦିନର ମଣିଷ ।

ଆତ୍ମବିଶ୍ୱାସକୁ ସାଥିରେ ନେଇ ଆଗକୁ ପାଦ ବଢ଼ାଉଥିବା ମଣିଷ ଯଦି ହତାଶ ହୋଇ ଆଣ୍ଠୁଭାଙ୍ଗି ପଡ଼ିଯିବ, ତା'ହେଲେ ତ ସାହିତ୍ୟ ଉପରୁ ତା'ର ଆସ୍ଥା ତୁଟିଯିବ । ବିଶ୍ୱାସ ଭାଙ୍ଗିଯିବ । ହାରିଯିବ । କାହା ଉପରେ ସେ ଭରସା ରଖିବ ?

ତେଣୁ ହିଁ ପାଠକଙ୍କ ଅନୁରୋଧ ଆଉ ଶ୍ରଦ୍ଧାକୁ ଉପେକ୍ଷା ନ କରି ମୋର କଲମ ପ୍ରୟାସ କରିଛି- 'ସକାଳର କଥା' କହିବାକୁ । ଜାଣେନା କେତେଦୂର ସଫଳ ହୋଇଛି ମୋ' କଲମ । ତେବେ ଲକ୍ଷ୍ମୀ ଜୀବନର ସଫଳଗାଥା ଶୁଣେଇବାକୁ ଯାଇ, ମୋ ମନରେ ବି ପ୍ରଶ୍ନ ଉଠିଛି- ଅନ୍ଧାର ପେଟ ଭିତରୁ ଆଲୁଅର ଜନ୍ମ ନା ଆଲୁଅ ଭିତରୁ ଅନ୍ଧାରର ଅଥବା ଦୁହେଁ ଓତପ୍ରୋତ ଭାବେ ଜଡ଼ିତ ? ଅବଶ୍ୟ ଏହା ବିତର୍କର କଥା । ମୁଁ ତା' ଭିତରକୁ ପଶୁନି । ତେବେ ମୋ ବିଚାରରେ ଉଭୟର ମହତ୍ତ୍ୱ ଅଛି, ଅନ୍ଧାର ଯେତେ ଭୟଙ୍କର, ଯନ୍ତ୍ରଣାଦାୟକ, ଆଲୁଅରେ ବି କିଛି କମ୍ ବିପଦ ନାହିଁ ।

ତେବେ ମୁଁ ଏଠି ଲକ୍ଷ୍ମୀ ଜୀବନର ସ୍ନିଗ୍ଧ ଝଲମଲ ସକାଳର କଥା ହିଁ କହିଛି । ଯୋଉ ସକାଳକୁ ଦିନେ ଭେଟିବ ବୋଲି ସେ ସ୍ୱପ୍ନ ଦେଖିଥିଲା, ଆଶା ବାନ୍ଧିଥିଲା; କହିଛି ମୋ ଢଙ୍ଗରେ । ଯୋଉ ପରିବେଶ, ପରିସ୍ଥିତି ଭିତରେ ସେ ବଢ଼ିଛି, ତା' କ୍ଷେତ୍ରରେ ଯାହା ସମ୍ଭବ ଓ ସମୀଚିନ ସେଇ ପ୍ରକାରେ ହିଁ ତାକୁ ଗଢ଼ିଛି । ଅନ୍ୟ ପ୍ରକାରେ କହିଲେ, ସେ ତା' ପ୍ରକାରେ ଗଢ଼ି ହୋଇଯାଇଛି । ତେବେ, ତା' ଆଗାମୀ କର୍ମମୟ ଜୀବନରେ ସେ ଆହୁରି ଆଖି ଝଲସା ହାରାଟିଆ ସକାଳକୁ ଭେଟିବ । ଭେଟିବ ବନ୍ଧୁ ବିରୋଧାଭାଷର ଜଟିଳତମ ପୃଥିବୀକୁ । ସରଳ ନୀତିଗତ ଏକ ଆଦର୍ଶମୟ ଜୀବନଧାରାରେ ବିଶ୍ୱାସ ରଖି, ବଢ଼ିଉଠିଥିବା ତା'ର ମାନବବାଦୀ ଚେତନା ଏଇ ଭିନ୍ନ ପୃଥିବୀକୁ କିଭଳି ସାମ୍ନା କରିବ... ତାହା ଭବିଷ୍ୟତ ହିଁ କହିବ । ତେବେ ମୁଁ କାମନା କରୁଛି, ତା'ର ମହିମାମୟ ସଂକଳ୍ପ ପରିପୂର୍ଣ୍ଣ ହେଉ ଏବଂ କାମନା କରୁଛି ଆଗାମୀ ସମୟର ଲକ୍ଷ୍ମୀମାନେ ଏ ଦେଶ ଜାତିର ମୁଖ ଉଜ୍ଜ୍ୱଳ କରନ୍ତୁ ।

ଆଉ ପଦେ କଥା : ଏଇ ଉପନ୍ୟାସଟିକୁ ପାଠକ ହୁଏତ ଉପନ୍ୟାସ 'ସିନ୍ଦୂରା ଫାଟିବାର ବେଳ'ର ଦ୍ୱିତୀୟ ଭାଗ ବୋଲି ଭାବିବେ । ସ୍ୱାଭାବିକ ମଧ୍ୟ । କାହାଣୀ, ଚରିତ୍ର ସବୁ ତ ସମାନ । ହେଲେ 'ସକାଳର

କଥା' ନିଜେ ଗୋଟିଏ ସ୍ୱୟଂ ସଂପୂର୍ଣ୍ଣ ଉପନ୍ୟାସ ଭାବେ ନିଜ ପରିଚୟ ଦେବାର ଯୋଗ୍ୟତା ରଖିଛି ।

ମୋ କଥା ଏତିକି । ତେଣିକି ପାଠକ ନିଜ ବିଚାର ରଖିବେ ଓ ନିଜ ମାପରେ ମାପିବେ । ପରିଶେଷରେ ପ୍ରଚ୍ଛଦପଟ ଶିଳ୍ପୀ ରମାକାନ୍ତ ସାମନ୍ତରାୟଙ୍କୁ ମୋର ଅଶେଷ ଧନ୍ୟବାଦ । ତାଙ୍କ ତୂଳୀର ଶେଷ ସ୍ପର୍ଶ ହିଁ ଉପନ୍ୟାସଟିକୁ ପୂର୍ଣ୍ଣାଙ୍ଗ ରୂପ ଦେଇଛି ।

ସ୍ୱରାଜ୍ୟ ଲକ୍ଷ୍ମୀ ମିଶ୍ର

# ସକାଳର କଥା

"ସୁଧାମୟୀ ଓଲଡ୍ ଏଜ୍ ହୋମ୍" ର ବାହାରେ ଏବେ ବି ବହଳ ଅଂଧାର । ରାତି ପାହିନି, ଅନେକ ଡେରି ଅଛି ଆଲୁଅ ଫିଟିବାକୁ । ଚାରିଆଡ଼ ନିଃଶବ୍ଦ, ଶୂନ୍‌ଶାନ୍ । ପକ୍ଷୀଙ୍କ ନିଦ ବି ଭାଙ୍ଗିନି । ତଥାପି ଗଛଡ଼ାଳ ଭିତରୁ ସେମାନଙ୍କ ଡେଣା ଫଡ଼କାଇବା ଶବ୍ଦ ଶୁଭୁଛି କେତେବେଳେ କେମିତି ।

ମାଘମାସ ସରାସରି । ପତଳା କୁହୁଡ଼ିର ଆସ୍ତରଣ ତଳେ କର୍ମମୁଖର ସହର ରେଜେଇ ଭିତରେ ଉଷୁମ ଟାଣି ଶୋଇଛି ଯେତେବେଳେ ଜରାଶ୍ରମର ନିଦ କିମିତି ଭାଙ୍ଗନ୍ତା ? ସହଜେ ବୟସର ଶେଷ ପାହାଚରେ ଥିବା ଅନ୍ତେବାସୀଗଣ..... ଶୀତବୁଢ଼ୀ ତ କାବୁ କରି ରଖିଛି ସଭିଙ୍କୁ ।

ହେଲେ, ଲକ୍ଷ୍ମୀ ଆଖିରେ ନିଦ ନ ଥିଲା । ରାତିସାରା ତା' ଆଖିରେ ପଲକ ପଡ଼ିନି । ଓଜନିଆ ଲାଗୁଛି ଆଖିପତା । ଝରକା ଆଡୁ ଆଖି ଫେରେଇ ଖଟରେ ଶୋଇଥିବା, ରଘୁମଉସାଙ୍କ ଆଡ଼କୁ ଚାହିଁଲା, ସେମିତି ନିସ୍ତେଜ ହୋଇ ପଡ଼ିଛନ୍ତି । ରାତିସାରା ସାଲାଇନ୍ ଗ୍ଲୁକୋଜ୍ ଚାଲିଛି । ଏଇତ କିଛି ସମୟ ପୂର୍ବରୁ ଶେଷ ବଟଲ୍‌ଟାକୁ ଲଗେଇଛି । ସରିବାକୁ ତ ଆହୁରି ଘଣ୍ଟାଏ ଲାଗିଯିବ । ତାଙ୍କୁ ହିଁ ଚାହିଁ ବସିଛି । ବୟସ୍କ ମଣିଷ । କେତେବେଳେ କୋଉ କଥା । ମୁହିଁ ଆଡ଼େଇ ପାରୁନି । ସନ୍ଧ୍ୟାବେଳେ ଡାକ୍ତର ଆସି ଦେଖିଯାଇଥିଲେ । ରୋଗୀର ଅବସ୍ଥା ଦେଖି ପରାମର୍ଶ ଦେଇଯାଇଥିଲେ

ଆବଶ୍ୟକ ମତେ । ସେ ଅକ୍ଷରେ ଅକ୍ଷରେ ତାକୁ ପାଳନ କରିଛି । କାହାକୁ ଅପେକ୍ଷା ନ କରି ନିଜେ ହିଁ ସାଲାଇନ୍ ଦେଇଛି ।

ଏଇ ଜରାଶ୍ରମକୁ ଆସିବା ଦିନୁ ସେ, ଏଭଳି କିଛି ଛୋଟ ମୋଟ ନର୍ସିଂବିଦ୍ୟାକୁ ନିଜର ସ୍ୱଭାବ ସୁଲଭ ଢଙ୍ଗରେ ଆୟତ୍ତ କରିନେଇଛି । କାରଣ ବେଳ ଅବେଳରେ ବିଶେଷ କରି ରାତିରେ ଡାକ୍ତର ଡାକିବା ସମ୍ଭବ ହୁଏନା । ରୋଗ ତ ଅପେକ୍ଷା କରେନା, ପରିସ୍ଥିତି ଅସମ୍ଭାଳ ହେଲେ, ଅଥବା କିଛି ଜରୁରୀ ଅବସ୍ଥା ଉପୁଜିଲେ, ପ୍ରଥମେ ପ୍ରାଥମିକ ଚିକିତ୍ସା ତ ନିହାତି ଦରକାର । ସେଥିପାଇଁ ପ୍ରଥମେ ଫୋନ୍‌ରେ ଡାକ୍ତରଙ୍କଠୁଁ ପରାମର୍ଶ ମାଗି ନେଇ ଜରୁରୀ କାମ ଚଳେଇନିଏ । ସକାଳ ହେଲେ ଅନ୍ୟାନ୍ୟ ବ୍ୟବସ୍ଥା କରାହୁଏ । ଖାସ୍ ଏଇଥିପାଇଁ ଏସବୁ ଜ୍ଞାନର ଆବଶ୍ୟକତା ନିହାତି ଜରୁରୀ ବୋଲି ସେ ଭାବେ । ତେବେ ରୋଗୀର ସେବା ଶୁଶ୍ରୂଷା କରିବାକୁ ଭଲଲାଗେ ତାକୁ । ରୋଗୀ ମଧ ତା' ଦାୟିତ୍ୱରେ ଥିଲେ ନିଶ୍ଚିନ୍ତ ମନେ କରନ୍ତି । ଏ ଗୁଣଟି ସେ ତା' ବୋଉ ପାଖରୁ ପାଇଛି ।

ଲକ୍ଷ୍ମୀ ଦୀର୍ଘ ନିଃଶ୍ୱାସ ନେଇ ଅଳସ ଭାଙ୍ଗିଲା । ପାଖ ଟେବୁଲ୍ ଉପରେ ଥୁଆ ହେଇଥିବା ପାଣିବୋତଲରୁ ପାଣି ଚାରିଢୋକ ପିଇ ପୁଣି ଚାହିଁଲା ଝରକା ବାହାରର ଅଂଧାରକୁ ।

ଚାରିଟା ବାଜି ନଥିବ । ଆକାଶକୁ ନଜର ପକେଇଲା । ତାରା କିଛି ଲିଭିଗଲେଣି । ହାତଘଣ୍ଟାଟା ଆଲ୍‌ମିରା ଥାକରେ ଅଛି । ଉଠିଯାଇ ଦେଖିଆସିଲେ ହେବ, ଯେ, । ଉଠିବାକୁ ତାକୁ ମନ ହେଲାନି । ଟିକିଏ ଅଳସ ଲାଗୁଛି । ତା'ଛଡ଼ା କ'ଣ ବି ଏତେ ଆବଶ୍ୟକ ସମୟ ଦେଖିବା । ଏମିତି ତ ଏଇଠି ବସିବାକୁ ପଡ଼ିବ ତାକୁ । ପରିସ୍ଥିତିର ତାଗିଦା ।

ବହିଖୋଲି ପଢ଼ାପଢ଼ି କଲେ ହୁଅନ୍ତା । ହେଲେ ଆଉ ଇଚ୍ଛା ନଥିଲା ଅନେକ ରାତି ଯାଏ ସେ ପଢ଼ିଛି । ବରଂ ଚୁପ୍‌ଚାପ୍ କିଛି ସମୟ ବାହାର ଅଂଧାରକୁ ଚାହିଁ ବସିବ । ନିତିଦିନ ସେ ଅଂଧାର ସହିତ କଥା କୁହେ ଏଇମିତି । ତାକୁ ଭଲ ଲାଗେ । ଅଂଧାର ତାର ପ୍ରିୟ । ପିଲାଦିନରୁ ଅଂଧାରକୁ ସେ ଭୟ କରେନା ।

ଏଥର ଲକ୍ଷ୍ମୀ ଚଉକିରେ ଆଉଜି ସହଜ ହୋଇ ବସିଲା । ଝରକା ବାହାରେ ଆଖି ସାମ୍‌ନାରେ ଦିଗନ୍ତ ବ୍ୟାପୀ ଜଂଗଲ ଆଉ ଜଂଗଲ । ଦିନର ଆଲୁଅରେ ଏଇ ଆରଣ୍ୟକ ସବୁଜିମା ଲହଡ଼ି ଭାଙ୍ଗେ । ଅଜସ୍ର ସମ୍ଭାବନାର ଦିଗନ୍ତ ଖୋଲି ଦିଏ ମଣିଷ ଆଖିରେ । ସୂର୍ଯ୍ୟ ବୁଡ଼ିଲେ, ଅଂଧାର ମାଡ଼ିଆସେ । ଅଂଧାର ଆଉ ଅଂଧାର, ଲମ୍ୱା ଅଂଧାରର ଏଇ ଦିଗନ୍ତ ବିସ୍ତାରୀ ସମୁଦ୍ର ଭିତରେ ବିନ୍ଦୁଏ ଆଲୁଅ ବି ଦିଶେନା । ଅଥଚ ଲାଗିଲେ ମଣିଷ ଆଲୋକର ସଂଧାନ କରେ । ତାର ଦୁର୍ଦ୍ଦମନୀୟ ଇଚ୍ଛା ସେ ଅଂଧାର

ଭିତରୁ ଆଲୋକକୁ ଖୋଜି ଆଣିବ । ଏଥିପାଇଁ ତାର ପ୍ରୟାସର ଅନ୍ତ ନାହିଁ । ଅଥଚ ଲାଗିଲେ ବି ଅପେକ୍ଷା କରିବାକୁ ପଡ଼େ ଆଲୁଅକୁ, ପୁଣି ଏକ ନୂଆ ସକାଳ ପାଇଁ । ଲକ୍ଷ୍ମୀ ଭାବେ ଆଉ କିଛି ନହେଲେ ବି, ଏଇ ଅଂଧାର-ଆଲୁଅର ଖେଳ ମଣିଷକୁ ଧୈର୍ଯ୍ୟ ଆଉ ଅପେକ୍ଷାର ଅର୍ଥ ତ ଶିଖାଏ- ଆଶାବାଦୀ କରେ । ଜୀବନଟା କେବଳ ଅଂଧାର ନୁହେଁ, ଆଲୁଅ ବି ନୁହେଁ । ଅଂଧାର ଆଲୁଅର ସମଷ୍ଟି । ଅଂଧାର ରହିବନି ସବୁବେଳେ, ଆଲୁଅ ଫିଟିବ, ଦିଗ ଦିଶିବ । ପୁଣି ଥମିଗଲା ମଣିଷ ବାଟ ଚାଲିବ ଆଗକୁ ଆଗକୁ । କେବଳ ଧୈର୍ଯ୍ୟ ଓ ସାହସ ଦରକାର । 'ଅଂଧାରକୁ ଭୟ କଲା ମଣିଷ କେବେ ଆଗେଇ ପାରେନା', -ବୋଉ ତାକୁ ଶିଖେଇଛି ଏକଥା ପିଲାଦିନୁ । ସେଇଥିପାଇଁ ଅଂଧାର ତାର ଅନ୍ତରଂଗ । ନିତି ସେ ଅଂଧାରକୁ ଭେଟି ଆସିଛି ଏମିତି ଏବଂ ଅପେକ୍ଷା କରିଛି ଆଲୁଅ ଝଲମଲ ସକାଳକୁ । କାରଣ ଆଲୋକରେ ଅଛି ସାତରଂଗ, ଇନ୍ଦ୍ରଧନୁର ସାତରଂଗ ଅଥଚ ଆଲୋକ ଯେଉଁଠି ଅଛି- ଇନ୍ଦ୍ରଧନୁର ସ୍ଥିତି ବି ଅଛି ସେଇଠି । ଆଲୋକର ଏହା ହିଁ ମହତ ଦର୍ଶନ- ଆମକୁ ବାଟ ଦେଖାଏ ଜୀବନକୁ ଇନ୍ଦ୍ରଧନୁରେ ପରିଣତ କରି ।

ଜନବସତିଠାରୁ ବେଶୀ ଦୂର ନହେଲେ ବି, ସହର ଉପକଣ୍ଠରେ ଏଇ ଜରାଶ୍ରମର ଅବସ୍ଥିତି । ଆଖପାଖରେ କିଛି ଆପାର୍ଟମେଣ୍ଟ ଅବଶ୍ୟ ଅଛି । ତେବେ କୋଳାହଳ କମ୍ । ସ୍ୱାଭାବିକ କଥା । ଯେହେତୁ ସହରୀ ଜୀବନ ଏକାନ୍ତ ବ୍ୟକ୍ତିଗତ । ନିଜ ନିଜ କାମରେ ସମସ୍ତେ ବ୍ୟସ୍ତ । ସଂପର୍କ ବାନ୍ଧିବା ସମ୍ଭବ ହୁଏନା । କେହି କାହା ପାଇଁ ସଂପର୍କ କିମ୍ବା ସହାନୁଭୂତିର ହାତ ବଢ଼ାଏନା । ତେଣୁ ନିଃସଙ୍ଗତା ବ୍ୟାଧିରେ ଆଜିର ମଣିଷ ସଂକ୍ରମିତ ବୋଲି କେହି କେହି କୁହନ୍ତି ।

ଆଶ୍ରମର ଆଗପଟ ଦେଇ ରାସ୍ତା ଲମ୍ବିଯାଇଛି ହାଇୱେ ଛୁଇଁବାକୁ । ଦିନବେଳେ କିଛିଟା ଗାଡ଼ିମୋଟର୍, ରିକ୍ସାର ଗହଳି ଲାଗେ । ସ୍କୁଲ୍ ଅଫିସ୍ ବେଳରେ ଗହଳଚହଳ ସୃଷ୍ଟି ହୁଏ । ମଣିଷ ଦିଶନ୍ତି ରାସ୍ତାରେ । ଅଫିସ୍ ଫେରନ୍ତି ବେଳ ଗଡ଼ିଲେ ଗହଳି ଭାଙ୍ଗେ । ସମସ୍ତେ ଘର ଭିତରେ । ରାତି ହେଲେ ସବୁ ଶୁନ୍‌ଶାନ୍ । କେବେ କେମିତି ଗାଡ଼ି ମୋଟରର ପେଁ ପାଁ ଶୁଭେ । ନହେଲେ ନିଛାଟିଆ ।

ଆତ୍ମୀୟ ସ୍ୱଜନଙ୍କ ଠାରୁ ବିଚ୍ଛିନ୍ନ ଏଇ ଏକାନ୍ତ ଇଲାକା ଭିତରେ ଈଷତ୍ ଗେରୁଆ ରଂଗର 'ସୁଧାମୟୀ ଓଲଡ୍ ଏଜ୍ ହୋମ୍' କୁ ଦେଖିଲେ ମନେ ହେବ, ସତେ ଯେମିତି ବାନପ୍ରସ୍ଥ ଗ୍ରହଣ କରିଥିବା ସନ୍ନ୍ୟାସୀଟିଏ ନିର୍ଦ୍ଦିଷ୍ଟ ଭାବେ ଯୋଗାସନରେ ବସି ସଂପର୍କଶୂନ୍ୟ ବୈରାଗ୍ୟ ଯୋଗକୁ ଅଭ୍ୟାସ କରୁଛି ଆଉ ଜୀବନ ସତ୍ୟର ଉଦ୍‌ଘୋଷଣା କରି କହୁଛି - "ଏଇ ସଂସାର ମିଛ, ସଂପର୍କ ମିଛ; ସବୁ ମାୟା ହିଁ ମାୟା, ଦିନର ଝଲମଲ ଆଲୁଅର ଭେଲିକିରେ ପାଗଳ ହୋଇ ମଣିଷ ସିନା ସଂପର୍କ ଯୋଡ଼ି ସଂସାର ପାତେ, ଆଉ ଦୁଃଖକୁ

ଡାକି ଆଣେ । ସଂଜ ହେଲା ବେଳକୁ ଦେଖେ ତା' ପାଖରେ କେହି ନାହିଁ - ସେ ଏକୁଟିଆ ଠିଆ ହୋଇଛି । ତା' ଚାରିପଟେ ଘେରି ରହିଛି ଅଂଧାର ।" ସମସ୍ତେ ଏଇକଥା ହିଁ କୁହନ୍ତି, କହି ଆସିଛନ୍ତି । ସେ ଶୁଣିଛି, ଜରାଶ୍ରମର ପ୍ରତିଟି ଅନ୍ତେବାସୀଙ୍କ ପାଟିରୁ । ବିତେଇ ଆସିଥିବା ଜୀବନର ଅନ୍ତିମ ନିର୍ଯ୍ୟାସ ସେମାନଙ୍କର । କେବଳ ଭିନ୍ନ ଭିନ୍ନ ପାଟିରେ ଭିନ୍ନ ଭିନ୍ନ ଶୁଭେ ଯାହା ।

ଲକ୍ଷ୍ମୀ ଧୈର୍ଯ୍ୟର ସହିତ ଶୁଣେ ତଟସ୍ଥ ହୋଇ । ତାକୁ ସଂଦେହ ଘେରରେ ଛନ୍ଦି ଦିଏ ସେମାନଙ୍କର ଜୀବନ ତର୍ଜମା । ମନେପଡ଼େ କମଳା ମା' ଆଈର କଥା, ସିଏ ବି ଏମିତି କହୁଥିଲା- "ସମସ୍ତେ ଏକା ଆସି ଥେଇଁ । ମଲାବେଳକୁ ବି ସେଇ ଏକା, ମଝିବେଳଟାରେ ଯାହା ସଂପର୍କ ଯୋଡ଼ାଯୋଡ଼ି । ନହେଲେ ଅଂଧାର ହିଁ ସତ, ସେଇ ଥାଏ ସାଥିରେ ।"

ନିଜକୁ ନିଜେ ପ୍ରଶ୍ନ କରେ ଲକ୍ଷ୍ମୀ । ଯଦି ଅଂଧାର ସତ, ତେବେ ଆଲୁଅ ପାଇଁ ମଣିଷର ପ୍ରତୀକ୍ଷା କାହିଁକି ? ତା'ହେଲେ ଜୀବନର ମାନେ କଣ ? କଣ ତା'ର ସଂଜ୍ଞା ? ଆଲୁଅ ପାଇଁ କାହିଁକି ତାର ଏତେ ବ୍ୟାକୁଳତା ?

ଯୁକ୍ତି କରେ ସେ ବେଳେବେଳେ ନାରଣ ଅଜା, ଦିବାକର ମଉସା, ଶିବମାମୁଁ, ରାଣୀ ଆଈଙ୍କ ସହିତ । ଏଇ ତା' ସାମ୍‌ନାରେ ଯୋଗନିଦ୍ରାରେ ଶୋଇଥିବା ରଘୁରାଜ ମଉସା କମ୍ ତର୍କ କରିନାହାନ୍ତି ତା' ସହିତ । ସେ ପଚାରେ, ଜୀବନର ଅର୍ଥ ତ ଆଗକୁ ଚାଲିବା । ଆଶା ବଞ୍ଚିଛି ବୋଲି ଜୀବନ ଗଡ଼ିଚାଲିଛି । ଆଶା ହିଁ ଆଲୋକ । ଅଂଧାର ଭିତରେ ଆଶା ବଞ୍ଚେନା, ଆଲୁଅ ହିଁ ଆଶାକୁ ପୋଷି ରଖେ ତାକୁ ଆଗୁସାର କରେ । ଜୀବନ ସଂଘର୍ଷ ପାଇଁ ଖୋରାକ ଯୋଗାଏ । ଆଶା ତେଜେ - ମଣିଷ ତାକୁ ଛୁଇଁବା ପାଇଁ ହାତ ବଢ଼ାଏ । ଚାଲେ, ଦୌଡ଼େ ଆଗକୁ । ଏକଥା କ'ଣ ମିଛ ?

ରଘୁମଉସା କୁହନ୍ତି- ନା, ମିଛ ନୁହେଁ, ସତ । ହେଲେ ତା'ଠୁ ଆହୁରି ସତ ଏଇ ଅଂଧାର । କାରଣ ଏଇ ଅନ୍ଧାର ପେଟରୁ ତାର ଜନ୍ମ ଆଉ ତାର ଶେଷ ବି ସେଇ ଅଂଧାରରେ । ଶୂନ୍ୟକୁ ଚାହିଁ ଉତ୍ତର ଦିଅନ୍ତି ରଘୁମଉସା । ତୁ ଆହୁରି ଜୀବନକୁ ଦେଖିନୁ, ଏଇତ ଆରମ୍ଭ ହେଇଛି ତୋ' ଜୀବନ । ଏବେ ତ ଆଲୁଅର ହାତଧରି ଦୌଡ଼ିବାର ବେଳ ତୋର..... ଆକାଶରେ ସୂର୍ଯ୍ୟ ଅଛନ୍ତି..... ଅନେକ ଦୂରରେ ଅଂଧାର. ତୁ ସେକଥା ଚିନ୍ତା କରନା ଏବେ । ସେ କିନ୍ତୁ ଭାବେ, ଜୀବନକୁ ସେ କେମିତି ଦେଖିବ ଆଉ ? ?

ହଠାତ୍ ସମୟକୁ ଷ୍ଟାଚ୍ୟୁ କରିଦେଇ ପଛମୁହାଁ ହୋଇ ଧାଏଁ ମୁହୂର୍ତ୍ତକ ପାଇଁ । କେତେ ଘଟଣା ଦୁର୍ଘଟଣାକୁ ସେ ଭେଟେ ବାଟରେ । ତାକୁ ଆଶ୍ଚର୍ଯ୍ୟ ଲାଗେ ।

ସେତେବେଳେ ସେ ପିଲା । ଭାବିବାର ବୟସ ହିଁ ନ ଥିଲା । ହେଲେ ବାପା ବୋଉ.... ସେମାନଙ୍କ ଜୀବନ ସଂଘର୍ଷ ତ ଦେଖିଛି । ସେମାନଙ୍କ ସହିତ ସିଏ ବି ଭାଗୀଦାର । ଦେଖିଛି, କମଳା ମାଁ ଆଈର ଶେଷକୁ । ଏଇ ବାଉଣି ବର୍ଷର ପାରିକରି ଆସିଥିବା ଜୀବନ ସଂଘର୍ଷ ତାକୁ କିଛି କମ୍ ଶିକ୍ଷା ଦେଇନି ।

ଅଭାବ, ଅସୁବିଧା, ଦୁଃଖଦୈନ୍ୟ ଭିତରେ ବି ସେମାନେ ବଞ୍ଚିବାର ରାହା ଖୋଜିଛନ୍ତି । ସମୟ ଓ ସ୍ଥିତିକୁ ଚାହିଁ ପ୍ରସ୍ତୁତ କରିଛନ୍ତି ନିଜକୁ । ସେ ଦେଖିଛି ତା' ବୋଉକୁ, ଯିଏ କେବେ ହାର ମାନିନି - ଏତେ ଲମ୍ବା ରାସ୍ତା ଜୀବନର । ଆବୁଡ଼ା ଖାବୁଡ଼ା, କଣ୍ଟାଝଣ୍ଟା, କର୍ଦ୍ଦମାକ୍ତ ତଥାପି ଅସୀମ ଧୈର୍ଯ୍ୟର ସହିତ ମୁକାବିଲା କରିଛି..... କରୁଛି ଏବେ ବି । କେବେ ତା' ପାଟିରୁ ନକାରାତ୍ମକ ଶବ୍ଦଟିଏ ବାହାରିନି, ଶୁଣିନି ହତାଶିଆ କଥା ପଦେ ବରଂ ସବୁବେଳେ କହିଛି, ଆଗକୁ ଚାହାଁ ଏଇ ଅଂଧାର ସବୁବେଳେ ନଥିବ - ସମୟର ପରୀକ୍ଷା ଇଏ - ନିଶ୍ଚେ ଆଲୁଅ ଫିଟିବ । ଅଂଧାର ପେଟ ଭିତରେ ଆଲୁଅ ଅଛି ପରା ।"

ଭାବ ଭାବନାକୁ ଅଟକେଇ, ଲକ୍ଷ୍ମୀ ରଘୁମଉସାଙ୍କ ମୁହଁକୁ ଚାହେଁ ପ୍ରଶ୍ନବାଚୀ ନେଇଁ । ତାହେଲେ..... ?

ଅଧା ରଖିଥିବା କଥାକୁ ପୂରା କରିବାକୁ ଯାଇ ରଘୁମଉସା ଜରାଶ୍ରମର ଖୋଲାଛାତ ଉପରୁ ସାମ୍ନାର ଏଇ ସବୁଜବଳୟକୁ ଦେଖାନ୍ତି- ଏଇ ଦେଖୁଛୁ ମାଁ ସବୁଜ ବଳୟକୁ ଦିନ ଆଲୁଅରେ କେମିତି ଝଲସି ଉଠୁଛି; ସୁନାମିରିଗର ଲୋଭ ଦେଖଉଛି ମଣିଷକୁ । ମଣିଷ ଧାଉଁଛି ତାକୁ ଧରିବ ବୋଲି । ମିରିଗ ତା' ହାତରେ ଧରାପଡୁ କି ନ ପଡୁ ସେ ଧାଏଁ ଲହୁଲୁହାଣ ହେଇ ଲୁଚକାଳି ଖେଳେ ତା ସହିତ । ସ୍ୱପ୍ନ ଦେଖେ ଚିରନ୍ତନର । ହେଲେ ଜୀବନଟା ହୀରାଟିଆ ସୂର୍ଯ୍ୟାଲୋକର ନୁହେଁ କେବଳ । ସଂଜ ଆସେ, ଆସିବାକୁ ବାଧ । ସେତେବେଳକୁ ଏଇ ଯୋଉ ସବୁଜିମାର ଭେଳିକି, କ୍ରମଶଃ କଳା ମିଚ୍ ମିଚ୍ ଅଂଧାର ପାଲଟି ଯାଇ, ଭୟ ଦେଖାଏ, ଦମ୍ଭ ଭାଙ୍ଗିଦିଏ । ବିକଳ ବିତ୍ରସ୍ତ ମଣିଷ ସଂପର୍କର ହାତକୁ ଛୁଇଁବାକୁ ହାତ ବଢ଼ାଏ । କେହି ନ ଥାନ୍ତି ଆଉ । ସେ ଏକୁଟିଆ ନିଜକୁ ହିଁ ପାଏ- ସବୁ ମଣିଷ ଏଇ ଅଂଧାରକୁ ହିଁ ଭେଟନ୍ତି ଦିନେ ନା ଦିନେ । କିଏ ଆଗେ ତ କିଏ ପଛେ..... କହିଲାବେଳେ ରଘୁମଉସାଙ୍କ କଣ୍ଠସ୍ୱର ରୁଦ୍ଧ ହୋଇ ଆସେ । ମୁହଁଟା ବିକଳ ଦିଶେ ।

ଅନେକଥର ଏଭଳି ଆଲୋଚନାରେ ସେ ଭାଗ ନେଇଛି । ତା' ପ୍ରଶ୍ନର ଉତ୍ତରକୁ ସେ ଏବେ ବି ନିର୍ଦ୍ଦିଷ୍ଟ ଭାବେ ଖୋଜି ଚାଲିଛି- ଏଇ ଅବସରରେ ସେ ଅଂଧାରକୁ ନିଜର ଅନ୍ତରଂଗ ଦୋସର କରିବାର ସୁଯୋଗ ବି ନେଇଛି ।

ଖଟତଳେ ଥିବା ୟୁରୋସ୍ୟାକ୍‌ଟା ଭର୍ତ୍ତି ହେଇଗଲାଣି ଏଥର ସଫା କରିବାକୁ ପଡ଼ିବ । ଲକ୍ଷ୍ମୀର ଭାବନା ବଦଳି ଗଲା । ଅଂଧାର ଭିତରୁ ମୁହଁ ଫେରେଇ ସେ ସାଲାଇନ୍ ଷ୍ଟାଣ୍ଡ୍‌କୁ ଚାହିଁଲା । ଡ୍ରପ୍ ଡ୍ରପ୍ ହେଇ ବୋତଲରୁ ସାଲାଇନ୍ ଝରି ଚାଲିଛି । ଅଧା ସରି ଆସିଲାଣି । ମଶାରି ଟେକି ଭିତରକୁ ଚାହିଁଲା । ସେଇମିତି ଲମ୍ବା ଲମ୍ବା ନିଃଶ୍ୱାସ ନେଇଁ ଆଖିବୁଜି ଅଚେତ ହୋଇ ପଡ଼ିଛନ୍ତି ରଘୁମଉସା । ହଲଚଲ ନାହିଁ । ଛାତି ଖାଲି ଉଠୁଛି ପଡୁଛି । ଜୀବନ ଅଛିର ସୂଚନା ଦେଇ । ଅଥଚ ସେଇ ଜୀବନ ଅଂଧାରର ହାତ ଧରି ଚାଲିଛି, ଚାଲି ଚାଲି ସେ କୁଆଡ଼େ ଯିବ ? ସେଠି କଣ ସୂର୍ଯ୍ୟୋଦୟ ନଥିବ ? ହାତରେ ନିଡ଼ଲ୍ ଫୋଡ଼ା ହେଇଥିବା ଜାଗାଟା ଫୁଲିଯାଇଛି । କଷ୍ଟ ହେଉଥିବ ନିଶ୍ଚୟ । ଚେତା ଥିଲେ ସିନା କହିଥାନ୍ତେ । ଏବେ ତ ସେ ନିର୍ବେଦ ହୋଇପଡ଼ିଛନ୍ତି । ଚାରିଦିନ ହେଇଯିବ । ଆହା ।

ଗାଧୋଇବାକୁ ଯାଇ ବାଥ୍‌ରୁମ୍ ଭିତରେ ହଠାତ୍ ପଡ଼ିଗଲେ କି ଗୋଡ଼ ଖସିଗଲା କେଜାଣି, ଜାଣିବାର ବାଟ ନଥିଲା । ସୋର୍ ଶବ୍ଦ ନ ଶୁଣି ବୋଉ ହିଁ ଯାଇ ଦେଖିଲା- ସେତେବେଳକୁ ସେ ଜ୍ଞାନଶୂନ୍ୟ । ସେଇଦିନରୁ ସେ ଶୋଇଛନ୍ତି ।

ଡାକ୍ତର ଆସିଥିଲେ କହିଗଲେ ଷ୍ଟ୍ରୋକ୍ ରକ୍ତଚାପ ଜନିତ । ଚେତା ଆସିବ କି ନାହିଁ କହି ହେବନି । ବୟସ୍କ ମଣିଷ । ଅଶି ବୟାଅଶି ହେବ । ଅଧିକା ଆଉ କଣ କରାଯାଇପାରିବ ଏଇ ବୟସରେ । କେବଳ ସେବା ଶୁଶ୍ରୂଷାର ଆବଶ୍ୟକ ଅଛି ।

ଲକ୍ଷ୍ମୀ ନିଜେ ସେଇ ଦାୟିତ୍ୱ ନେବ ବୋଲି ଇଚ୍ଛା ପ୍ରକାଶ କରିଥିଲା । ସେ ନ ନେଇଥିଲେ ବୋଉ ହିଁ ନେଇଥାନ୍ତା । ବୋଉର ଅନେକ କାମ । ଆଶ୍ରମର ଅନେକ ଦାୟିତ୍ୱ ତା ହାତରେ । ମୁହୂର୍ତ୍ତଟିଏ ନ ଥିଲେ ଡାକ ପକେଇବେ ସବୁ । ହେମ..... ହେମଲତା..... କୁଆଡ଼େ ଗଲୁ କି ?

ବୋଉ ଠିକ୍ ପାଟି ବାରି ପହଞ୍ଚି ଯାଏ ସେମାନଙ୍କ ପାଖରେ । କାହା ପାନ, କାହା ଖବରକାଗଜ, କାହାର ଗରମ ପାଣି, କାହା ପାଇଁ ନାଲି ଚା' ତ କାହାର ନିର୍ମାଲ୍ୟ ନେଇଁ । ତାକୁ ନିଃଶ୍ୱାସ ମାରିବାକୁ ସମୟ ନାହିଁ । ରାତି ପାହିଲାଠୁ ରାତି ଅଧ ପର୍ଯ୍ୟନ୍ତ ଚରଖି ଭଳି ବୁଲୁଥିବ । ତାରି ଭିତରେ ସେ ଚା' ବସେଇବ, ଜଳଖିଆ ପାଇଁ ବ୍ୟବସ୍ଥା କରିବ । ଘରଦ୍ୱାରା ସବୁ ସଫା ହେଲା କି ନାହିଁ ବୁଝିବ । ବଜାରରୁ କଣ ସବୁ ସଉଦା ଆସିବ କାହାର କ'ଣ ଔଷଧ ଆସିବ - ସବୁ କଥା ସେ ହିଁ ବୁଝିବ । ତାକୁ ହିଁ ସମସ୍ତେ ଅପେକ୍ଷା କରିଥିବେ । ସମସ୍ତେ ତ ବୟସର ଶେଷ ପାହାଚରେ । ବୋଉ କୁହେ, ଆପଣା ମଣିଷର ଅଭାବ ବୋଲି ତ ସଭିଏଁ ଆସି ଏଠି ଆଶ୍ରା ନେଇଛନ୍ତି । ଟିକିଏ ଆହାପଣ, ମିଠାକଥା, ଆଶ୍ୱାସନା କିମ୍ବା ପଦେକଥା - କିମିତି ନିଦ ହେଲା ରାତିରେ,

ଭଲ ଲାଗୁଛି ତ, ଭଲି କିଛି ସଂଖୋଳା ।" ନିଜ ସଂପର୍କୀୟ ମାନଙ୍କଠୁ ଦୂରେଇ ରହିବାର ଯନ୍ତଣାକୁ ଅନୁଭବ କରିପାରେ ସେ । କୁହେ, ସେମାନଙ୍କୁ ବଞ୍ଚିତ କରିବାକୁ ମନ ହୁଏନା । ନିଜକୁ ଅପରାଧୀ ଅପରାଧୀ ମନେହୁଏ । କୌଣସି ଭୁଲ ତ୍ରୁଟି ହେଇଗଲେ ନିଜକୁ କ୍ଷମା କରି ହେବନି- କାରଣ ରାଘବବାବୁଙ୍କୁ ଏଇ ପ୍ରତିଶ୍ରୁତି ଦେଇ ତ ଏଇ ଢରାଶ୍ରମକୁ ଆସିଥିଲି ନା ?

ସତରେ, ତା' ବୋଉ ମନଟା ଖୁବ୍ ବଡ଼ । ଠିକ୍ ଆକାଶ ଭଳି । ମାପି ହେବନି । ବୋଉ କଥା ଭାବିଲେ ହିଁ, ତା'ମନ ଗର୍ବରେ ଫୁଲି ଉଠେ । ନିଜକୁ ଭାଗ୍ୟବାନ୍ ମନେ କରେ । ଅବଶ୍ୟ 'ବୋଉ ମାନେ ହିଁ ଭଲ' । ହେଲେ ତା' ବୋଉ ଆହୁରି ଭଲ । ଏ କଥାକୁ ସେ ଏବେ ଉପଲବ୍ଧି କରିପାରୁଛି । ଏତେ ପରିଶ୍ରମ ଆଉ କାମ ଭିତରେ ବି ସେ ବାପାଙ୍କ କଥା ଭୁଲେ ନା, ବାପା ଅକ୍ଷମ, ବୟସ ହେଲାଣି । ଆଜିକାଲି ତ ସହଜେ ଅସୁସ୍ଥ ହୋଇ ପଡୁଛନ୍ତି ଜଖମ ଗୋଡ଼ଟା ଖୁବ୍ କଷ୍ଟ ଦେଉଛି ତାଙ୍କୁ । ଚାଲି ପାରୁନାହାନ୍ତି । ତାଙ୍କୁ ବରାବର ଦେଖିବାକୁ ପଡୁଛି । ସେ କେବେ ବି ଦେଖିନି, ବୋଉ ତାଙ୍କ ସେବା ଶୁଶ୍ରୂଷାରେ ଅବହେଳା କରିବା । କେବଳ ଏଇଥିପାଇଁ ସଭିଙ୍କର ସେ ପ୍ରିୟ । ସମସ୍ତେ ଲୋଡ଼ନ୍ତି ତାକୁ ।

ବେଳବେଳେ ସେ ବିସ୍ମିତ ହେଇ ଚାହିଁ ରହେ । କି ପଦାର୍ଥରେ ସେ ଗଢ଼ା ହେଇଛି କେଜାଣି। ନିରଳସ, ନିଃସ୍ୱାର୍ଥପର, ନିର୍ଲୋଭୀ ଏବଂ ନିଛକ ମଣିଷଟିଏ । ଗରିବ ଘରେ କେମିତି ଜନ୍ମ ନେଲା ସେ ଭାବି ହୁଏନା । ସମସ୍ତେ କୁହନ୍ତି ଅଭାବ ମଣିଷର ସ୍ୱଭାବକୁ ନଷ୍ଟ କରେ ଅଥଚ ତା' ବୋଉକୁ ଦେଖିଲେ କିଏ ବିଶ୍ୱାସ କରିବ ଏ କଥା।

ସେଇ କାମର ଫାଙ୍କରେ ମୁହୂର୍ତ୍ତେ ସମୟ ପାଇଲେ, ସଭିଙ୍କ ପାଖକୁ ଥରେ ଥରେ ନିଶ୍ଚେ ଯାଇ ଭଲମନ୍ଦ ପଚାରି ବୁଝିବ, ଟିକେ ଆଉଁଶି ଦେବ ହାତଗୋଡ଼ ଅଥଚ ଆପଣା କ୍ଳାନ୍ତି କଥା କେବେ ଭାବିବା କି ଅଭିଯୋଗ କରିବା ସେ ଶୁଣିନି । ପଚାରିଲେ ହସି ଦେଇ କହିବ, 'ସମସ୍ତଙ୍କ ଭିତରେ ବଞ୍ଚି ରହିବାରେ ଆନନ୍ଦ ଅଛି ମା' । ଭୋକଶୋଷ, ରୋଗ ବୈରାଗ ଭୁଲି ହେଇଗଲା ଭଳି ଆନନ୍ଦ ।' ତାକୁ ତାଜୁବ୍ ଲାଗେ, ତା' ଧୈର୍ଯ୍ୟର ସୀମା ନାହିଁ ।

ସେତ ଅନୁଭବ କରିଛି ନିଜ କଥାରୁ । ତା' ପରୀକ୍ଷାବେଳ ଆସିଲେ ରାତି ରାତି ଅନିଦ୍ରା ରହି ପାଖରେ ବସିଥିବ । ପାଠକଥା ସିନା କିଛି ବୁଝେନା ହେଲେ ପାଖରେ ବସି ସାହସ ଦେବା, ଉତ୍ସାହିତ କରିବାରେ କେବେ ହେଳା କରିନି ।

ବାପା ବି କୁହନ୍ତି, 'ଯୁଆନ ବୟସରେ ମୁଁ ଯେମିତି ଅକ୍ଷମ ହୋଇଗଲି, ତୋ' ବୋଉ ନ ଥିଲେ, ଏଇ ମୋର ପରିବାରର ସ୍ଥିତି କୋଉଠି ଥା'ନ୍ତା ? ସିଏ ତ ମୋ' ଆଶାବାଡ଼ି, ମୋ' ହାତ ଗୋଡ଼ । ତାରି ଭରସାରେ ମୁଁ ପରିବାର ଚଳେଇଛି ।"

ବୋଉ କଥା ଭାବୁ ଭାବୁ ଲକ୍ଷ୍ମୀ ରଘୁମଉସାଙ୍କ ହାତକୁ ଆଉଁଶି ଦେଲା । କେତେ କଷ୍ଟ ପାଉଛନ୍ତି ବିଚରା । କେତେବଡ଼ ପଦସ୍ଥ ଅଫିସର୍ । ଚାକର ବାକର, ପୂଝାରୀ ନେଇଁ ଅୟସ ଆଉ ଆରାମରେ ଦିନ କଟୁଥିଲା । ଉଆସ ଭଳି ଘର, ଦି'ଦିଟା ଯୋଗ୍ୟ ପୁଅ । ବଡ଼ପୁଅ ବିଦେଶରେ ସାନପୁଅ ମୁମ୍ବାଇରେ । ସେ କିନ୍ତୁ କାହା ପାଖକୁ ଯା'ନ୍ତି ନାହିଁ । କାହିଁକି ଯା'ନ୍ତି ନାହିଁ, ସେକଥା ସେ କେବେ ପଚାରି ବୁଝିନି ସାହସ କରି । ଟଙ୍କା ପଇସାର ଅଭାବ ନାହିଁ । ଆତ୍ମୀୟସ୍ୱଜନ ବି ଥିବେ । ବେଳେବେଳେ ଚିଠିପତ୍ର ଆସେ, ଫୋନ୍ କରନ୍ତି । ଏକା ଏତେବଡ଼ ଘରଟାରେ ରହିବାକୁ ଭଲ ଲାଗିଲା ନାହିଁ ବୋଲି ସ୍ୱାମୀ ସ୍ତ୍ରୀ ଦୁହେଁ ଏଇ 'ଓଲଡ଼୍‌ଏଜ୍ ହୋମ୍'କୁ ଆପଣାର ଘର ଭାବି ରହିଆସିଛନ୍ତି ।

ଏଇ ପାଞ୍ଚବର୍ଷ ଭିତରେ ସେ ଲକ୍ଷ୍ୟ କରିଛି ତାଙ୍କୁ, ପଢ଼ିବାକୁ ଚେଷ୍ଟା କରିଛି ତାଙ୍କ ଅନ୍ତର୍ମନକୁ - ଭାରି ସ୍ୱାଭିମାନୀ, ସ୍ୱାଧୀନଚେତା । କାହା ଉପରେ ବୋଝ ହେବାକୁ ତାଙ୍କର ଇଚ୍ଛା ନାହିଁ । ହେଲେ ମଣିଷ ବଞ୍ଚିଥିବା ଯାକେ ଦି'ପଦ ସୁଖଦୁଃଖ, ଭଲମନ୍ଦର କଥା କହିବା ଓ ଶୁଣିବା ପାଇଁ ସମଭାବାପନ୍ନ ମଣିଷଟିଏ ଅନ୍ତତଃ ଦରକାର । କେତେ ଦେଖିବ ଟେଲିଭିଜନର ମଣିଷଗଢ଼ା କାହାଣୀ । ଆଖି କ୍ଳାନ୍ତ ହୋଇପଡ଼େ । ଏଡ଼େ ବଡ଼ ବଡ଼ ଘର ତା' ନିଛାଟିଆପଣ, ମେଘନାଦ ପାଚେରି ଭିତରେ ଅଣନିଃଶ୍ୱାସୀ ଲାଗେ । କୁହନ୍ତି ସେ, ଏଇ ଭଲ, ଦାୟ ଦାୟିତ୍ୱ ନାହିଁ । ସ୍ନେହ ଶ୍ରଦ୍ଧା, ସଦିଚ୍ଛା ସହାନୁଭୂତି ବାଣ୍ଟିଦେଲେ, ସମସ୍ତେ ଆପଣାର ଲାଗିବେ । କାହା ପାଇଁ ସେ ଉତ୍ତରଦାୟୀ ନୁହନ୍ତି, ମୁକ୍ତ ଜୀବନ । ଥରେ ଗଢ଼ିଥିବା ସଂପର୍କର ଡୋର ଛିଣ୍ଡେଇ ଆସିଲେ ଆଉ କିଛି ଦୁଃଖ ଲାଗିବନି ।

ଏଇମିତି କଟିଯାଉଛି ଦିନ ଭଲରେ । ଏଠି ସବୁ ଅଛି । ସମସ୍ତଙ୍କ ଭିତରେ ଜଣେ ହୋଇ ଚଳିବାରେ ଗୋଟିଏ ଆନନ୍ଦ ଅଛି । ବୁଝିଲୁ ମା' ଏଇ ସଂସାରରେ ଭାବିଲେ ସମସ୍ତେ ଆପଣାର । ପର ବୋଲି କିଛି ନାହିଁ, କେହି ନାହିଁ । ଆଉ ପିଲାଙ୍କ କଥା, ଟିକିଏ ଚିନ୍ତିତ ହୋଇ କୁହନ୍ତି, ଡେଣା ଲାଗିଲେ ଶାବକ ପକ୍ଷୀ ବି ଉଡ଼ିଯାଏ, ଉଡ଼ିଯିବା ସ୍ୱାଭାବିକ । ସେମାନଙ୍କର ଜୀବନ ଅଛି, ଚାକିରି ଅଛି, ଦାୟିତ୍ୱ ଅଛି । ଜୀବନକୁ ଗଢ଼ିବାର ବେଳ । ଭବିଷ୍ୟତକୁ ନ ଦେଖି ସେମାନେ ବୁଢ଼ାବୁଢ଼ୀଙ୍କ ପାଇଁ ଘରେ ବାନ୍ଧି ହେବା ତ ସମ୍ଭବ ନୁହେଁ ନା!

କର୍ମମୟ ଜୀବନ ଆଗରେ ଯଶୋଦାମା'ର ସ୍ନେହବନ୍ଧନକୁ ଛାଡ଼ିବାକୁ ପଡ଼ିଥିଲା କୃଷ୍ଣଙ୍କୁ । ଗୋପ ଛାଡ଼ିଥିଲେ ସେ । ଗୋପରୁ ଦ୍ୱାରକା ତ ଅନେକ ଦୂର..... । ଦୀର୍ଘଶ୍ୱାସ ନିଅନ୍ତି ରଘୁମଉସା କହୁ କହୁ ।

ଲକ୍ଷ୍ମୀ ବୁଝିପାରେ, ଇଏ କେବଳ ରଘୁମଉସାଙ୍କ ବ୍ୟକ୍ତିଗତ ଭାବନା ନୁହେଁ । ଏଇ ଜରାଶ୍ରମରେ ଥିବା ସମସ୍ତ ଅତୀତ'ମାନଙ୍କ ଅନ୍ତର୍ବେଦନା । ସେମାନଙ୍କ ମନ ତଳର ଅଦୃଶ୍ୟ ଅଭିମାନ, ଅଥବା ଦିଶି ଦିଶୁ ନଥିବା ବରଫୀକୃତ ଯନ୍ତ୍ରଣାର ଆତ୍ମଲିପି । କେବେ କେମିତି ପରିବେଶ, ପରିସ୍ଥିତି କିମ୍ବା କୌଣସି ସମ୍ବେଦନଶୀଳ ସ୍ଥିତି, ଭାବ ଭାବନାର ଅଥବା ସ୍ମୃତିଚାରଣର ଉଷୁମ ବାମ୍ଫରେ ସେଇ ଜମାଟ ବନ୍ଧା ବରଫ ତରଳି ଯାଇ ଝରିପଡ଼େ ଲୁହର ଶ୍ରାବଣ ହୋଇ । ନ ହେଲେ ମେଘ ହୋଇ ଓହଳି ପଡ଼େ ମନ ଆକାଶରେ । ତଥାପି ନିଜ ଯନ୍ତ୍ରଣାକୁ ନିଜେ ପିଇ, ଜୀବନର ଶେଷ ସମୟଟିକୁ ସମସ୍ତଙ୍କ ଅଲକ୍ଷ୍ୟରେ କଟେଇ ଦେବାର ସଂକଳ୍ପରେ, ନିଜକୁ ବୁଝେଇ ଆଶ୍ୱାସନା ଦିଅନ୍ତି । ଯେମିତି ବି ହେଉ, ଯେଉଳି ବି ହେଉ, ଜୀବନର ଶେଷ ତ ଦେଖିବାକୁ ହେବ ମଣିଷକୁ ।

ଦୀର୍ଘଶ୍ୱାସ ନେଇ ଲକ୍ଷ୍ମୀ ଭାବେ, କେବେ ଏଇ ବାର୍ଦ୍ଧକ୍ୟକୁ ମଣିଷ ଆଶୀର୍ବାଦ ବୋଲି ଭାବୁଥିଲା- ବୁଢ଼ାବୁଢ଼ୀ ଘରର ଅଚଳ ଏରୁଣ୍ଡିବନ୍ଧ ମନେକରିଥିଲା । ଭାବୁଥିଲା ସବୁ ବିପଦଆପଦକୁ ବରିଷ୍ଠ ମଣିଷର ହାତ ତା' ମୁଣ୍ଡ ଉପରେ ଅଛି - ସାହସ ଲାଗୁଥିଲା - ଏବେ କିନ୍ତୁ ସମୟ ବଦଳିଛି - ବାର୍ଦ୍ଧକ୍ୟ ଏକ ଅଭିଶାପରେ ପରିଣତ ହୋଇଛି । ଏଇ ଜରାଶ୍ରମରେ ଥିବା ପ୍ରତିଟି ମଣିଷର ଭିନ୍ନ ଭିନ୍ନ କାହାଣୀ ଅଛି । କିଏ ସ୍ୱଇଚ୍ଛାରେ ଆସିଛି ତ କିଏ ଅଗତ୍ୟା ଆସିବାକୁ ବାଧ ହୋଇଛି । କାହାକୁ ଆଣି ଏଠି ଛାଡ଼ିଦେଇ ଯାଇଛନ୍ତି ତାଙ୍କ ପିଲାଏ ଦାୟିତ୍ୱ ନେଇ ପାରିବେନି ବୋଲି, ଆଉ କେହି କେହି ପୁଅବୋହୂଙ୍କ ଅତ୍ୟାଚାର, ଅବହେଳା ସହି ନ ପାରି, ଆଶ୍ରମରେ ଆଶ୍ରା ଖୋଜି ଅଛନ୍ତି । କିଛି ସ୍ୱାମୀ ପରିତ୍ୟକ୍ତା, ନିଃସନ୍ତାନ ଦମ୍ପତି ବି ଅଛନ୍ତି । ଜରାଶ୍ରମ ସମସ୍ତଙ୍କ ଦାୟିତ୍ୱ ବହନ କରିଛି ।

ଆଶ୍ରମ ଚଳେଇବା ପାଇଁ ବିଭିନ୍ନ ମହଲରୁ ଆର୍ଥିକ ସହାୟତା ଲୋଡ଼ିବାକୁ ପଡ଼େ କେହି କେହି ଅନ୍ତେବାସୀ, ଯୋଉମାନେ ସଂପନ୍ନ, ନିଜେ ନିଜ ଖର୍ଚ୍ଚକୁ ଆଶ୍ରମ ପାଣ୍ଠିରେ ମିଶେଇ ଦିଅନ୍ତି । ବାହାରୁ ଅନେକ ସହାୟତା ବି ଆସେ ଆପଣାଛାଏଁ । ଏଇ ଆଶ୍ରମ ଏକ ସାମାଜିକ ଅନୁଷ୍ଠାନ । ଏହାର ଦାୟିତ୍ୱ ସହରର କିଛି ବିଶିଷ୍ଟ ବ୍ୟକ୍ତି ଓ ସମାଜସେବୀଙ୍କ ହାତରେ । ସମସ୍ତେ ମିଶି ଏକ ଟ୍ରଷ୍ଟ ଗଠନ କରି ସେମାନଙ୍କ ହାତରେ ତାର ପରିଚାଳନା ଦାୟିତ୍ୱକୁ ହସ୍ତାନ୍ତର କରିଛନ୍ତି । ସରକାରୀ ସହାୟତାକୁ ଏଯାଏ ଅପେକ୍ଷା ନାହିଁ । ଏଇ ଆଶ୍ରମର ଜନ୍ମ ବେଶି ଦିନର ନୁହେଁ ବି । ମାତ୍ର ପାଞ୍ଚବର୍ଷ ହେବ । ଭାବନା ବାଟରେ ଲକ୍ଷ୍ମୀ ମୁହୂର୍ତ୍ତେ ଠିଆ ହୋଇଗଲା । ସତେ ତ କେତେ ଶୀଘ୍ର ଶୀଘ୍ର ସମୟ କଟିଗଲା ।

ପଛକୁ ଫେରି ଚାହିଁଲେ ବିଶ୍ୱାସ ହୁଏନା ଯେ, ସେ ଏତେ ବଡ଼ ଲମ୍ବା ରାସ୍ତାଟା ପାରି କରି ଆସିଛି । ରାସ୍ତା ବି ତ ତା' ପାଇଁ ସହଜ ନ ଥିଲା । କେତେ ପ୍ରତିରୋଧ, ପ୍ରତିବନ୍ଧକ । ଲାଗୁଥିଲା ଦିନଟିଏ ବିତିଲେ, ଯୁଗଟିଏ ବିତିଲା ଭଳି ।

ଏଇ ତ ତାର ମାଟ୍ରିକ୍ ପରୀକ୍ଷା ଦେବା ବର୍ଷର କଥା । ମନେପଡ଼ିଲେ ଲୋମମୂଳ ଟାଙ୍କୁରି ଉଠେ ଆଜି ବି । ଆଜି ଜୀବନଟା କଛି ସହଜ ହେଇଯାଇଥିଲେ ବି, ସେଦିନମାନଙ୍କର କଥାକୁ ସେ ଭୁଲିପାରିନି । କି ଦୟନୀୟ ଅବସ୍ଥା ଥିଲା ସେଦିନଗୁଡ଼ିକ ! କି କଷ୍ଟ ସ୍ୱୀକାର କରିନାହାନ୍ତି ତା' ବାପା ବୋଉ । ଖିଆପିଆର ଠିକ୍ ନଥିଲା । ମାନସିକ ଦୁଃଶ୍ଚିନ୍ତା, ଅସ୍ଥିରତା ଭିତରେ ଜୀବନ ବୋଝ ଭଳି ମନେ ହେଉଥିଲା ପ୍ରତିଟି ମୁହୂର୍ତ୍ତ । ମୁହୂର୍ତ୍ତ ମୁହୂର୍ତ୍ତ ହେଇ ବଞ୍ଚିବାକୁ ପଡୁଥିଲା । ନିଜକୁ ଆଶ୍ୱାସନା ଦେଇ ବୁଝେଇବାକୁ ପଡୁଥିଲା - 'ଏଇ ଓଳିକ ତ', 'କାଲିକୁ ବାଟ ଫିଟିଯିବ', 'ସକାଳ ହେଉ ଦେଖାଯିବ', 'ଆରଓଳିକି ସୁବିଧା ହେଇଯିବନିକି' ଭଳି ଆଶ୍ୱାସନା । ଉପାୟ ଖୋଜୁ ଖୋଜୁ ସପ୍ତାହେରୁ ମାସେ, ମାସେରୁ ଛ'ମାସ ହେଇ ବର୍ଷଟିଏ କଟିଗଲା କୌଣସି ପ୍ରକାରେ ।

ପ୍ରତ୍ୟେକ ସକାଳ ଆରମ୍ଭ ହେଉଥିଲା ଆଶା ନେଇ । ଯେମିତି ଯେମିତି ଦିନ ବଢୁଥିଲା, ଆଶା ମଉଳି ଆସୁଥିଲା କ୍ରମଶଃ - ଅଂଧାର ଆସିଲେ ଭୟ ଲାଗୁଥିଲା କଣ କିଛି ଘଟିବ କି ? ବିପଦ ମାଡ଼ି ଆସିବ କି ? ଅଥଚ ଦିନ କଟୁଥିଲା ଅନିଶ୍ଚିତ ଭବିଷ୍ୟତକୁ ଆଗରେ ଥୋଇ, ଓଃ ! କି ଦୁର୍ବିଷହ ଦିନ ସବୁ । ଲକ୍ଷ୍ମୀ ସେଇ ଅଂଧାର ଭିତରେ ଥରି ଉଠେ ଭୟାର୍ତ୍ତ ହେଇ ।

ଭାବେ, ତାର କୋଉ ଜନ୍ମର ତପସ୍ୟା କେଜାଣି, ରାଘବ ସାର୍‌ଙ୍କ ଆଶୀର୍ବାଦ ଅଛି ଭରପୂର ହେଇ ତା'ପାଇଁ । ତାର ସମସ୍ତ ଦାୟିତ୍ୱ ସେ ନେଇଥିଲେ ବୋଲି, ତା' ରହିବା, ଖାଇବା ଓ ପାଠପଢ଼ାରେ କୌଣସି ଅସୁବିଧା ହେଇନି । ତଥାପି ଅନ୍ୟ ଉପରେ ବୋଝ ହୋଇଥିଲା ତ । ନିଜକୁ ମାଡ଼ି ପଡୁଥିଲା । କେତେ କଷ୍ଟ ସେ ସ୍ୱୀକାର କରିଛନ୍ତି ତା' ପାଇଁ । ଜନ୍ମ ଜନ୍ମ ଲାଗିଯିବ ସେଇ ଋଣର ବୋଝ ଉତାରିବା ପାଇଁ । ଦେବତା ସମାନ ମଣିଷ । ସମସ୍ତଙ୍କ ଭାଗ୍ୟରେ ସେ ଭଳି ସାନ୍ନିଧ୍ୟର ସୁଯୋଗ ମିଳେନା । କେତେ ଯତ୍ନ ନେଇଛନ୍ତି ଗୁରୁମା ତାର ସେତେବେଳେ ।

ପରୀକ୍ଷା ସରିଲା । ଭଲ କରିଥିଲା ବୋଲି ତାର ବିଶ୍ୱାସ ଥିଲା । ବାପା ବୋଉ ତ ମନ୍ଦିର ବେଢ଼ାରେ ହିଁ ରହୁଥିଲେ, ତେଣୁ ତାକୁ ସାର୍‌ଙ୍କ ଘରେ ହିଁ ରହିବାକୁ ହେଲା । ଦିନେ ସୁବିଧା ଦେଖି ସାର୍‌ଙ୍କୁ ପୁଣି ନିଜେ ଟ୍ୟୁସନ୍ ଆରମ୍ଭ କରିବା ପାଇଁ ଅନୁମତି ମାଗିଲା । ଯଦିଓ ସାର୍ ଅନ୍ୟ ଏକ ପ୍ରସ୍ତାବ ଦେଇଥିଲେ । କମ୍ପ୍ୟୁଟର୍ କୋର୍ସଟିଏ କରିଦେବା ପାଇଁ ତାଙ୍କର ଇଚ୍ଛା ଥିଲା । ସେ କିନ୍ତୁ ରାଜି ହେଇନଥିଲା । କିଛି

ରୋଜଗାରର ଆବଶ୍ୟକତା ତା'କ୍ଷେତ୍ରରେ ଜରୁରୀ ଥିଲା । ଯଦିଓ ଟଙ୍କା ତିନିଶ' ହିଁ ତାର ରୋଜଗାର ଥିଲା । ତଥାପି ସେଇଟା ତା ପାଇଁ ଅନେକ ବେଶି । କାରଣ ଜୀବନଯାତ୍ରାର ପ୍ରତିଟି ପଦକ୍ଷେପରେ ଅର୍ଥର ଆବଶ୍ୟକତା ରହିଛି । ସେ ସିନା ସାର୍‌ଙ୍କ ସୁରକ୍ଷା ବଳୟରେ ନିଶ୍ଚିନ୍ତ ହୋଇଥିଲା, ବାପା ବୋଉ ତ ମନ୍ଦିରର ଭଙ୍ଗାଛାତ ତଳେ ଦିନ କଟାଉଥିଲେ । ତାଙ୍କ ରୋଜଗାର ଅନିଶ୍ଚିତ ଥିଲା । ବାପା ସେଇ ପାଖରେ ଥିବା ମହମ କାରଖାନାରେ ସାମୟିକ ଭାବେ କାମ କରୁଥିଲେ ଏବଂ ମନ୍ଦିର କାମରେ ସାହାଯ୍ୟ କରୁଥିଲା ବୋଉ । ସେଇ ବାବଦରେ ଦିଅଁଙ୍କ ପ୍ରସାଦ କିଛି ମିଳୁଥିଲା ଯାହା । ଆଉ କିଛି ଉପାୟ ନ ଥିଲା ରୋଜଗାର ପାଇଁ । ସେଇ ସାମାନ୍ୟ ପଇସାରେ ଦି'ଟା ପେଟ ପୂରୁନଥିଲା - ଓଳିଏ ଖାଇଲେ ଆରଓଳିକୁ ଉପାସ ରହିବାକୁ ପଡ଼େ ଥରେ ଥରେ । ସବୁକଥାରେ ସାର୍‌ଙ୍କ ପାଖରେ ହାତ ପାତିବାକୁ ଲଜ୍ଜା ଲାଗେ ।

ସେତିକିବେଳେ, ସେ ଦେଖିଛି ତା' ବୋଉକୁ, ସେଇ ଦୟନୀୟ ପରିସ୍ଥିତିରେ ବି ସେ ଭାଙ୍ଗି ପଡ଼ିନି । ଭୋକିଲା ପେଟରେ ବି ମୁହଁରେ ହସ ଫୁଟେଇ କହୁଥିଲା, ଇଏ ତ ସମୟର ପରୀକ୍ଷା ମା' ସବୁବେଳେ କଣ ଏଇ ସ୍ଥିତି ଥିବ, ରାତି ପାହି ସକାଳ ହେବ । ଠାକୁରେ ଆମ ଧୈର୍ଯ୍ୟର ପରୀକ୍ଷା ନେଉଛନ୍ତି - ତାର ସେଇ ପୁରୁଣାକଥା । ସେଇ ଅନିଶ୍ଚିତତା ଭିତରେ ଆହୁରି ଛ' ଆଠମାସ କଟିଯାଇଥିଲା । ରାଘବ ସାର୍‌ଙ୍କ ପ୍ରୟାସ ଜାରିଥିଲା, କୋଉଠି ସୁବିଧା ସୁଯୋଗ ମିଳିଲେ ବାପାବୋଉକୁ ଆଶ୍ରା ଟିକେ ଯୋଗେଇ ଦେବେ ବୋଲି ।

ମାଟ୍ରିକ୍ ପରୀକ୍ଷା ଫଳ ବାହାରିଲା । ଭାଗ୍ୟକୁ ଖୁବ୍ ଭଲ ହୋଇଥିଲା ରେଜଲ୍ଟ । ସେ ପ୍ରଥମ ଶ୍ରେଣୀ ପାଇଥିଲା । ସେଇ ସଫଳତା ହିଁ ତାକୁ ଅଖଣ୍ଡ ଆତ୍ମବିଶ୍ୱାସ ଆଣି ଦେଇଥିଲା ଆଗକୁ ବଢ଼ିବାରେ । ସେ ପାରିବ, କିଛି କରିପାରିବ ଜୀବନରେ- ଦୃଢ଼ ଆତ୍ମବିଶ୍ୱାସ । ତା' ସଫଳତାରେ ସବୁଠୁ ବେଶି ଖୁସି ହୋଇଥିଲେ ରାଘବ ସାର୍ । ସେଦିନ ଗୁରୁମା' ମିଠା ଆଣି ସାଇପଡ଼ିଶାଙ୍କୁ ବାଣ୍ଟିଥିଲେ ।

ବାପା ବୋଉଙ୍କର ଆନନ୍ଦର ସୀମା ନ ଥିଲା । ସେମାନେ ସ୍ୱପ୍ନ ଦେଖିଥିଲେ ସତ, ହେଲେ ରାଘବ ସାର୍ ନଥିଲେ ସେଇ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଯାନ୍ତା ।

ଏଇ ଘାଟିଟା ସିନା କୌଣସି ପ୍ରକାରେ ପାର ହେଇଗଲା, ହେଲେ ଆଗକୁ ପଢ଼ିବା ପାଇଁ ତାର ସାମର୍ଥ୍ୟ ନ ଥିଲା । ଆଡ୍‌ମିଶନ୍ ଖର୍ଚ୍ଚ ଯୋଗାଡ଼ କରିବା ତା' ପାଇଁ ଅସମ୍ଭବ ଥିଲା । ସେଇ ଦୃଷ୍ଟିରୁ ସେ ସାର୍‌ଙ୍କୁ କିଛି ଗୋଟାଏ ଛୋଟମୋଟର ଚାକିରିରେ ବ୍ୟବସ୍ଥା କରିଦେବା ପାଇଁ ଅନୁରୋଧ କଲା । ଗୋଟାଏ ବର୍ଷ କିଛି ରୋଜଗାର

କରିପାରିଲେ, ଆଗକୁ ସେ କଲେଜ୍ ପାଇଁ ନିଜକୁ ପ୍ରସ୍ତୁତ କରିବ - ଏଇ ଉଦ୍ଦେଶ୍ୟରେ । ନହେଲେ ତ ଆଶା ଛାଡ଼ି ଦେଇଥିଲା ସେ ।

ରାଘବ ସାର୍ କିନ୍ତୁ ଦିନେ ତାକୁ ଚକିତ କରିଦେଇ ଆଡ଼ମିଶନ୍ ଫର୍ମ ଆଣି ତା'ହାତକୁ ବଢ଼େଇ ଦେଲେ ପୂରଣ କରିବା ପାଇଁ । ତା'ର ବିଶ୍ୱାସ ହେଉନଥିଲା । ଏହା କେମିତି ସମ୍ଭବ ! ସେମାନେ ନିଃସମ୍ବଳ- କେମିତି ତୁଲେଇବ ସେ ପଢ଼ା ଖର୍ଚ୍ଚ !

ତା'ର ନିରବତା ଓ ଶୂନ୍ୟଦୃଷ୍ଟିକୁ ଚାହିଁ ସାର୍ କହିଥିଲେ, କଣ ଏମିତି ଚାହିଁ ରହିଛୁ, କହିଲି ପରା ଶୀଘ୍ର ପୂରଣ କର ଫର୍ମଟା । ସେ କିନ୍ତୁ ବଲବଲ ହେଇ ସାର୍‌ଙ୍କ ମୁହଁକୁ ଚାହିଁ ରହିଥିଲା ଚିତ୍ରପ୍ରତିମା ଭଳି ! ସାର୍ ମଜା ତ କରିବେନି କେବେ ତା ସହିତ । ଅଥଚ ଏହା ଖେଳ ନୁହେଁ.... କହି ବି ଦେଲା "ବାପାବୋଉ ମୋତେ ପଢ଼େଇ ପାରିବେନି ସାର୍ । ବରଂ କୌଣସି ଚାକିରି କିମ୍ବା ଟ୍ରେନିଂ ନେଲେ.....

ସାର୍ କିନ୍ତୁ ଗମ୍ଭୀର ହେଇ ତା' ମୁଣ୍ଡକୁ ଆଉଁଶି ଦେଇ କହିଥିଲେ, "ତୁ ଏ କେଇଟା ଦିନରେ ଏତେ ବଡ଼ ହେଇଗଲୁଣି ? ମୁଁ କ'ଣ ଜାଣେନା ସେକଥା ଯେ ମୋତେ ମନେପକେଇ ଦେଉଛୁ- ତା'ପରେ ଟିକେ ହସିଦେଇ କହିଲେ - ସମୟ କାହା ପାଇଁ ଅପେକ୍ଷା କରେନା, ସମୟ ସହିତ ଆମକୁ ଚାଲିବାକୁ ହେବ । ହୁଏତ ଏଇ ଦୁଃସମୟ ଦିନେ କଟିଯିବ । ଭାବିଲାବେଳକୁ, ସମୟ ଅନେକ ଆଗରୁ ଆମ ହାତଛଡ଼ା ହେଇଯାଇଥିବ । ତା'ଛଡ଼ା ଜଣକର ଅଦମ୍ୟ ଇଚ୍ଛାଶକ୍ତି ଆଗରେ ଅର୍ଥ ପ୍ରତିବନ୍ଧକ ହେଇ ଠିଆ ହେଇପାରେନା ଲକ୍ଷ୍ମୀ । ମୁଁ ତାର ବ୍ୟବସ୍ଥା କରୁଛି ତୁ ନିଶ୍ଚେ ପଢ଼ିବୁ - ଫର୍ମଟା ପୂରଣ କର । ତୁ ପଢ଼ିବୁ ଲକ୍ଷ୍ମୀ, ତୋତେ ନେଇଁ ମୋର ଅନେକ ସ୍ୱପ୍ନ-" ସାର୍‌ଙ୍କ ଦୃଷ୍ଟି ଲମ୍ବି ଯାଇଥିଲା ଖୋଲା ଦିଗନ୍ତ ଆଡ଼କୁ । ଆଉ ସେ ରୋମାଞ୍ଚିତ ହୋଇଥିଲା ।

ସେଇ ଦିନଟା ଥିଲା ତା' ଜୀବନର ସବୁଠାରୁ ଶ୍ରେଷ୍ଠ ଓ ସ୍ମରଣୀୟ ଦିନ । ସେଦିନ ତାର ବିଚିତ୍ର ଏକ ଅନୁଭବ ହେଉଥିଲା; ମନେ ହେଉଥିଲା, ସତକୁ ସତ ସେ ଆକାଶକୁ ଛୁଇଁ ପାରିଛି । ସେଇ ରାତିରେ ବିଛଣାରେ ଶୋଇ ଏକ ଅଦ୍ଭୁତ ସ୍ୱପ୍ନ ବି ଦେଖିଥିଲା ।

ଅବଶ୍ୟ, ସ୍ୱପ୍ନରେ ଆକାଶ ଆଡ଼କୁ ବଢ଼େଇଥିବା ତା' ହାତ ଦି'ଟା ଲମ୍ବ ହେଇ କ୍ରମଶଃ ବଢ଼ିଯାଉଛି । ଏବଂ ତାରା ଖଚିତ ଆକାଶଟା ତା' ହାତପାଆନ୍ତାରେ ଧରା ଦେଉଛି । ସେ ଛୁଇଁ ପାରିଛି ଆକାଶକୁ । ହଠାତ୍ ନିଦ ତାର ଭାଙ୍ଗିଯାଇଥିଲା ଓ ସ୍ୱପ୍ନକଥା ମନେ ପଡ଼ିବା ମାତ୍ରେ ତାକୁ କିମିତି ଅସମ୍ଭବ ମନେହେଲା । ସତରେ କ'ଣ ତା' ହାତ ଦି'ଟା ଲମ୍ବିଯାଇଥିଲା ଆକାଶ ଆଡ଼କୁ ନା ତାରାଭରା ଆକାଶଟା ତା' ହାତ ପାପୁଲିରେ ଖସି ପଡ଼ିଥିଲା ?? ଏଇ ଅସମ୍ଭବ ସ୍ୱପ୍ନଟା ସେ କାହିଁକି ଦେଖିଲା ଯେ ! ମନେ ମନେ ସେ ଡରିଯାଇଥିଲା । ତା' ସ୍ୱପ୍ନ ସ୍ୱପ୍ନ ହୋଇ ରହିଯିବନିତ ! କେଜାଣି । ହେ ଭଗବାନ,

ବିଛଣାରେ ଶୋଇ ଶୋଇ ଅନେକ ସମୟ ପର୍ଯ୍ୟନ୍ତ ସେ କାନ୍ଦିଥିଲା ଖୁବ୍ । ଖୁସିରେ କି ଭୟରେ କହିପାରିବନି, ହେଲେ କାନ୍ଦିଥିଲା ।

ଭାବନା ବାଟରେ ଠିଆ ହୋଇ ଅଂଧାର ଆଡ଼କୁ ଚାହିଁ ହସି ପକେଇଲା ଲକ୍ଷ୍ମୀ ନିଜ କିଶୋରୀ ବୟସର ସ୍ୱପ୍ନକୁ ନେଇ । କେଡ଼େ ବୋକା ସେ ସତରେ ! ଆକାଶ ଆଜି ବି ତା'ଠୁ ଅନେକ ଅନେକ ଦୂରରେ । ତେବେ ଆଶା ଅଛି ଆଲୁଅ ଛିଟାଏ ଦିଶୁଛି ପୂର୍ବ ଦିଗନ୍ତରେ । ସମ୍ଭାବନାର ସୂର୍ଯ୍ୟୋଦୟକୁ ସେ ଅପେକ୍ଷା କରିଛି, ଆଗକୁ ପାଦ ବଢ଼େଇଛି ମାତ୍ର ।

ଅବଶ୍ୟ ଏଇ ଯୋଗ୍ୟତା ତାକୁ ମୁଠାଏ ଆହାର ଯୋଗେଇବାରେ ସମର୍ଥ ହେବ । ସେମାନେ ଆଉ ଭୋକରେ ରହିବେନି -ର ବିଶ୍ୱାସ ଟିକକ ଆଣି ଦେଇଛି ତା'ଭିତରେ, ଏଥିରେ ସଂଦେହ ନାହିଁ ।

ଏଇ ବିଶ୍ୱାସର ମୂଳାଧାର ରାଘବସାର୍, ତାଙ୍କର ଦୂରଦୃଷ୍ଟି, ମଣିଷ ଗଢ଼ିବାର ସ୍ୱପ୍ନ ତାଙ୍କ ସଦିଚ୍ଛା, ପ୍ରେରଣା ଯୋଗୁଁ ହିଁ ଏହା ସମ୍ଭବ ହୋଇପାରିଛି । ସେଇ ପ୍ରାତଃସ୍ମରଣୀୟ ଗୁରୁଙ୍କୁ ଲକ୍ଷ୍ମୀ ପ୍ରଣାମ ଜଣେଇଲା ଈଶ୍ୱର ସ୍ଥାନରେ ।

ସେ'ଦିନ କିନ୍ତୁ ଶଙ୍କିତ ମନରେ ହିଁ ସେ ଫର୍ମ ଭରିଥିଲା । ଗୁରୁମା ବାରଂବାର କହିଥିଲେ, "ତୁ ପାରିବୁ ଲକ୍ଷ୍ମୀ । ଚାହିଁଲେ କିଛି ବି ଅସମ୍ଭବ ନୁହେଁ । ସାର୍‌ଙ୍କ ସ୍ୱପ୍ନକୁ ତୁ ଦିନେ ସାକାର କରିପାରିବୁ । ନିଜ ଉପରେ ବିଶ୍ୱାସ ରଖ । ଏତେ ବାଟ ତ ଆସିଲୁ ନିଜେ ନିଜେ ।"

କଲେଜ୍‌ର ପ୍ରଥମ ବର୍ଷ ସାର୍‌ଙ୍କ ଆଶ୍ରାରେ ହିଁ କଟିଲା । କୌଣସି ମୁହୂର୍ତ୍ତରେ ବି ସେ ଭାବିନି ଯେ, ସେଇ ଘରର ସେ ଝିଅ ନୁହେଁ, ଜଣେ ଆଶ୍ରିତା! ଦୁହିଁଙ୍କ ସ୍ନେହ ତା' ପାଇଁ ସତେ ଯେମିତି ବାଦବୁଦିଆ ହେଇ ଚାଲିଥିଲା । ସେ ଖୁବ୍ ମିତବ୍ୟୟୀ ଥିଲା ଏବଂ ଟ୍ୟୁସନ୍ ରୋଜଗାରକୁ ଗୁରୁମା'ଙ୍କ ହାତକୁ ହିଁ ସେ ବଢ଼େଇ ଦେଉଥିଲା । ବେଳେବେଳେ ବୋଉ ଆଗରେ ଗୁରୁମାଁ ତା'ର ପ୍ରଶଂସାରେ ଶତମୁଖର ହେଇ ଉଠୁଥିଲେ । ଝିଅ ଜନ୍ମ କରିଥିଲୁ ତୁ ମୋରି ପାଇଁ ହେମ । ଝିଅ ନ ଥିବାର ଦୁଃଖ ମୋର ଭୁଲି ହେଇଗଲା । ବାପା ବୋଉ କିନ୍ତୁ ମନ୍ଦିର ବେଢ଼ାରେ ହିଁ ରହୁଥିଲେ । ଆବଶ୍ୟକ ବେଳେ କିଛି କିଛି ସାହାଯ୍ୟ କରୁଥିଲେ ସାର୍ ।

ସେଇବର୍ଷର ଶେଷଆଡ଼କୁ ଏଇ 'ସୁଧାମୟୀ ଓଲଡ୍ ଏଜ୍ ହୋମ୍' ର ପରିକଳ୍ପନା ଏବଂ ପ୍ରତିଷ୍ଠା । ସମୟର ଦାବୀକୁ ନେଇ ଜଣେ ସହାନୁଭୂତିଶୀଳା ମହିଳା, ଯିଏ କି ବିଦେଶରେ ରହୁଥିଲେ, ତାଙ୍କରି ସ୍ୱପ୍ନ ଏବଂ ଅଭିଳାଷକୁ ବାସ୍ତବ ରୂପ ଦେବାକୁ ଯାଇ ଗଢ଼ିଉଠିଥିଲା ଏଇ ଅନୁଷ୍ଠାନ ତାଙ୍କରି ଅନୁଦାନରେ ।

ଉଦ୍ଦେଶ୍ୟ ଥିଲା, ଅସହାୟ ବୃଦ୍ଧବୃଦ୍ଧାଙ୍କ ଦାୟିତ୍ୱ ବହନ କରିବା ସହ, ସେବା ଯତ୍ନ ଯୋଗେଇ, ତାଙ୍କ ଶେଷ ଜୀବନକୁ ସରସ ସୁନ୍ଦର କରି ଗଢ଼ି ତୋଳିବା । ସେମାନେ ଯେମିତି ନିଜକୁ ନିଃସଙ୍ଗ, ଏକୁଟିଆ ମନେ ନ କରିବେ ଅଥଚ ଜୀବନଯାତ୍ରା ସହଜ ଓ ସୁଗମ ଲାଗିବ । କାରଣ ଆଧୁନିକ ଜୀବନଧାରା, ଆମ ଭାରତୀୟ ପାରିବାରିକ ଜୀବନ ପରଂପରାରେ କିଛି ପରିବର୍ତ୍ତନ ଆଣି ଦେଇଛି ଏଥିରେ ସଂଦେହ ନାହିଁ । ପୂର୍ବର ଏକାନ୍ନବର୍ତ୍ତୀ ପରିବାରର ଫ୍ରେମ୍ ଭାଙ୍ଗିଯାଇଛି । ମଣିଷ ଚରିତ୍ରରେ ପରିବର୍ତ୍ତନ ଦେଖା ଦେଇଛି । ମୂଲ୍ୟବୋଧ ବଦଳିଛି । ଏଇ ସମୟର ପରିବର୍ତ୍ତନରେ ବାପା, ମା', ପୁଅ ବୋହୂ ନାତିନାତୁଣୀଙ୍କ ଠାରୁ ବିଚ୍ଛିନ୍ନ ହୋଇ ପଡୁଛନ୍ତି । ଏଇ ବିପର୍ଯ୍ୟସ୍ତ ଜୀବନଧାରା ବିଶେଷ କରି ବୃଦ୍ଧାବସ୍ଥାକୁ ନେଇ ବଡ଼ ସମ୍ବେଦନଶୀଳ ହୋଇପଡ଼ିଛି କୋଉଠି କୋଉଠି । ପିତାମାତାଙ୍କ ସେବା ଏବଂ ଈଶ୍ୱରଙ୍କ ସେବାର କନ୍‌ସେପ୍ଟ ବଦଳିଯିବା ହେତୁ, ବୃଦ୍ଧାବସ୍ଥା ବଡ଼ ଦୟନୀୟ ଓ ବିପନ୍ନ ହେଇପଡ଼ିଛି ବର୍ତ୍ତମାନର ସ୍ଥିତିରେ । କାରଣ ଅନେକ ପ୍ରକାର ରହିଛି ବି ।

ଏଇ ମହୀୟସୀ ମହିଳା ଜଣକଙ୍କର ସ୍ୱପ୍ନ ଥିଲା, ନିଜ ଦେଶକୁ ସେ ଫେରିବେ ଦିନେ ଏବଂ ଏଇ 'ଓଲଡ୍ ଏଜ୍ ହୋମ୍' ରେ ତାଙ୍କର ଶେଷ ଜୀବନ କଟିବ । ହେଲେ ଈଶ୍ୱରଙ୍କ ଇଚ୍ଛା ଅନ୍ୟ ପ୍ରକାର । ତାଙ୍କ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା । ଅନୁଷ୍ଠାନ ପ୍ରତିଷ୍ଠା ହେବାର ବର୍ଷେ ନପୂରୁଣୁ ତାଙ୍କର ଦେହାନ୍ତ ହୋଇଗଲା ଏକ ଦୂରାରୋଗ୍ୟ ରୋଗରେ । ସେ କେବଳ ଆଶ୍ରମର ପ୍ରତିଷ୍ଠା ଉତ୍ସବରେ ଯୋଗ ଦେଇଥିଲେ ।

ସେ ସିନା ରହିଲେନି, ହେଲେ ତାଙ୍କ ସ୍ୱପ୍ନ ଅସହାୟ, ନିଃସଙ୍ଗ ମଣିଷଙ୍କ ମନରେ ଭରସା ଆଣିଦେଇଛି, ଏଥିରେ ସଂଦେହ ନାହିଁ । ତାଙ୍କରି ଅନୁପମ ସ୍ମୃତିକୁ ସ୍ମରଣୀୟ କରିବା ପାଇଁ ତାଙ୍କରି ନାମରେ ନାମିତ ହେଲା 'ସୁଧାମୟୀ ଓଲଡ଼୍ଏଜ୍ ହୋମ୍' ।

ଏବଂ ଏଇ ଓଲଡ଼୍ଏଜ୍ ହୋମ୍ ଅନେକ ଅସହାୟ ବୃଦ୍ଧବୃଦ୍ଧାଙ୍କ ସହିତ କେଶବା ପରିବାରକୁ ଠା' ଦେବାରେ ହାତ ବଢ଼େଇଛି ଓ ଏକ ନିଶ୍ଚିତ ଆଶ୍ରାର ଭରସା ଦେଇ ତିନୋଟି ଜୀବନକୁ ସ୍ନେହର ଡୋରିରେ ବାନ୍ଧି ରଖିଛି ମଧ୍ୟ ।

ଭାବୁ ଭାବୁ ଲକ୍ଷ୍ମୀ ଭାବପ୍ରବଣ ହେଇପଡ଼ିଲା । ସେମାନେ ଆଶ୍ରମର ଆଶ୍ରିତ ନୁହଁନ୍ତି । ସେବାକାରୀ କର୍ମଚାରୀ । ଜରାଶ୍ରମରେ ଥିବା ସ୍ନେହକାଙ୍ଗାଳ ମଣିଷମାନଙ୍କ ସେବାଯତ୍ନ ପାଇଁ ନିୟୋଜିତ । ଏହା ବି ସମ୍ଭବ ହେଇଛି ରାଘବ ସାର୍‌ଙ୍କ ପାଇଁ । ଏଇ ଜରାଶ୍ରମର ପରିଚାଳନା କମିଟିରେ ରାଘବ ସାର୍ ଅନ୍ୟତମ ସକ୍ରିୟ ସଭ୍ୟ ।

ହଠାତ୍ ଲକ୍ଷ୍ମୀର ମନେହେଲା, ସେଇଦିନ, ଯୋଉଦିନ ବାପା ମା'ଙ୍କ ସାଥିରେ ସେ ଏଇ ଜରାଶ୍ରମକୁ ଆସିଲା, ସେଇଦିନ ତା'ଜୀବନରୁ ଅଂଧାର କଟିଗଲା । ଗୋଟିଏ

ଆଲୁଅ ଝଲମଲ ସୂର୍ଯ୍ୟୋଦୟର ସକାଳରେ ସେମାନେ ଜରାଶ୍ରମରେ ପାଦ ଦେଇଥିଲେ । ଗୋଟାଏ ନିଶ୍ଚିତ ଆଶ୍ରୟର ଭରସାରେ । ଏଇ ନିଶ୍ଚିତତା ମୁଠେ ଭାତ ଆଉ ମୁଣ୍ଡ ଉପରେ ଛାତ ଟିକିଏର ନିଶ୍ଚିତତା; ଯିଏ ବିପଦଆପଦ, ଖରାବରଷାରୁ ରକ୍ଷା କରିବ । ଅନେକ ଦିନ ତଳେ କମଳାମାଁ - ଆଇ ଘରୁ ଆସିବା ବାଟରେ ବୋଉ ପୂର୍ବଦିଗକୁ ଦେଖେଇ କହିଥିଲା ଇଏ ସିନ୍ଦୂରା ଫାଟିବାର ବେଳ - ଆଉ ସେଇ ସିନ୍ଦୂରା ଆଜିଯାଏ ସତେଯେମିତି ଷାଠ୍ୟ ପାଲଟି ଯାଇଥିଲା ତା' ପାଇଁ । ଏବକୁ ଆଶାର କିରଣ ଝାଡ଼ି ସୂର୍ଯ୍ୟ ମୁହଁ ଦେଖାଉଛନ୍ତି । ସେଦିନ ତାର ସତରେ ଆନନ୍ଦର ସୀମା ନ ଥିଲା ଏବଂ ଖୁସିରେ ସେ ଆଶ୍ରମର ତଳ ଉପର ହେଇ ଦଶଘେରା ବୁଲି ଆସିଥିଲା ଏକାଥରକେ ।

ଭାବନା ଭିତରେ ଲକ୍ଷ୍ମୀର ହୋସ୍ ନଥିଲା । ସକାଳ ହୋଇ ଆସୁଛି । ଝରକା ସେ ପାଖେ ପକ୍ଷୀଙ୍କ କାକଳୀ ଶୁଭିଲାଣି । ଆକାଶ ଆଉ ଦିଗନ୍ତ ଭିତରେ ସୀମାରେଖା ସ୍ପଷ୍ଟ ହେଇଆସୁଛି । ଜାଙ୍ଗଲିକ ସବୁଜ ବଳୟ ବାରିହେଇ ପଡ଼ିଲାଣି । ସିନ୍ଦୂରିତ ହେଇ ଉଠିଲାଣି ପ୍ରାଚୀ ଦିଗନ୍ତ । ଚମତ୍କାର ସକାଳ - ସ୍ନିଗ୍ଧ, ସିନ୍ଦୂରିତ, ମଧୁମୟ ସକାଳ ।

ଏଥର ଲକ୍ଷ୍ମୀର ନଜର ରଘୁମଉସାଙ୍କ ଆଡ଼କୁ ଗଲା । ସାଲାଇନ୍ ସରିଆସୁଛି । ଏଥର ଖୋଲିଦେଲେ ଚଳିବ । ବସିଲା ଜାଗାରୁ ଉଠିଗଲା ସାବୁନ୍‌ରେ ହାତ ଧୋଇ ଆସିବାକୁ । ଷ୍ଟାଣ୍ଡ୍‌ରୁ ସବୁ ଖୋଲାଖୋଲି କରିଦେଲା, ହାତରୁ ନିଡ଼ଲ୍ କାଢ଼ିଥିବା ଜାଗାକୁ ଭଲକରି ସ୍ପିରିଟ୍‌ରେ ପୋଛିଦେଲା ଯତ୍ନରେ । ଆଉ ଟିକିଏ ସକାଳ ହେଲେ ନିଜେ ଯାଇ ଡାକ୍ତରଙ୍କ ପରାମର୍ଶ ନେଇ ଆସିବ । ଆଗକୁ ଆଉ କଣ କରିବାକୁ ପଡ଼ିବ ।

ଲକ୍ଷ୍ମୀ..... ଲକ୍ଷ୍ମୀ..... ଦୁଆର ଖୋଲ ମାଁ..... ହେମର ଡାକ..... କୋଠରି ବାହାରେ ଶୁଭିଲା..... ଲକ୍ଷ୍ମୀ ଆଗେଇଗଲା ଦୁଆର ଖୋଲିବାକୁ ।

ଦୁଆର ଖୋଲିଦେଲା ଲକ୍ଷ୍ମୀ । ମେଞ୍ଚାଏ ଶୀତ ମିଶା ପବନ ସହିତ ହେମ କୋଠରି ଭିତରେ ପାଦଦେଲା । ନିଦ ମଳମଳ ଆଖି, ସ୍ନିଗ୍ଧ ପାହାନ୍ତିର ପ୍ରସନ୍ନତା ମାଖି ହୋଇ ରହିଥିଲା ତା' ମୁହଁରେ । ଲକ୍ଷ୍ମୀକୁ ଭଲ ଲାଗିଲା ବୋଉ ମୁହଁର ପ୍ରସନ୍ନତା । ଖୁସି ହୋଇଗଲା ମନ ତାର । କେମିତି ଅଛନ୍ତି ମା' ମଉସା ? ରାତିରେ କିଛି ଅସୁବିଧା ହୋଇନି ତ ? ମୁଁ ତ କ୍ଳାନ୍ତ ହେଇ ଶୋଇପଡ଼ିଛି ଯେ, ଏବେ ନିଦ ଭାଙ୍ଗୁଛି । ମୁହଁ ବି ଧୋଇନି ସିଧା ଆସୁଛି ଏଇଠିକି, ମନ ବୁଝିଲାନି ବୋଲି । କ'ଣ ହେଲା ନ ହେଲା ଜାଣି ପାରିଲିନି । ତୁ ବୋଧେ ରାତିରେ ମୋଟେ ଶୋଇନୁ ? ଆଖିପତା ଫୁଲିଲା ଫୁଲିଲା ଦିଶୁଛି । ହେମ ବ୍ୟସ୍ତ ହୋଇ କହିଲା, ମୁଁ ଜାଣିଥିଲି, ତୁ ଉଠେଇବୁନି କେବେ ମୋତେ । ପୋଡ଼ା ନିଦ ବି ଭାଙ୍ଗିଲାନି । ଦି' ଘଣ୍ଟା ମୁଁ ବସିଯାଇଥିଲେ, ତୁ ଟିକେ ବିଶ୍ରାମ ନେଇଥାନ୍ତୁ ।'

ଲକ୍ଷ୍ମୀ ହସିଦେଇ କହିଲା, ବୋଉ ମୁଁ କ'ଣ ଆଉ ପିଲାଟିଏ ହୋଇଛି, କେମିତି ନିଦ ହେବ କହିଲୁ, ଦାୟିତ୍ୱ ନେଇଥିଲି ପରା ତୋଠୁ ? ତୁ କ'ଣ ଜାଣିନୁ, ପଢ଼ା ଥିଲେ ମୁଁ କେମିତି ରାତିରାତି ଅନିଦ୍ରା ରହେ ? ସେମିତି ଏଇ ଚାରି ଛ'ଦିନ କଟିଯିବ । ତା'ଛଡ଼ା ତୁ ତ ସାରାଟା ଦିନ ଖଟୁଛୁ ଅଣନିଃଶ୍ୱାସୀ ହୋଇ । ତୁ ତ ଆଉ ମେସିନ୍ ନୁହଁ । ରାତିରେ ଚାରିଘଣ୍ଟା ବିଶ୍ରାମ ନ ନେଲେ ସକାଳେ ପୁଣି କେମିତି କାମ କରିବୁ ଯେ ? ତୁ ଆଉ ମୋ ପାଇଁ ଏତେ ଭାବନା, ମୁଁ ବଡ଼ ହେଲିଣି ସବୁ ଦାୟିତ୍ୱ ନେଇପାରିବି । ତୁ ବରଂ ବାପାଙ୍କ କଥା, ଥରକ ଜାଗାରେ ଦି'ଥର ବୁଝ । -ଶାସନ କରିବା କଣ୍ଠରେ ଲକ୍ଷ୍ମୀ ବୋଉକୁ କହିଲା ।

'ଜାଣିଛି, ବଡ଼ ହେଇଗଲୁଣି ତୁ । ସେଇଥିପାଇଁ ମୁହଁକୁ ଚାହିଁ କଥା କହୁଛୁ ବୋଉକୁ ।' ମନେ ମନେ କିନ୍ତୁ ହେମ ଉଲ୍ଲସିତ ହୋଇଉଠୁଥିଲା । ଝିଅ ତା'ର ବୁଝିବା ଶୁଝିବାର ହେଇଗଲାଣି ସତକୁ ସତ ।

'ତେବେ ଆଜି କିଛି ଗୋଟାଏ ବ୍ୟବସ୍ଥା କରିବାକୁ ହେବ, ଡାକ୍ତରବାବୁଙ୍କ ସହିତ ପରାମର୍ଶ କରି' - ନହେଲେ ଏମିତି ନିସ୍ତେଜ ହେଇ ମଣିଷଟା ପଡ଼ିଥିବ ଖଟ ଉପରେ.... ମାଉସୀ ଥିଲେ, ସବୁ ଦାୟିତ୍ୱ ନେଉଥିଲେ । ସେ କ'ଣ ଚାହୁଁଛନ୍ତି, ନ ଚାହୁଁଛନ୍ତି ଜାଣିଥିଲେ । ଆମେ ତ ଜାଣିପାରୁନୁ.... ବଡ଼ ବ୍ୟସ୍ତ ଲାଗୁଛି ବୋଉ ।

ହେମ ଭାବିଲା, ସତରେ ଉମା ମାଉସୀ ହଠାତ୍ ହିଁ ଚାଲିଗଲେ ମଉସାଙ୍କୁ ଏକା କରିଦେଇ । କିଛି ହୋଇନଥିଲା, ବସୁ ବସୁ ଢଳି ପଡ଼ିଲେ । କାଚ ସିନ୍ଦୂର ପିନ୍ଧି ଚାଲିଗଲେ ନିଜେ ସତ ହେଲେ ବିଚରା ମଉସା, ସେଇଦିନରୁ କେମିତି ମୂକ ପାଲଟି ଯାଇଛନ୍ତି । ବର୍ଷଟିଏ ହେଇଯିବ ଦେଖୁ ଦେଖୁ । ଉମା ମାଉସୀଙ୍କ ଶୁଦ୍ଧିକ୍ରିୟା ସବୁ ନିଜେ କଲେ ମଉସା । ପୁଅମାନଙ୍କୁ ଖବର ଜଣେଇଲେ ଅନେକ ଦିନ ପରେ ।

ଅଭିମାନ, ଦୂରନ୍ତ ଅଭିମାନ ବୁଢ଼ାଙ୍କର । ହେମ ମନେ ମନେ ଭାବିଲା, ଆଜିକାଲି ପିଲାଏ ନିଜ କର୍ତ୍ତବ୍ୟ କଥା ଭୁଲିଗଲେଣି । ଜନ୍ମ କଲା ବାପା ମା' ତାଙ୍କ ପାଇଁ ବୋଝ । ମରିଗଲା ପରେ ଭୋଜିଭାତ, ଶ୍ରାଦ୍ଧ ପିଣ୍ଡ କଲେ କ'ଣ ହେବ - ବଞ୍ଚିଥିଲା ବେଳେ ତ ସୁଖଶାନ୍ତି, ସେବା ଯତ୍ନ ଟିକେ ଦେଇପାରିବନି । ଜରାଶ୍ରମରେ ଥିବା ସମସ୍ତେ ପ୍ରାୟ ଏଇ ଯନ୍ତ୍ରଣାରେ ଛଟପଟ ହେଉଛନ୍ତି ଏଇ ଅକୁହା ଯନ୍ତ୍ରଣା ସହି ହୁଏନି କି କହି ହୁଏନି ।

ଭାବୁ ଭାବୁ ହେମ ମଶାରୀ ପାଖକୁ ଯାଇ ମଶାରୀ ଖୋଲିଲା । ବିଚରା ନିର୍ବେଦ ହୋଇ ଶୋଇଛନ୍ତି । ତାଙ୍କ ମୁହଁରେ ପାଣି ହାତ ଟିକେ ବୁଲେଇ ଆଣି ପଣତରେ ପୋଛି ଦେଲା । 'ୟୁରିନାଲ୍ ପାଉଚଟା ସଫା କରି ଆଣିଲା । ଦୁହେଁ ମିଶି ଚାଦର ବଦଳେଇ

ସଫା ଚାଦର ପକେଇ ଦେଲେ । ଲୁଗାପଟା ସଜାଡ଼ି ଦେଇ ହେମ, ଲକ୍ଷ୍ମୀକୁ କହିଲା, ତିନିଦିନ ହେଇଗଲାଣି, କାହିଁ କିଛି ତ ପରିବର୍ତ୍ତନ ହେଲାନି । ପିଲାଏ ବି ଖବର ପାଇଲେ କି ନ ପାଇଲେ ଜାଣି ହେଲାନି । ଏମିତି କଣ ଶୋଇଥିବେ ବିଛଣାରେ । ଖିଆପିଆ ନାହିଁ - ଖାଲି ଗ୍ଲୁକୋଜ୍...... କେତେଦିନ ଚାଲିବ ଏମିତି କହିଲୁ ମା' ? ଆଉଥରେ ତାଙ୍କ ପୁଅ ପାଖକୁ ଫୋନ୍ କଲେ ହୁଅନ୍ତାନି ? କେତେବେଳେ କୋଉ କଥା ।

ଲକ୍ଷ୍ମୀ ଚିନ୍ତିତ ହୋଇ କହିଲା, ଠିକ୍‌କଥା । ସେମାନଙ୍କ ବିନା ପରାମର୍ଶରେ ଆମେ କଣ କରିବା । କୌଣସି ପଦକ୍ଷେପ ତ ନେଇପାରିବାନି ନା ବୋଉ । ରାଘବ ସାର୍ ଆସନ୍ତୁ । ତାଙ୍କ ସହିତ ପରାମର୍ଶ କରି କିଛି ଗୋଟାଏ ଉପାୟ ଚିନ୍ତା କରିବା । ତେବେ ତାଙ୍କ ପିଲାଙ୍କୁ ଖବରଟା ନିହାତି ପହଞ୍ଚେଇବା ଦରକାର । ଅଫିସ୍ ଖୋଲୁ । ଧରଣୀ ଆସିଲେ ଜଣାପଡ଼ିବ ରାତିରେ କିଛି ଖବର ଆସିଛି କି ନାହିଁ ।

ଧରଣୀ ଏଇ ଆଶ୍ରମର ରିସେପ୍‌ସନିଷ୍ଟ୍ ।

ହେମ କହିଲା, ସେଇଯା ହିଁ କର । ତା'ହେଲେ ମୁଁ ଏବେ ଯାଉଛି, ଅନ୍ୟମାନଙ୍କ କଥା ବୁଝିବି । ବାପାଙ୍କୁ ଗରମ ପାଣି ଦେବି । ତୁ ଆଉ ଡେରି ନକରି ଶୀଘ୍ର ନିଜ କାମ ସାର । ସାରା ରାତି ଶୋଇନୁ ଦେହ ବିଗିଡ଼ି ଯିବ । କ'ଣ ଟିକିଏ ଜଳଖିଆ ଖାଇ ଘଣ୍ଟେ ଦି' ଘଣ୍ଟା ବିଶ୍ରାମ ନେଇ ଉଠିଲେ ଯାହା କାମ କରିବୁ ।

କାନ୍ଥଘଣ୍ଟାରେ ପାଞ୍ଚଟା ବାଜିଲା ।

ହେମ ତରତର ହେଲା ଶୀଘ୍ର କାମ ସାରିବାକୁ । ସମୟ ସାଂଗରେ ତାକୁ ଚାଲିବାକୁ ପଡ଼ିବ । ଡେରି ହେଇଗଲାଣି । ସରଆଇ, ମାଗୁଣି ଅଜା ଚାହିଁ ବସିଥିବେ, ଅଥୟ ହେବେଣି ।

ଯାଉ ଯାଉ ଅଲେଖକୁ ଡାକ ପକେଇଲା ହେମ "ପୁଅ ଉଠିଲୁଣି କିରେ..... କେତେ କାମ ଅଛି ଆଜି ତୋ'ପାଇଁ..... ଅଲେଖ....."

ଅଲେଖ ହେମକୁ ସାହାଯ୍ୟ କରେ, ସଉଦାପତ୍ର, ହାଟ ବଜାର କଥା ଦେଖେ । ବେଳେବେଳେ ରୋଷେଇରେ ବି ହାତ ବଢ଼ାଏ । ହେମ ସକାଳ ଜଳଖିଆ ପାଇଁ ବରାଦ ଦେବ ବୋଲି ଅଲେଖକୁ ଖୋଜିଲା ।

ନିରଳସ ବୋଉର ଯିବା ବାଟକୁ ଚାହିଁ ଲକ୍ଷ୍ମୀ ମନକୁ ମନ କହିଲା, ସେ ବୋଉ ଭଳିଆ ହୋଇ ପାରିବନି କେବେ' ଟିକିଏ ବି ଅଳସ ନାହିଁ, କାମରେ କି ବିଚାରରେ । ତା ପଛକୁ ପଛ ହେଇ ସବୁ କାମ ତାର ଖଞ୍ଜି ହୋଇଥିବ ଯେମିତି ।

ବୋଉଟା ଅଛି ବୋଲି ସିନା ଜୀବନର ଚକ ଗଡ଼ି ଚାଲିଛି, ଏମିତିକି ଏ ଅନୁଷ୍ଠାନର କୌଣସି କାମ ବି ଅଟକୁନି - ଚାଲିଛି ଯଥାରୀତି । ସହଜ ଲାଗୁଛି ଜୀବନ ଯାତ୍ରାଟା.....

ଲକ୍ଷ୍ମୀ ସଚେତନ ହେଲା ତାକୁ କାମ ସାରିବାକୁ ହେବ ଶୀଘ୍ର । ଅନେକ କାମ ବାକି ପଡ଼ିଛି । ପୁଣି ଦି'ଟା ବେଳେ ତାକୁ କୋଚିଂ କ୍ଲାସ୍ ଯିବାକୁ ଅଛି ।

ଲକ୍ଷ୍ମୀ ନିଜ କାମ ସାରି, ଜଳଖିଆ ଖାଇ ଉଠିଲା ବେଳକୁ ସାତଟା ବାଜୁଥିଲା । ସତରେ ତାକୁ କ୍ଲାନ୍ତ ଲାଗୁଥିଲା, ତିନି ରାତି ହେଲାଣି - ଏକା ପ୍ରକାର ରୁଟିନ୍ ଚାଲିଛି । ଅଧ ଘଣ୍ଟାଏ ବିଶ୍ରାମ ନେଇ ଉଠିଲେ, ସେ ହସ୍ପିଟାଲ୍ ଯିବ କିମ୍ବା ଫୋନ୍ କରି ପରାମର୍ଶ ନେବ, ମଉସାଙ୍କ ସଂପର୍କରେ । ଲକ୍ଷ୍ମୀ ନିଜକୁ ଏଥର ଖଟ ଉପରେ ଅଡାଡ଼ି ଦେଲା ଟିକିଏ ଆଖି ବୁଜିବ ବୋଲି ।

ପନ୍ଦର କୋଡ଼ିଏ ମିନିଟ୍ ଯାଇଛି କି ନାହିଁ, ଆଖି ଲାଗିଆସୁଥିଲା, ସୁକାନ୍ତ ଆସି ଡାକ ପକେଇଲା, ଦେଈ..... ଦେଈମ..... ଶୀଘ୍ର ଆସ..... ତମର ଫୋନ୍.....

ଧଡ଼ପଡ଼ ହେଇ ଉଠି ବସିଲା ଲକ୍ଷ୍ମୀ । ତଳକୁ ଓହ୍ଲେଇଗଲା ଫୋନ୍ ଧରିବାକୁ । ସୁକାନ୍ତ ଫୋନ୍ ବଢ଼େଇ ଦେଲା ହାତକୁ ତାର । 'ହାଲୋ....ଜଣେ ଭଦ୍ରମହିଳା ସେପାଖରୁ କହୁଥିଲେ ହିନ୍ଦୀରେ ନୂଆ ପାଟି ଚିହ୍ନିପାରିଲାନି । ଅନୁମାନ ଲଗେଇଲା ରଘୁମଉସାଙ୍କର କିଏ ଆତ୍ମୀୟ ହୋଇଥିବେ । ପଚାରିଲା ପରିଚୟ । ସିଆଡୁ ଉତ୍ତର ଆସିଲା "ମୁଁ ଶିବାଶିଷ ଦାସଙ୍କ ମିସେସ୍ ମଧୁମିତା କହୁଛି । ଶିବାଶିଷ ଭାରତ ବାହାରକୁ, ଆଉମିନ୍ ଜାପାନ୍ ଯାଇଛନ୍ତି ବିଜ୍‌ନେସ୍ କାମରେ । ତାଙ୍କ ସହିତ କଥାବାର୍ତ୍ତା କରିବା ସମ୍ଭବ ନୁହେଁ । ସେଇକଥା ଜଣେଇବା ପାଇଁ ମୁଁ ଫୋନ୍ କରୁଥିଲି । ତାଙ୍କ ବାପାଙ୍କ ଅବସ୍ଥା କିମିତି ଅଛି ? ଡାକ୍ତର, ମେଡ଼ିସିନ୍, ଚିକିତ୍ସା ଠିକ୍ ଚାଲିଛି ତ ?

ତା'ପରେ ସାଧାରଣ କିଛି ପ୍ରଶ୍ନ ଚିକିତ୍ସା ସଂପର୍କରେ... ।

ଲକ୍ଷ୍ମୀ ସଂକ୍ଷେପରେ ମଉସାଙ୍କ ବର୍ତ୍ତମାନର ଅବସ୍ଥା ଓ ବ୍ୟବସ୍ଥା ସଂପର୍କରେ ଜଣେଇ ସାରିଲା ପରେ କହିଲା, "ବର୍ତ୍ତମାନ ଡାକ୍ତର କହୁଛନ୍ତି ଅବସ୍ଥା ସଂକଟାପନ୍ନ ଯେ କୌଣସି ସମୟରେ କିଛି ବି ଘଟିପାରେ । ଟର୍‌ମିନାଲ୍ ଇଲ୍‌ନେସ୍ ଏଇଟା । ଆଗକୁ କ'ଣ କରାଯିବ, ସେ ସଂପର୍କରେ ଆମକୁ ନିର୍ଦ୍ଦେଶ ଦେଲେ, ସମ୍ଭବ ହେଲେ ଆଶ୍ରମ ସେଇ ପ୍ରକାର ବ୍ୟବସ୍ଥା କରିବାକୁ ଚେଷ୍ଟା କରିବ ।

ଉତ୍ତରରେ ମିସେସ୍ ଦାସ ଦୁଃଖ ପ୍ରକାଶ କରି କହିଲେ, ମୁଁ ଖୁବ୍ ଦୁଃଖିତ । କୌଣସି ପରାମର୍ଶ ମୁଁ ଦେଇପାରୁନି ଏ ସଂପର୍କରେ ବରଂ ବଡ଼ଭାଇ, ଯିଏ ଲଣ୍ଡନରେ ରହୁଛନ୍ତି, ତାଙ୍କ ସହିତ ଯୋଗାଯୋଗ କରିବା ଉଚିତ୍ ହେବ । ସେଠାକାର ଯୋଗାଯୋଗ ପାଇଁ ନମ୍ବରଟା ହେଲା...... ଫୋନ୍ ନମ୍ବରଟା କହି ସାରି ମହିଳା ଫୋନ୍ କାଟିଦେଲେ ।

ମୁହୂର୍ତ୍ତଟିଏ ଚୁପ୍‌ଚାପ୍ ବସିଗଲା ଲକ୍ଷ୍ମୀ ଥ' ହୋଇ । ମନକୁ ମନ ପ୍ରଶ୍ନ କଲା, ଏଇ ତା'ହେଲେ ରକ୍ତ ସଂପର୍କ ? ଯାରି ନାଁ ପୁଅ, ଆତ୍ମୀୟ ? ? ଭଲ ଲାଗିଲାନି

ଭଦ୍ରମହିଳାଙ୍କ ବ୍ୟବହାର । ଯିମିତି କାମଚଳା । ଉପର ଠାଉରିଆ । ଦେହରୁ ପୋଛିଦେଲା ଭଳି । ଆନ୍ତରିକତାର ଚିହ୍ନବର୍ଣ୍ଣ ନାହିଁ ।

ତାକୁ ନୀରବ ରହିବା ଦେଖି ସୁକାନ୍ତ ପଚାରିଲା, କିଏ ଦେଇ.... କ'ଣ କହୁଥିଲେ ? ଲକ୍ଷ୍ମୀ ଚାହିଁଲା ତା ମୁହଁକୁ, କ'ଣ ଆଉ କହିବ ତାକୁ, କହିଲା "ରଘୁମଉସାଙ୍କ ସାନବୋହୂ ମୁମ୍ବାଇରୁ ଫୋନ୍ କରିଥିଲେ । ସ୍ୱାମୀ ତାଙ୍କର ଜାପାନ୍‌ରେ; ବଡ଼ଭାଇଙ୍କ ସହିତ ସଂପର୍କ କରିବାକୁ କହିଲେ ।"

ବାସ୍ । ଏତିକି । ତାଙ୍କର କିଛି ଆଉ ଦାୟ ଦାୟିତ୍ୱ ନାହିଁ ? କି ଆଶ୍ଚର୍ଯ୍ୟ ! ଲକ୍ଷ୍ମୀ ମୁହଁରେ ଶୁଖିଲା ହସ ଟିକିଏ ଫୁଟି ଉଠିଲା । ସବୁ କଥା ସ୍ପଷ୍ଟ ହୋଇ ଉଠୁଥିଲା କ୍ରମଶଃ । ରମା ମାଉସୀଙ୍କ ଦେହାନ୍ତ ଖବର ଜଣେଇବା ନେଇଁ କେହି ପ୍ରଶ୍ନ କରିବା ଆଗରୁ ମଉସା କହିଥିଲେ, "କାହିଁକି କାହାକୁ ହଇରାଣ କରିବି । ମୁଁ ତ ନିଜେ ଅଛି । ମୋ ସ୍ତ୍ରୀଙ୍କ ଦାୟିତ୍ୱ ମୋର । ସେମାନେ ଆସି ଅଧିକା କ'ଣ କରିବେ ।" କାଲୁଆଲି ଖବରଟା ଜଣେଇଦେବି ।

ଦୀର୍ଘଶ୍ୱାସ ନେଇ ଲକ୍ଷ୍ମୀ ଅଫିସ୍ ଛାଡ଼ି ଉପରକୁ ଆସିଲା । ଫୋନ୍ ଆସିଛି ଶୁଣି । ସମସ୍ତେ ଅପେକ୍ଷା କରିଥିଲେ ଖବର ଶୁଣିବାକୁ । ହେମ ଦୌଡ଼ିଆସିଲା ରୋଷେଇଶାଳରୁ ।

ଠିକେ ଠିକେ ଯାହା ଶୁଣିଥିଲା କହିଗଲା ଲକ୍ଷ୍ମୀବୋଉକୁ । ପାଖରେ ଠିଆ ହୋଇଥିଲା ସୁକାନ୍ତ । କହିଲା- "ଛୋଟ ମୁହଁରେ ବଡ଼ କଥା ଜାଣେ ଭଲ ଲାଗିବନି ଶୁଣିବାକୁ । ତଥାପି ମନକୁ ବାଧୁଛି ବୋଲି କହି ଦେଉଛି, ମନେ କରିବନି କିଛି ଦେଈ - ଏତେ ବଡ଼ଲୋକର ପୁଅ- ବଡ଼ଘର ହେଲେ କଣ ହେଲା, ମନ ବଡ଼ ନୁହେଁ । ଆଉ କାହାର ନୁହେଁ ବାପାଙ୍କ ଜୀବନ ସରିଯାଉଛି - ଖୋଜିଲେ ମିଳିବନି ଆଉ । ଥରେ ମନ ହେଲାନି ଦେଖିବାକୁ । କିମିତି ମଣିଷ ଏମାନେ....." ଆଖି ତା'ର ଛଳଛଳେଇ ଉଠିଲା କହୁ କହୁ । "ଠିକ୍ ଅଛି ରଘୁଅଜାଙ୍କର କିଛି ହେବନି ଅସୁବିଧା, ଆମେ ସବୁ ଅଛୁ ନା ।"

ହେମର ମନେପଡ଼ିଗଲା କମଳା ମା'ର କଥା- 'ଜୀବନର ଶେଷଟା ବଡ଼ ଦୁଃଖପୂର୍ଣ୍ଣ ସତରେ । ଜନ୍ମ କଲା ପୁଅଝିଅଙ୍କ ଅବହେଳା ସହ୍ୟ କରିବା ଭାରି କଷ୍ଟ । ଗୋଟାଏ ଅଭିଶାପ ।'

ଏଇ ଜରାଶ୍ରମର ଦେଖିବାକୁ ଗଲେ, ଅଧିକାଂଶ ଅଭିଶପ୍ତ । କିଏ କୋଉ ପ୍ରକାରେ ଅକୁହା ଦୁଃଖକୁ ଛାତିରେ ଧରି ମୁହଁରେ ହସ ଫୁଟେଇ ସମୟକୁ ଆଡ଼େଇ ଆଡ଼େଇ ଆଗକୁ ଚାଲୁଛନ୍ତି ଏବଂ ଅପେକ୍ଷା କରୁଛନ୍ତି ଆଉ ଏକ ନୂଆ ସକାଳର ସୂର୍ଯ୍ୟକୁ । ସଭିଏଁ ତ ଅସ୍ତମୁଖୀ - କିଛି କିଛି ଶାରୀରିକ କଷ୍ଟ ରୋଗଯନ୍ତ୍ରଣା ସ୍ୱାଭାବିକ ଭାବେ ଭୋଗ

କରିବାକୁ ପଡ଼ିଥାଏ । ଅଧିକା କିଛି ସୁଖଭୋଗର ଲାଳସା ବି ନଥାଏ । ଥାଏ କେବଳ ଟିକିଏ ସହାନୁଭୂତିର, ଆପଣାପଣ ଆଉ ସେବାଶୁଶ୍ରୁଷାର ଆଶା । ଅନ୍ୟ ଦେଶ କଥା ଅଲଗା, ଅଲଗା ସେମାନଙ୍କ ସଂସ୍କୃତି ଓ ଜୀବନଧାରା । କିନ୍ତୁ ଆମର ପୁରୁଷ ପୁରୁଷ କ୍ରମରେ ବାପା ମା' ଓ ସନ୍ତାନ ସନ୍ତତି ଭିତରେ ଗଢ଼ି ଉଠିଥିବା ଏଇ ଅବିଚ୍ଛେଦ୍ୟ ସଂପର୍କ ଇହ ଆଉ ପରକାଳକୁ ବାନ୍ଧି ରଖେ ବୋଲି ଏଠି ବୃଦ୍ଧାବସ୍ଥା ଅସହାୟ ନୁହେଁ - ସୁରକ୍ଷିତ ଓ ସୁଖପ୍ରଦ । ଆମ ଅନ୍ତଃଚେତନାରେ ଆମେ ଏହାକୁ ଜନ୍ମଗତ ଋଣ ବୋଲି ସ୍ୱୀକାର କରୁ - ଯୋଉ ଋଣ ଜନ୍ମ ଜନ୍ମ ଧରି ପରିଶୋଧ କରାଯାଇପାରେନା ।

ଆଜି କିନ୍ତୁ ଏଇ ମାନସିକତା ଆମ ଭିତରୁ ପୋଛି ହୋଇଯାଉଛି ଧୀରେ ଧୀରେ । ସୁଖଲୋଭୀ ସ୍ୱାର୍ଥପର ହୋଇଯାଉଛି- ଭୁଲିଯାଉଛି ଏଇ ସଂପର୍କର ମୂଳ 'ତ୍ୟାଗ'କୁ ଏବଂ ତ୍ୟାଗର ମହାନ୍ ଆଦର୍ଶକୁ । ନହେଲେ ଏଇ ଆଦର୍ଶର ମାଟିରେ 'ଓଲଡ୍ ଏଜ୍ ହୋମ୍'ର ଆବଶ୍ୟକତା କ'ଣ ଥିଲା ? ଆଧୁନିକ ଜୀବନଧାରାର ନୂଆ ଆମଦାନୀ ଇଏ । ତଥାପି ଏହା ସ୍ୱାଗତଯୋଗ୍ୟ ବୋଲି କହିବାକୁ ହେବ । ଲକ୍ଷ୍ମୀର ଭାବନା ବଉଳି ଉଠୁଥିଲା ସୁକାନ୍ତର ଟିପ୍ପଣୀରେ ପରିବେଶଟା ଓଜନିଆ ମନେ ହେଉଥିଲା ।

ସେଇ ସୁକାନ୍ତ ହିଁ ମନେପକେଇ ଦେଲା- "ଦେଇ ଆମେ ପରା ଡାକ୍ତରଙ୍କ ପାଖକୁ ଯିବା, ଦେଖିଲ କେତେ ଡେରି ହେଲାଣି ।"

ସତେତ! ହାତଘଣ୍ଟାକୁ ଚାହିଁ ଚମକି ଉଠିଲା ଲକ୍ଷ୍ମୀ, 'ଚାଲ ଚାଲ ମୁଁ ଏଇ ସାଂଗେ ସାଂଗେ ଉଠିଲି ।' ଭାବନାକୁ ପଛକୁ ଠେଲି ଲକ୍ଷ୍ମୀ ଉଠିପଡ଼ିଲା କର୍ତ୍ତବ୍ୟର ଆହ୍ୱାନରେ । ହସ୍‌ପିଟାଲ୍‌ରୁ ଫେରିଲେ ସେ କୋଚିଂ ସେଣ୍ଟର୍ ଯିବ ଓ କଲେଜରେ ବି ଟିକିଏ ମୁହଁ ଦେଖେଇ ଆସିବ । ଚାରି ଛ'ଦିନ ହେଇଯିବ ଯାଇନି ।

|| ୨ ||

ରାତି ପାହିଲେ, ଦିନର ଆଲୁଅରେ ସୁଧାମୟୀ ଜରାଶ୍ରମ କିଛିଟା ଚଳଚଂଚଳ ହୋଇଉଠେ । ମାଗୁଣି ଅଜା, ଦେବମଉସା, ରାଜୁମାମୁଁ ଦିନୁ ଅଜା ହେଉିକା ପ୍ରାତଃ ଭ୍ରମଣରେ ବାହାରନ୍ତି । ଖରା ପଡ଼ିବା ଆଗରୁ ହିଁ ଫେରିଆସନ୍ତି ତା'ପରେ ବାରଣ୍ଡାରେ ବସି ଗପ ଜମେ । ଅତୀତ ମଂଜରିତ ହୁଏ । ସୁଖଦୁଃଖ, ହସକାନ୍ଦର କକ୍‌ଟେଲ ଭିତରେ ଆସର ଭାଙ୍ଗେ । କେବେ କେବେ ଅନ୍ତେବାସୀଙ୍କ ଆତ୍ମୀୟସ୍ୱଜନ ଚାହିଁଲେ ସାକ୍ଷାତ୍ ପାଇଁ ଆସନ୍ତି – କିଛି ମୁହୂର୍ତ୍ତ ଆନନ୍ଦ ବାଣ୍ଟିବାରେ କଟିଯାଏ ସେମାନଙ୍କ ସହିତ । ଜୀବନ ସହଜ ଲାଗେ । ଏକାନ୍ତ ବାନପ୍ରସ୍ଥାଶ୍ରମ କଟାଉଥିବା ଅନ୍ତେବାସୀଙ୍କ ମୁହଁରେ କିଛି ସମୟ ପାଇଁ ହସର ପାଖୁଡ଼ା ଝରିପଡ଼େ । ସ୍ମୃତିର ହାତ ଧରି ଅସ୍ତମୁଖୀ ସୂର୍ଯ୍ୟ ଦି'ଚାରି ପାଦ ଚାଲୁ ଚାଲୁ ଦିନ କଟିଯାଏ ଜଣା ପଡ଼େନି । ପୁଣି ଚାଲିଆସେ ସଂଜୁଆ ଅଂଧାର । ଅଗଣାର ଚଉରା ମୂଳରେ ସଂଜବତୀମାନେ ଜଳି ଉଠି ସମୟର ସୀମିତତାକୁ ସୂଚେଇ ଦେଇ ବିଲୟ ଭଜନ୍ତି । ପ୍ରତିଟି କୋଠରୀରେ ଧୂପର ବାସ୍ନା ଚହଟି ଉଠେ । କ୍ରମଶଃ ନୀରବତା ସଂଚରି ଆସେ ଆଶ୍ରମରେ ।

ଦିନେ ଦିନେ ସହରର ମାନ୍ୟଗଣ୍ୟ ବ୍ୟକ୍ତି, ସମାଜସେବୀ ମଧ ଜରାଶ୍ରମ ପରିଦର୍ଶନରେ ଆସନ୍ତି । କୌଣସି ବିଶିଷ୍ଟ ବ୍ୟକ୍ତିଙ୍କର ପୂଣ୍ୟତିଥି ଅଥବା ଜନ୍ମଦିନ ପାଳନ ଅବସରରେ ବି ଅନ୍ତେବାସୀଙ୍କ ଗହଣରେ କିଛି ସମୟ ବ୍ୟତିତାରଣ କରି ମିଷ୍ଟାନ୍ନ ବାଣ୍ଟନ୍ତି-ଆର୍ଥିକ ସାହାଯ୍ୟ କରିଯା'ନ୍ତି କିଛି ଅନୁଷ୍ଠାନ । ଏ ସବୁର ହିସାବ ସୁକାନ୍ତ ରଖେ ।

ପ୍ରାୟତଃ ମାସର ପ୍ରଥମ ସପ୍ତାହରେ ସ୍ୱୟଂସେବୀ ଅନୁଷ୍ଠାନ 'ସହାୟ' ସ୍ୱାସ୍ଥ୍ୟ ଶିବିର ପରିଚାଳନା କରିଥାନ୍ତି । କହିବାକୁ ଗଲେ ବିଗତ ପାଞ୍ଚ ଛ'ବର୍ଷ ଭିତରେ ଆଶ୍ରମର ବିଶେଷ କୌଣସି ଅସୁବିଧା ହୋଇନି ଶୃଙ୍ଖଳିତ ଭାବେ ହିଁ ଚାଲିଛି ସବୁ । ତିରିଶ ବତିଶ ଜଣ ଅନ୍ତେବାସୀ ଅଛନ୍ତି । ତା' ଭିତରୁ ସଂପନ୍ନ ପରିବାରର ଆଠଜଣ । ଯୋଉମାନଙ୍କ ପିଲାମାନେ ବାହାରେ ରହନ୍ତି ଓ ସେମାନେ ନିୟମିତ ଟଙ୍କା ଦେଇ ବାପା ମା'ଙ୍କୁ ଜରାଶ୍ରମର ଦାୟିତ୍ୱରେ ରଖିଛନ୍ତି । ଅନ୍ୟମାନଙ୍କ ମଧ୍ୟରେ ଅଛନ୍ତି ସାଧାରଣ ପରିବାରର କିଛି ନିଃସନ୍ତାନ ଦମ୍ପତି, ଅସହାୟ ମହିଳା, ସ୍ୱାମୀ ପରିତ୍ୟକ୍ତା, ସନ୍ତାନମାନଙ୍କ ଦ୍ୱାରା ଅବହେଳିତ, ପୁରୁଷ ମହିଳା ସମସ୍ତେ ଏକାଠି ଜରାଶ୍ରମକୁ ଆପଣା ଘର ମନେକରି ସହଜ ଜୀବନ ଯାପନ କରୁଛନ୍ତି । କାହାର କୌଣସି ପ୍ରକାର ଅଭିଯୋଗ ନାହିଁ । ଜରାଶ୍ରମର ସମସ୍ତ ପ୍ରକାର ଦାୟିତ୍ୱ ଲକ୍ଷ୍ମୀ, ହେମ, ଅଲେଖ, ସୁକାନ୍ତ ଏବଂ ଜଣେ ମଧ୍ୟ ବୟସର ମହିଳା ସୁଲତାଙ୍କ ମଧ୍ୟରେ ବାଣ୍ଟି ହେଇ ରହିଛି । କେଶବାର ସ୍ୱାସ୍ଥ୍ୟ ବିଶେଷ ଭଲ ରହୁ ନ ଥିବାରୁ ତା'ଉପରେ କୌଣସି ଦାୟିତ୍ୱ ଦେଇନାହାନ୍ତି ପରିଚାଳନା କମିଟି । ତେବେ ମୋଟାମୋଟି ଭାବେ ହେମ ଓ ଲକ୍ଷ୍ମୀ ହିଁ ସମ୍ଭାଳି ନିଅନ୍ତି ସବୁକିଛି ।

ଯଦିଓ ବୟସ୍କ ଅନ୍ତେବାସୀଙ୍କ ତତ୍ତ୍ୱାବଧାନ ପାଇଁ ଜଣେ ବୟସ୍କା ମହିଳା ପରିଚାଳିକା ଜରାଶ୍ରମ ଭିତରେ ରହିବା ନିହାତି ଆବଶ୍ୟକ ବୋଲି କମିଟି ସୁପାରିଶ କରିଥିଲା । କିନ୍ତୁ ରାଘବବାବୁ, ହେମ ଓ ଲକ୍ଷ୍ମୀ ଉଭୟଙ୍କୁ ଏଇ ଦାୟିତ୍ୱ ବାଣ୍ଟି ଦେଇ ସେମାନଙ୍କୁ ନିଯୁକ୍ତି ଦେଇଥିଲେ । ତାଙ୍କର ବିଶ୍ୱାସ ଥିଲା ହେମ ଆଭ୍ୟନ୍ତରୀଣ ସମସ୍ତ ଆବଶ୍ୟକତାକୁ ତୁଲାଇ ପାରିବ ଏବଂ ଲକ୍ଷ୍ମୀ ଜରାଶ୍ରମର ଆର୍ଥିକ ଦିଗ ହିସାବପତ୍ର ରଖି ପାରିବ ତାକୁ ସାହାଯ୍ୟ କରିବା ପାଇଁ ଅଲେଖ ସୁକାନ୍ତ ତ ଅଛନ୍ତି । ରାଘବ ବାବୁଙ୍କ ଏ ପ୍ରକାର ସୁପାରିଶ୍‌କୁ ପରିଚାଳନା କମିଟି ଶ୍ରଦ୍ଧାର ସହିତ ଅନୁମୋଦନ କରିଥିଲେ । ରାଘବବାବୁ ବି ନିଶ୍ଚିନ୍ତ ହୋଇଥିଲେ ଯେ ଝିଅଟା, ମାଁ, ମାଉସୀ, ଅଜା, ମାମୁଙ୍କ ମେଳରେ ରହି ନିଜ ସ୍ୱପ୍ନକୁ ସାକାର କରିପାରିବ । ସେ ତ ଅଛନ୍ତି ସବୁବେଳେ ।

ସୂର୍ଯ୍ୟୋଦୟର ଅପେକ୍ଷାରେ ଥିବା ଲକ୍ଷ୍ମୀର ଆଖିଆଗରେ ସେଦିନ ଅସୀମ ଦିଗନ୍ତ ଖୋଲି ହୋଇ ଯାଇଥିଲା । ରାଘବ ସାର୍‌ଙ୍କ ପାଇଁ ତା' ପାଖରେ କୃତଜ୍ଞତାର ଭାଷା ନଥିଲା ।

ସେଇ ଦିନରୁ କେଶବା ପରିବାର ଜରାଶ୍ରମର ସଦସ୍ୟ ହୋଇ ଯାଇଛନ୍ତି ଏବଂ ଏଯାବତ୍ ଲକ୍ଷ୍ମୀର କାର୍ଯ୍ୟ ଦକ୍ଷତା ଉପରେ କେହି କେବେ ପ୍ରଶ୍ନ ଉଠେଇନି । ଆଶ୍ରମର ସବୁ କାମ ତୁଲେଇ ସାରିବି ସେ ନିଜ ପଢ଼ାକୁ ଅବହେଳା କରିନି । ପ୍ରତ୍ୟେକ ପରୀକ୍ଷାରେ ସେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଛି । ନିଜ ଗୁଣରେ ସଭିଙ୍କୁ ସେ ଆପଣାର କରିପାରିଛି ।

ସେ ସମସ୍ତଙ୍କର ପ୍ରିୟ । ଗ୍ରାଜୁଏସନ୍ ପରେ ମନେ ମନେ ସେ ଭାବିଥିଲା, ଏମ୍.ଏ. କରିବ । ସେଇଟା ତା' ପାଇଁ ସୁବିଧା ହେବ । ଏବଂ କିଛି ନ ହେଲେ ଟିଚର୍‌ଟିଏ ତ ହେଇ ପାରିବ ।

କିନ୍ତୁ ତାର ପରୀକ୍ଷା ଫଳ ଦେଖି ରାଘବ ସାର୍, ରଘୁ ମଉସା, ରାଜୁମାମୁଁ ହେରିକା ଏକା ଜିଦ୍ ଲାଗେଇଲେ କମ୍ପିଟେଟିଭ୍ ପାଇଁ ଚେଷ୍ଟା କରିବାକୁ । ବାହାରକୁ ସିନା ଯାଇ ପାରିବନି । ଏଇଠି ଯାହା ସମ୍ଭବ ତାର ସଦୁପଯୋଗ କରିପାରିବା । ରଘୁମଉସା କହିଥିଲେ, ତୋର ଯୋଗ୍ୟତା ଅଛି ପ୍ରଶାସନ କ୍ଷେତ୍ରରେ ଯିବା ପାଇଁ । ଏଇ ବୟସରୁ ତୋ' ପାଖରେ ପରିଚାଳନା ସଂକ୍ରାନ୍ତ ଦକ୍ଷତା ବେଶ୍ ରହିଛି । ସାହସ ବି ଅଛି ଆଗକୁ ଆହୁରି ଅଭିଜ୍ଞତା ହେବ, ଶିଖିବୁ ମଧ୍ୟ । କୌଣସି ବିଷୟରେ ନିଷ୍ପତ୍ତି ନେବା ପାଇଁ ଯୋଉ ଦକ୍ଷତା ଓ ଦୂରଦୃଷ୍ଟି ଆବଶ୍ୟକ, ତାହା ତୋ'ପାଖରେ ରହିଛି । ତେଣୁ ଦି' ବର୍ଷ କୋଚିଂ କ୍ଲାସ୍‌ରେ ଆଡ୍‌ମିଶନ୍ ନେଇ, ପରୀକ୍ଷାରେ ବସ । ହେଉକି ନ ହେଉ ପ୍ରୟାସ ତ କରାଯାଇପାରେ । ଏମ୍.ଏ. ପଢ଼ିବାକୁ ଯଥେଷ୍ଟ ସମୟ ଅଛି । କେବଳ ଏମ୍.ଏ. କ୍ଲାସ୍‌ରେ ଆଡ୍‌ମିଶନ୍‌ଟା ନେଇଯାଇଥା' । ଗୁରୁଜନଙ୍କ ପରାମର୍ଶକୁ ସେ ଆଡ଼େଇ ପାରିନଥିଲା । ଆଜିଯାଏ ତ ସେ ନିଜ ପାଇଁ ନିଜେ ହିଁ ନିଷ୍ପତ୍ତି ନେଇଛି । ଏମିତି ସଂକଟ ମୁହୂର୍ତ୍ତ ମାନଙ୍କରେ ନିଷ୍ପତ୍ତି ନେବା ପାଇଁ ତାକୁ ନିଜ ସହିତ କମ୍ ସଂଘର୍ଷ କରିବାକୁ ପଡ଼ିନି । ଆଉ ଆଜି ତାର ସୌଭାଗ୍ୟକୁ ଗୁରୁ-ଗୁରୁଜନଙ୍କ ଆଶୀର୍ବାଦ ଓ ପରାମର୍ଶ ଯେତେବେଳେ ମିଳୁଛି, ସେ ତାକୁ ଟାଳିଦେବ କିମିତି ? ସେ ପରୀକ୍ଷାରେ ବସିବ । ସମସ୍ତଙ୍କ ସ୍ୱପ୍ନକୁ ସାକାର କରିବାକୁ ପ୍ରଯତ୍ନ କରିବ । ତା'ର ବି ତ ସ୍ୱପ୍ନ ଅଛି । ତା'ର ସେଇ ସ୍ୱପ୍ନ ଭିତରେ ଯୋଉମାନେ ଅଛନ୍ତି.....

.....ସ୍ୱପ୍ନ କଥା ଭାବୁଭାବୁ, ଲକ୍ଷ୍ମୀର ଭାବନା ଅଟକି ଗଲା ମୁହୂର୍ତ୍ତେ..... ସ୍ୱପ୍ନ...ହଁ, ତାର ସ୍ୱପ୍ନ ଥିଲା.... ଅଛି ବି । ହେଲେ, ସେଇ ସ୍ୱପ୍ନ ଭିତରକୁ ଏବେ ଭିନ୍ନ ଏକ ସ୍ୱପ୍ନ ପଶି ଆସି ତା' ଏକାଗ୍ରତାକୁ ଦୋହଲେଇ ଦେଉଛି ଯିମିତି । ଅସ୍ଥିର କରୁଛି ତାକୁ । ତା'ଚେତନାର ନିଥର ନିଶ୍ଚଳ ଜଳବେଣୀରେ କାହାର ଚହଲା ଛାଇ ରହି ରହିକା ତାକୁ ଅଥୟ କରିପକଉଛି ବେଳେବେଳେ । ଅନେକଗୁଡ଼ିଏ ବିଚିତ୍ର ଭାବାବେଗର ଆଚ୍ଛନ୍ନ ପ୍ରତିକ୍ରିୟା ଭିତରେ ସେ ହଜି ହଜି ଯାଉଛି ସତେ ଯେମିତି । ଅସ୍ୱସ୍ତି ଲାଗେ ତାକୁ । ମାଡ଼ି ମାଡ଼ି ପଡ଼େ, ଝାଳେଇ ଯାଏ ସେ କ୍ଲାସ୍ କରୁ କରୁ । ଏକାଗ୍ରତାକୁ ବାନ୍ଧି ରଖିପାରେନା । ତାକୁ ଯେମିତି କାହାର ନୀଳଛାଇ ବାରମ୍ୱାର ଗୋଡ଼େଇ ଧରୁଛି, ତାର ତୀକ୍ଷ୍ଣ ନିବିଷ୍ଟ ଚାହାଁଣିରେ । ଆଖିରେ ଆଖି ମିଶାଇବାକୁ ଚାହିଁବସିଛି । ଆଖି ମିଶିଗଲେ, ସ୍ଥିର ହୋଇଯାଉଛି ଆଖି ଡୋଳା, ପଲକ ପଡୁନି ସତେ ଯିମିତି ଅନେକ କଥା

କହିପକେଇବ । କିଏ ସେ ? କାହା ଆଖି ସେଇଟା ? କିଏ ଏଇ ସୌମ୍ୟ ଦର୍ଶନ ଯୁବକ ? ପଚାରି ପାରେନା ଲକ୍ଷ୍ମୀ କାହାକୁ । ଲାଜକଥା, କିମିତି ପଚାରିବ । ସେ କିନ୍ତୁ ଜାଣିପାରେ, ସେଇ ଅଚିହ୍ନା ଆଖି ଦୁଇଟି ତାକୁ ଖୋଜି ବୁଲୁଛି କିଛି କହିବ କହିବ ହୋଇ । ସେ ଧରା ଦେଉନି ।

ନିରୋଳା ମୁହୂର୍ତ୍ତରେ ନିଜକୁ ନିଜେ ପ୍ରଶ୍ନ କରେ ଲକ୍ଷ୍ମୀ, କାହିଁକି ତା'ର ଏଇ ଦୁର୍ବଳତା, କି ପ୍ରକାର ଦୁର୍ବଳତା । ନିଜକୁ ନିଜେ ଶାସନ କରେ ତଥାପି ମନ ଶାସନ ମାନେନା । ସେ ଅନୁଭବ କରେ, ତା' ଭିତରେ କୋଉଠି କ'ଣ ଭାଙ୍ଗିରୁଜି ଯାଉଛି ବି, ପୁଣି ଗଢ଼ି ହୋଇ ଯାଉଛି ବି । ବିଚିତ୍ର ଅନୁଭବ । ସତରେ ସେ ଅନ୍ୟମନସ୍କ ହେଇପଡୁଛି ଏଇ କିଛି ଦିନ ହେଲା । ସେଦିନ ସେ ଧରାପଡ଼ି ଯାଇଥିଲା ପ୍ରଫେସର୍ ଜେନାଙ୍କ ପାଖରେ- "କିଛି ସମସ୍ୟା ଅଛି କି ଲକ୍ଷ୍ମୀ, ଅନ୍ୟମନସ୍କ ଲାଗୁଛ..." । ସେ ଅପ୍ରସ୍ତୁତ ହୋଇ ଯାଇଥିଲା ନିଜ ଭିତରେ । ସଂକୋଚରେ ସାଙ୍କୁଡ଼ି ଯାଇ କହି ସିନା ଦେଲା 'କିଛି ନାହିଁ' ବୋଲି ହେଲେ ସେ ଜାଣୁଥିଲା ମନ ତା'ର ନିୟନ୍ତ୍ରଣରେ ନାହିଁ । ରଘୁମଉସାଙ୍କ ସଙ୍କଟାପନ୍ନ ଅବସ୍ଥା ତାକୁ କିଛିଟା ବାନ୍ଧି ରଖୁଥିଲେ ବି ମନ ଧାଉଁଛି କୋଚିଂ କ୍ଲାସ୍ ଆଡ଼କୁ । ଆଗରୁ କେବେ ସେ ଏଭଳି ବିଚିତ୍ର ପରିସ୍ଥିତି ଦେଇ ଗତି କରିନି । ସାମ୍ନା କରିନି ଏ ପ୍ରକାର ମାନସିକ ସ୍ଥିତିକୁ । କିଏ ସେ ଭଦ୍ରଲୋକ ? ଘଣ୍ଟା ଘଣ୍ଟା ଧରି ତାକୁ ହିଁ ନିବିଷ୍ଟ ଭାବେ ଚାହିଁ ରହିବାର ମାନେ କ'ଣ ? କଣ ସେ ପା'ନ୍ତି ? ତାକୁ ଖୁବ୍ ଅପ୍ରସ୍ତୁତ ଲାଗେ । କିଏ କଣ ଭାବୁଥିବ କେଜାଣି!!! ଭାବନା ମଝିରେ ମନେପଡ଼ିଗଲା, ମଉସାଙ୍କୁ ନାଜାଲ୍ ଫିଡ଼ିଂ କରିବାକୁ ହେବ । ଅଥଚ ଏଯାଏ ଅଲେଖ ଫେରିନି ହରଲିକ୍ସ ନେଇ । କିଣିବାକୁ ଯାଇଛି ତ ଯାଇଛି । ଆଉ ଚାରିଟା କାମ ହାତରେ ନେଇଁ ଯାଇଥିବ ତ.... ଡେରି ହେଉଛି ।

ଏଇ ଦି' ମାସ ହେବ ଆଇ.ଏ.ଏସ୍. କୋଚିଂ ସେଣ୍ଟରକୁ ମଝିରେ ମଝିରେ ଗେଷ୍ଟ ଲେକ୍‌ଚର୍ ଦେବାପାଇଁ ଆସୁଛନ୍ତି ଡକ୍ଟର ସାମନ୍ତ । ବିଶିଷ୍ଟ ମନୋବିଜ୍ଞାନୀ ସହରର । ଭୃଗୁ ସାମନ୍ତ । ବିଦେଶରୁ ଉଚ୍ଚଶିକ୍ଷା ନେଇ ଫେରି ଆସିବା ପରେ ସ୍ୱାଧୀନ ଭାବେ ଏଇ ସହରରେ ନିଜର ପ୍ରାକ୍ଟିସ୍ ଆରମ୍ଭ କରିଥିଲେ । ସରକାରୀ ଚାକିରି ପ୍ରତି କାହିଁକି ତାଙ୍କର ଆକର୍ଷଣ ନଥିଲା । ନିଜେ ସ୍ୱାଧୀନଚେତା ବୋଲି କି କଣ । ତେଣୁ ବର୍ଷ ଦି'ଟା ସରକାରୀ କଲେଜ୍‌ରେ ରହିବା ପରେ ନିଜ ଇଚ୍ଛାରେ ଚାକିରି ଛାଡ଼ିଦେଇଥିଲେ । କାରଣ ପ୍ରଥମରୁ ହିଁ ମଣିଷର ସେବା କରିବା ଲକ୍ଷ୍ୟ ନେଇ ସେ ଆରମ୍ଭ କରିଥିଲେ ନିଜର ପାଠପଢ଼ା । ବିଦେଶରେ ମଧ୍ୟ ସେ ଏଇକଥା ଦେଖିଆସିଛନ୍ତି । ସ୍ୱାଧୀନ ଭାବରେ ମଣିଷ ଯୋଉ

କାମ କରିପାରିବ, ଅନ୍ୟର ନିର୍ଦ୍ଦେଶ ଅଥବା ହସ୍ତକ୍ଷେପରେ ତାହା ସମ୍ଭବ ହୋଇପାରିବନି । ବିଦେଶରେ ହିଁ ସେ ରହିଯାଇ ପାରିଥାନ୍ତେ ସେଭଳି ସୁଯୋଗ ବି ତାଙ୍କୁ ମିଳିଥିଲା । ହେଲେ, ଦେଶମାତୃକାର ସେବା ଓ ଆପଣା ମଣିଷମାନଙ୍କୁ ସେଇ ସେବାର ସୁବିଧା ସୁଯୋଗ ଯୋଗେଇ ଦେବା ଉଦ୍ଦେଶ୍ୟରେ ନିଜ ମାଟିକୁ ସେ ଫେରି ଆସିଛନ୍ତି । ଏଇ ଅବକାଶରେ ଏଇ କୋଚିଂ ସେଣ୍ଟରର ମୁଖ୍ୟ ପ୍ରଫେସର୍ ଚନ୍ଦନ ରାୟ ସିଂଙ୍କ ଅନୁରୋଧ କ୍ରମେ କିଛି ଗେଷ୍ଟ୍ ଲେକ୍‌ଚର୍ ଦେବାକୁ ସେ ସପ୍ତାହରେ ଦିନେ ଦୁଇଦିନ ଆସିବା ପାଇଁ ସ୍ୱୀକୃତି ଦେଇଛନ୍ତି ଏବଂ ଆସୁଛନ୍ତି ମଧ୍ୟ । ଭଲଲାଗୁଛି ପରିବେଶଟା ତାଙ୍କୁ । ରୁଟିନ୍ ବନ୍ଧା କାମରୁ କିଛି ସମୟ ବାହାରି ଆସି ଯୁବସୁଲଭ ଉଦ୍ଦୀପନା ଭିତରେ କଟେଇବାରେ ଗୋଟାଏ ଆନନ୍ଦ ଅଛି । ଏକୁଟିଆ ମଣିଷ, ହାଲୁକା ଜୀବନ କୌଣସି ଦାୟ ଦାୟିତ୍ୱ ନାହିଁ । ଅଥଚ ମଣିଷକୁ, ମଣିଷର ମନସ୍ତତ୍ତ୍ୱକୁ ପଢ଼ିବାରେ ତାଙ୍କର ଆନନ୍ଦ ଅଛି । ମାନବିକତାର ପୂଜାରୀ । ମଣିଷର ଅସହାୟତା ତାଙ୍କୁ ଅଟକେଇ ରଖେ । ମଣିଷ ପ୍ରତି ସେ ସମ୍ବେଦନଶୀଳ ।

ଏଇ ଆନନ୍ଦ ଖୋଜୁ ଖୋଜୁ ହଠାତ୍ ଦିନେ ତାଙ୍କ ଆଖିରେ ପଡ଼େ ଝିଅଟିଏ । ସମସ୍ତଙ୍କଠାରୁ କେମିତି ଭିନ୍ନ ସ୍ୱଭାବର । ଚୁପ୍ ଚାପ୍ ଆସେ, କ୍ଲାସ୍‌ରେ ବସି ନିବିଷ୍ଟ ମନରେ ପଢ଼ାଶୁଣେ । ପଢ଼ା ସରିଲେ, ଚାଲିଯାଏ । ଦିନେ କେବେ ସେ ଦେଖିନାହାନ୍ତି କାହା ସଂଗେ ଗପିବା, ଫୂର୍ତ୍ତି କରିବା ଭଳି କିଛି । ଲାଗେ, ଯେମିତି ତାର ମୁହୂର୍ତ୍ତଟିଏ ସମୟ ନାହିଁ । ଖୁବ୍ ସାଧାରଣ, ଶାଳୀନ ଲାଗେ । ପୋଷାକ ପରିଛଦ, ଚାଲିଚଳଣି, କଥାବାର୍ତ୍ତାରେ ମପାଚୁପା, ଦେଖିବାକୁ ସୁନ୍ଦର, ବିଶେଷ କରି ତା' ଗାଲରେ ଥିବା କଳାଜାଇ ଅନ୍ୟକୁ ଆକର୍ଷଣ କଲା ଭଳି । ଅଥଚ ସେଥିରେ କୌଣସି ମାଦକତା ନାହିଁ, ନାହିଁ ମଧ୍ୟ ଅହଂପଣର ଗରିମା - ବାରିହେଇପଡ଼େ ଝିଅଟି ଅନ୍ୟମାନଙ୍କ ଭିତରୁ । ତାଙ୍କୁ ଖୁବ୍ ଭଲ ଲାଗେ । ଥରେ ଚାହିଁଲେ, ଆଖି ଫେରେଇ ହୁଏନା । ଏଇ ଭଲ ଲାଗିବାଟା କେମିତି କେଜାଣି, ଏଇ କିଛି ଦିନ ହେଲା ତାଙ୍କର ଅଭ୍ୟାସରେ ପଡ଼ିଯାଇଛି; କ୍ଲିନିକ୍ ସାରି ଘରକୁ ଫେରିବା ବାଟରେ କୋଚିଂ ସେଣ୍ଟରରେ କିଛି ସମୟ କଟେଇବା ପରେ ହିଁ ଘରକୁ ଫେରୁଛନ୍ତି । ଏଥିପାଇଁ ତାଙ୍କୁ କିଛି ନା କିଛି ବାହାନା ନେବାକୁ ପଡୁଛି । ନିଜେ ବୁଝିପାରୁଛନ୍ତି ଡ.ସାମନ୍ତ ନିଜର ଦୁର୍ବଳତା କୋଉଠି । ହେଲେ ଖୋଲା ଖୋଲି କାହାକୁ ଝିଅଟିର ପରିଚୟ ପଚାରି ବୁଝିବାକୁ  ତାଙ୍କୁ ମାଡ଼ିପଡୁଛି । ନିଜେ ମନୋବିଜ୍ଞାନର ଛାତ୍ର ହେଇ ମଧ୍ୟ, ନିଜ ଅରଣା ମନ ପାଖରେ ଅଜଣା ଅଚିହ୍ନା ପାଲଟି ଯାଉଛନ୍ତି - ବେଳେବେଳେ ଭାବିଲେ ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି । କାହିଁକି ସେ ଏମିତି ପାଗଳାମି କରୁଛନ୍ତି ନିଜକୁ ପ୍ରଶ୍ନ କରୁଛନ୍ତି ବି; ଯାରି ନାଁ କ'ଣ ପ୍ରେମ ? କେତେ ଝିଅଙ୍କୁ ସେ

ଦେଖିଛନ୍ତି ହେଲେ ଏଇ ଝିଅଟି ପାଖରେ କାହିଁକି ଏତେ ଦୁର୍ବଳ ହେଇ ପଡୁଛନ୍ତି ଯେ ? ନିଜକୁ ନିଜେ ଶାସନ କରନ୍ତି ଭୃଗୁ ସାମନ୍ତ, ନା, ତାଙ୍କୁ ଏଇ ପ୍ରେମପ୍ରେମ ଶୋଭାପାଏନା । ସେ ଜଣେ ସମାଜର ଦାୟିତ୍ୱ ସଂପନ୍ନ ଚିକିତ୍ସକ । ସମାଜ ଅନେକ କିଛି ତାଙ୍କଠୁ ଆଶା କରେ । ସେ ଯେ ମଣିଷଙ୍କ ସେବା କରିବା ପାଇଁ ଅଙ୍ଗୀକାରବଦ୍ଧ । ଅଥଚ ଏଇ ଯୁବସୁଲଭ ଚପଳତାକୁ କେହି ସହଜରେ ଗ୍ରହଣ କରିବେନି ।

ଘରକୁ ଫେରିବା ବାଟରେ ଭୃଗୁ ସାମନ୍ତ ନିଜ ସହିତ ତର୍କ ବିତର୍କ ଆରମ୍ଭ କରିଦେଇଥିଲେ । ନିଜ ପାଇଁ ଯେତେ ଯୁକ୍ତି ରଖିଲେ ବି 'ମନ' ପାଖରେ ହାର ମାନିବାକୁ ପଡୁଥିଲା । ଏତେ ବିଦ୍ୟାବୁଦ୍ଧି, ବିଚକ୍ଷଣତାର ଅଧିକାରୀ ଡାକ୍ତର ଭୃଗୁ ସାମନ୍ତ ଚଳଚଂଚଳ ଦୁଷ୍ଟ ମନକୁ ବାନ୍ଧି ରଖିବା ପାଇଁ ଉପାୟ ଖୋଜିବାକୁ ଯାଇ ପଢ଼ା ପାଠର ପୃଷ୍ଠା ଓଲଟେଇ ଚାଲିଥିଲେ ଅନ୍ୟମନସ୍କ ଭାବେ ।

ହଠାତ୍ ଗାଡ଼ିରେ ବ୍ରେକ୍ ଦେଲାବେଳକୁ ହୋସ୍ ଆସିଲା ଯେ, ସେ ଘରକୁ ଯିବା ମୋଡ଼କୁ ଛାଡ଼ି ଆସିଛନ୍ତି କେତେବେଳେ ଏବଂ ଏଇଟା କୋଚିଂ ସେଣ୍ଟର୍ ଅଥଚ ଆଜି ସେ ଆସିବେନି ବୋଲି ସ୍ଥିର କରିଥିଲେ ।

ଗାଡ଼ିରେ ଚାବି ଦେଇ ସେଣ୍ଟରର ବାରଣ୍ଡାରେ ପାଦ ଦେଉ ନ ଦେଉଣୁ, ପିଅନ୍ ନମସ୍କାର କରି କହିଲା, ଆପଣଙ୍କୁ ଜଣେ ଭଦ୍ରଲୋକ ଅପେକ୍ଷା କରିଛନ୍ତି ସାକ୍ଷାତ୍ କରିବେବୋଲି । ସେଇଠି ପରିଚୟ ରାଘବ ବାବୁଙ୍କ ସହିତ । ଅଫିସ୍‌ରେ ରାଘବବାବୁ ଅପେକ୍ଷା କରିଥିଲେ ଭୃଗୁସାମନ୍ତଙ୍କୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ 'ସହାୟ'ର ନିମନ୍ତ୍ରଣ ପତ୍ର ନେଇ । ଅନୁଷ୍ଠାନ ସ୍ୱାସ୍ଥ୍ୟ ଶିବିରର ଏକ କର୍ମଶାଳାରେ ଡାକ୍ତର ସାମନ୍ତଙ୍କୁ ଆମନ୍ତ୍ରଣ ଜଣେଇଛି ଯୋଗ ଦେବା ପାଇଁ ।

ନିମନ୍ତ୍ରଣକୁ ସାଦରେ ଗ୍ରହଣ କଲେ ଡାକ୍ତର ସାମନ୍ତ । ରାଘବ ବାବୁଙ୍କ ସହିତ ପରିଚୟ ବି ବେଶ୍ ହୃଦ୍ୟ ଏବଂ ଅନ୍ତରଂଗ ମନେ ହେଉଥିଲା । ତାଙ୍କ ମନକୁ ଚାହିଁ ଆଉ ଏକ ସେବାକ୍ଷେତ୍ର ମିଳିଗଲା ତାଙ୍କୁ । ଠିକ୍ ସମୟରେ ଯାଇ ପହଞ୍ଚିବା ପାଇଁ ପ୍ରତିଶ୍ରୁତି ଦେଇ ରାଘବ ବାବୁଙ୍କ ଠାରୁ ବିଦାୟ ନେଲେ ଭୃଗୁ ସାମନ୍ତ ।

ଅତିକ୍ରାନ୍ତ ସନ୍ଧ୍ୟା । ଜରାଶ୍ରମର ପ୍ରାର୍ଥନା ପରିବେଶ ନୀରବି ଯାଇଥିଲା । ଧୂପର ମିଠା ମିଠା ବାସ୍ନା କ୍ରମଶଃ ହଜି ଆସୁଥିଲା । ଲକ୍ଷ୍ମୀ ନିଜ ପଢ଼ାଟେବୁଲ୍ ସଜାଡ଼ି, ସେଦିନର ବାକିଥିବା କିଛି କାମ ସାରିବା ପାଇଁ ଟେବୁଲ୍ ପାଖରେ ବସିଲା । ଶୀଘ୍ର କାମତକ ସାରିଲେ ଯାଇ ସେ ରଘୁ ମଉସାଙ୍କ ପାଖକୁ ଯିବ - ତାଙ୍କୁ ଖୁଆଇବାକୁ । ସକାଳେ ସାଲାଇନ୍ ଚାଲିଥିଲା । ରାତିରେ କେବଳ ଜଗିବ । ଅବସ୍ଥାରେ ଉନ୍ନତି ଦେଖାନଗଲେ

ବି ସ୍ଥିର ହୋଇ ରହିଛି । ଲକ୍ଷ୍ମୀ ପଢ଼ାପଢ଼ି କରେ ଅନେକ ରାତି ପର୍ଯ୍ୟନ୍ତ - ମଝିରେ ମଝିରେ ଉଠି ରଘୁ ମଉସାଙ୍କୁ ଔଷଧ ଓ ପାଣି ଦିଏ ।

ଠିକ୍ ସେତିକିବେଳେ ଦୁଆର ଠୁକ୍ ଠୁକ୍ କଲା କିଏ । ଚାହିଁ ଦେଖେତ ସୁଲତା ମାଉସୀ ଠିଆ ହୋଇଛି । କିଛି ଖବର ନେଇ ଆସିଛି ନିଶ୍ଚୟ । ନହେଲେ ସେ ତ ଏବେ ରୋଷେଇଶାଳରେ ବୋଉକୁ ସାହାଯ୍ୟ କରିବା କଥା । "କ'ଣ ହେଲା କି ମାଉସୀ ?" ଲକ୍ଷ୍ମୀ ମୁହଁ ନ ଟେକି ପଚାରିଲା । ରାଘବବାବୁଙ୍କ ସହିତ ଅଭୟା ମା' ଆସିଛନ୍ତି, ଖୋଜୁଛନ୍ତି ତୋତେ । "ତାଙ୍କୁ ଡ୍ରଇଂରୁମ୍ ଭିତରେ କି ହଲ୍‌ରେ ବସେଇଲୁନି, ଆଉ କିଏ ନାହାନ୍ତି ପାଖରେ ? ବୋଉ ?

"ନା, ହେମ ଅପା ରୋଷେଇରେ ଲାଗିଛନ୍ତି । ତୁ ଆ'ସେ ଶୀଘ୍ର" । "ଯାଉଛି ପରା, ତମେ ଦି' କପ୍ ଚା' କରିଦିଅ ହେଲା ?" ସୁଲତା ନ ଯାଇ ଠିଆ ହୋଇରହିଲା, ଯେମିତି କିଛି କହିବ । କ'ଣ ହେଲା ଯେ, ମୁଁ ଉଠିଲି ତମେ ଯାଅ । 'ଏଇ ଗଲି... ।' ନାହିଁ ମୁଁ କହୁଥିଲି, ଦି'କପ୍ ଚା, ନା ତିନି କପ୍ କରିବି, ତିନିକପ୍ ବସଉଛି କହିଲା ସୁଲତା । "କାହିଁକି ଆଉ କିଏ ଖାଇବ କି ? ମୁଁ ତ ଖାଇବିନି, କହି ନିଜେ ଟେବୁଲ୍ ଛାଡ଼ି ଉଠିଲା ଲକ୍ଷ୍ମୀ ।"

ସାଂଗରେ ତାଙ୍କର ଆଉ ଜଣେ ନୂଆ ଲୋକ ଆସିଛନ୍ତି, ମୁଁ କେବେ ତାଙ୍କୁ ଦେଖିନି ଆଗରୁ ।

କିଏ ? ବିସ୍ମୟ ପ୍ରକାଶ କରି ପ୍ରଶ୍ନ କଲା, ଏତେବେଳକୁ ସାର୍‌ଙ୍କ ସହିତ କିଏ ଆଉ ଆସିପାରେ ? ତମେ ଚା' ଆଣ, ମୁଁ ଦେଖୁଛି ଲକ୍ଷ୍ମୀ ତରତର ହୋଇ ତଳକୁ ଓହ୍ଲେଇବାକୁ ଯାଉଛି, ଦେଖିଲା ସାର୍, ଗୁରୁମା ଆସୁଛନ୍ତି ଉପରକୁ । ପ୍ରଣାମ ଜଣେଇ ଚାହିଁଲା ପଛରେ· ଆଉ ଜଣେ । ସିଡ଼ିର ଆଲୁଅଟା ଲାଗି ନଥିଲା..... ଛାଇ ଆଲୁଅ ଭିତରେ ଚିହ୍ନି ହେଉନଥିଲା । ନିଜେ ସୁଇଚ୍ ଟିପିଲା..... ଆଶ୍ଚର୍ଯ୍ୟ ! ସେ ସ୍ୱପ୍ନ ଦେଖୁନି ତ ! ଚମକି ଉଠିଲା ଲକ୍ଷ୍ମୀ । ଧୀମେଇ ଗଲା ତା' ଉଲ୍ଲାସପଣ, ପାଦର ଗତି ମନ୍ଥର ହେଇଗଲା, ସେ ଠିଆ ହେଇପଡ଼ିଲା..... । ଯିମିତି ଶ୍ୱାସରୁଦ୍ଧ ହେଇଯିବ ସେ, ହେ ଭଗବାନ୍ ! ଇଏ ତ ସେଇ ଭଦ୍ରଲୋକ ! ସେଇ ଆଖି ସେଇ ଚାହାଁଣୀ । ଇଏ କୁଆଡ଼େ ଆସିଲେ, କାହିଁକି ? ଅପ୍ରସ୍ତୁତ ଭାବେ ଝାଳେଇ ଯାଉ ଯାଉ ପ୍ରଣାମଟେ କରି ପକେଇଲା ଓ ମନେ ମନେ କେତେକଣ ଭାବି ପକେଇଲା ବି । ସ୍ୱପ୍ନ କ'ଣ କେବେ ପାଦରେ ଚାଲି ଚାଲି ଆସେ ? ସେ ପ୍ରତି ନମସ୍କାର ଜଣେଇଲେ । ଅବଶ୍ୟ ଭଦ୍ରଲୋକଙ୍କ ଓଠରେ ମୃଦୁ ହସ ଲାଗି ରହିଥିଲା । ଲକ୍ଷ୍ମୀ କଣ କରିବ ନ କରିବ ଭାବି ପାରୁନଥିଲା କେବଳ ମେସିନ୍ ଭଳି ଡ୍ରଇଂରୁମ୍‌କୁ ନେଇଗଲା ସମସ୍ତଙ୍କୁ ।

ଅଭୟା ତା' ଚିବୁକରେ ହାତଦେଇ ଆଦର କରୁ କରୁ ପ୍ରଶ୍ନ କଲେ ପଚୁଥିଲୁ ମା', ନା ରଘୁ ମଉସାଙ୍କ ସେବାରେ ବ୍ୟସ୍ତ ଥିଲୁ ? 'ନାଇଁ, ମଉସାଙ୍କୁ ଘଣ୍ଟାଏ ପରେ ଫିଡ଼ିଂ କରିବି । ନିଜ କାମ କିଛି ବାକି ପଡ଼ିଥିଲା, ତାକୁ ହିଁ ସାରୁଥିଲି । ବସନ୍ତୁ ଆପଣମାନେ.... କହି ଚୁପ୍‌ଚାପ୍ ଠିଆ ହେଲା । କ'ଣ କହିବ ଠିକ୍ କରିପାରୁନଥିଲା ପ୍ରକୃତରେ ।

"ଠିଆ ହେଲୁ କାହିଁକି, ବସ । ରାଘବ ସାର୍ କହିଲେ, ଏଥର ମୁଁ ତୋ ସହିତ ପରିଚୟ କରେଇଦିଏ ଆମ ଅତିଥିଙ୍କ ସହିତ । ଅତିଥିଙ୍କ ଆଡ଼କୁ ଚାହିଁ କହିଲେ, ଇଏ ହେଉଛନ୍ତି ଆମ ସହରର ବିଶିଷ୍ଟ ମନୋବିଜ୍ଞାନୀ ଡକ୍ଟର ଭୃଗୁ ସାମନ୍ତ, ତୁ ଜାଣିଥିବୁ ହୁଏତ । ନୂଆ ଆସିଛନ୍ତି । ଟମର କୋଚିଂ ସେଣ୍ଟରକୁ ବି ଆସନ୍ତି ଗେଷ୍ଟ ଲେକ୍‌ଚର୍ ଦେବା ପାଇଁ । ଆଉ ଇଏ ହେଲା ଲକ୍ଷ୍ମୀ, ମୋରି ହାତରେ ଗଢ଼ି ହୋଇଛି । ମୋ ଝିଅ ଭଳି । ତାର ଅବଶ୍ୟ ଆଉ ଗୋଟିଏ ପରିଚୟ ଅଛି - ସେ ଏଇ ଆଶ୍ରମର ପରିଚାଳନାରେ ବହୁ ଭାବରେ ଜଡ଼ିତ । ତତ୍ତ୍ୱାବଧାରିକା, ଅନେକ ଦାୟିତ୍ୱ ତା' ଉପରେ । ଏଇ ଜରାଶ୍ରମର 'ପ୍ରାଣ' ସେ । ଆଉ ଅଧିକା ପରିଚୟ ମୁଁ ଦେବିନି । ଧୀରେ ଧୀରେ ଆପଣ ଚିହ୍ନିବେ ତାକୁ ।

ସଂକୁଚିତ ହେଇ ପୁଣି ଥରେ ହାତ ଯୋଡ଼ିଲା ଲକ୍ଷ୍ମୀ । କୋଉଠି ଯିମିତି ଜଳତରଙ୍ଗ ବାଜି ଉଠିଲା ଟୁଂ ଟାଂ ହେଇ ତା' ଭିତରେ ।

ଆଉ ଡକ୍ଟର ସାମନ୍ତ ଆମୋଦିତ ହେଉଥିଲେ, ସମ୍ଭ୍ରମ ମାଳତୀର ମିଠା ମିଠା ମହକରେ । ଉଲ୍ଲସି ଉଠୁଥିଲା ଚେତନା । କଥା ବଦଳେଇ ରାଘବସାର୍ ପଚାରିଲେ ମଉସାଙ୍କ ଅବସ୍ଥା ଆଜି କିମିତି ଅଛି ? ଶୁଣିଲି ତାଙ୍କ ସାନପୁଅ ପାଖରୁ କିଛି ଖବର ଆସିଛି - କ'ଣ କହିଲେ ସେ ?

ସୁଲତା ଚା' ନେଇ ଆସିଲା । ଟ୍ରେରୁ ନେଇଁ ନିଜେ ଲକ୍ଷ୍ମୀ ଚା' କପ୍ ବଢ଼େଇଦେଲା ସମସ୍ତଙ୍କ ହାତରେ । ଏବଂ ସକାଳେ ପାଉଥିବା ଖବରକୁ ସଂକ୍ଷିପ୍ତରେ ସୂଚନା ଦେଇ କହିଲା, ଶିବାଶିଷ ଇଣ୍ଡିଆ ବାହାରକୁ ଯାଇଥିବା ହେତୁ ତାଙ୍କୁ ପାଇବା ସମ୍ଭବ ନୁହେଁ, ବରଂ ବଡ଼ପୁଅ ଦେବାଶିଷଙ୍କ ସହିତ ସଂପର୍କ ରଖିବା ଉଚିତ୍ ହେବ । ସେ ଏ ସଂପର୍କରେ ଉଚିତ୍ ଦିଗ୍‌ଦର୍ଶନ ଦେଇପାରିବେ ବୋଲି - ତାଙ୍କ ସ୍ତ୍ରୀ ମଧୁମିତା କହିଛନ୍ତି ।"

ଇତ୍ୟବସରରେ ଅଭୟା ଉଠିଗଲେ ଭିତରକୁ । ଅନ୍ତେବାସିନୀଙ୍କ ସହିତ କିଛି ସମୟ ଆଳାପ କରିବାକୁ । ମଝିରେ ମଝିରେ ସେ ଆସନ୍ତି ସେମାନଙ୍କ ସହିତ ବେଶ୍ ଅନ୍ତରଂଗପଣ ଆଦାନ ପ୍ରଦାନ ହୁଏ । ହେମଲତା କେଶବା ସହିତ ଟିକିଏ ଦୁଃଖସୁଖ ହେଇ ଫେରିଯା'ନ୍ତି ।

ରାଘବ ବାବୁ ବି ଡା. ସାମନ୍ତଙ୍କୁ ନେଇ ରଘୁମଉସାଙ୍କୁ ଦେଖିବା ପାଇଁ ବାହାରିଲେ । ଲକ୍ଷ୍ମୀ ଗଲା ତାଙ୍କ ସହିତ । ଡାକ୍ତରୀ ରିପୋର୍ଟ୍ ସବୁ ବଢ଼େଇଦେଲା ସାର୍‌ଙ୍କ ହାତକୁ । ଦୁହେଁ ଦେଖିଲେ ଅବସ୍ଥା ସଂକଟାପନ୍ନ । କେତେବେଳେ ବି କିଛି ଘଟିପାରେ । ଏ କଥା ତାଙ୍କର ଆତ୍ମୀୟ ସ୍ୱଜନଙ୍କୁ ଜଣେଇ ଦେବା ଉଚିତ୍ ହେବ- ଡା. ସାମନ୍ତ କହିଲେ । ନହେଲେ ପଛରେ ଅନୁତାପ କରିବାକୁ ପଡ଼ିବ ।"

କଥାବାର୍ତ୍ତା କରୁ କରୁ ରାଘବବାବୁ ଡକ୍ଟର ସାମନ୍ତଙ୍କ ଆଶ୍ରମ ଭିତରକୁ ଅନ୍ତେବାସୀଙ୍କ ସହିତ ପରିଚୟ କରେଇ ଦେବା ଉଦ୍ଦେଶ୍ୟରେ ନେଇଗଲେ, କହିଲେ "ଆମ ଜରାଶ୍ରମର ବ୍ୟବସ୍ଥା ଦେଖିବା ସହିତ, ଆପଣଙ୍କଠାରୁ କିଛି ପରାମର୍ଶ ଏବଂ ମନ୍ତବ୍ୟ ମଧ୍ୟ ଆଶା କିରବି ଡା. ସାମନ୍ତ । ବୟସ୍କ ମଣିଷଙ୍କ ପାଇଁ ଆମେ ଉପଯୁକ୍ତ ପରିବେଶ ସୃଷ୍ଟି କରିପାରିଛୁ କି ନାହିଁ, ଆମେ ତ ଜାଣିପାରୁନୁ ।

ଠିକ୍ ଅଛି ବ୍ୟସ୍ତ ହେବାର କିଛି ନାହିଁ । ଆମ ନିଜ ଶକ୍ତି ଭିତରେ ଯେତିକି ସମ୍ଭବ ସେତିକି ତ କରିବା । ତେବେ ସେମାନେ ସ୍ନେହକାଙ୍ଗାଳ, ନିଜ ଜୀବନ କାଳରେ ଗଢ଼ିଥିବା ଏକ ସୁନ୍ଦର ସମୃଦ୍ଧ ପାରିବାରିକ ଜୀବନକୁ ଛାଡ଼ି ଆସିଛନ୍ତି କୌଣସି କାରଣରୁ ଏବଂ ଅସହାୟ, ନିଃସଙ୍ଗ ମଣୁଛନ୍ତି ନିଜକୁ - ଏଇ କ୍ଷେତ୍ରରେ ସେମାନଙ୍କୁ ପୁଷ୍ଟିକର ମାନସିକ ଖାଦ୍ୟର, ମାନେ ମୋର କହିବା କଥା ଯେ, ସ୍ନେହ, ଶ୍ରଦ୍ଧା, ସହାନୁଭୂତି ଆପଣାପଣର ପ୍ରୟୋଜନ ବେଶୀ ରାଘବ ବାବୁ । ତା' ସହିତ ସେବା ଯତ୍ନର । ଆଉ ଅଧିକା କିଛି ସେମାନେ ଚାହାଁନ୍ତିନି - କହିଲେ ଡା. ସାମନ୍ତ ।

"ସତକଥା, ଆଜିକାଲି ଏଇ ଦାୟିତ୍ୱଟିକକୁ ତୁଲେଇବାରେ ପଛଘୁଞ୍ଚା ଦେଉଛି ଆଜିର ନୂଆ ପାଢ଼ି । ସେମାନେ ପଇସା ଖର୍ଚ୍ଚ କରିବା ପାଇଁ ପଛେଇବେନି ଅଥଚ ସେବା, ଯତ୍ନ, ଶ୍ରଦ୍ଧା ଟିକିଏ ଦେବା ପାଇଁ ସେମାନଙ୍କ ପାଖରେ ମନ ନାହିଁ କି ସମୟ ନାହିଁ - କି ବିଚିତ୍ର ମାନସିକତା ସତରେ । "ସଂପର୍କର ମର୍ଯ୍ୟାଦା ଭୁଲିଯାଉଛନ୍ତି ପିଲାଏ ଭାବିଲେ ଦୁଃଖ ଲାଗୁଛି ବି, ରାଘବ ବାବୁ କହିଲେ । "ନିଶ୍ଚୟ ଆମ ଶିକ୍ଷାରେ, କୋଉଠି ଭୁଲ୍ ରହିଯାଉଛି" । କଥା ମଝିରେ ଅଭୟା କଥା, ଯୋଡ଼ିଲେ ।

କଥାବାର୍ତ୍ତା କରୁ କରୁ ଦୁହେଁ ଅନ୍ତେବାସୀଙ୍କ ବିଶ୍ରାମ କକ୍ଷ ଭିତରକୁ ଯାଇ ସେମାନଙ୍କ ସହିତ ପରିଚୟ କରେଇ ଦେଇ ରାଘବ ବାବୁ କହିଲେ, 'ଏଣିକି ଡା. ସାମନ୍ତ ନିୟମିତ ଆଶ୍ରମ ଭିଜିଟ୍ କରିବେ । ଆପଣମାନଙ୍କ ସହିତ ଆଳାପ ଆଲୋଚନା ମଧ୍ୟ କରିବେ ସୁବିଧା ସୁଯୋଗ ଦେଖି । ଆଜି ତ ସମୟ ହେଇଯାଇଛି, ଆପଣମାନେ ବିଶ୍ରାମ ନିଅନ୍ତୁ ।

ପୁଣି ଦେଖାହେବ ଶୁଭରାତ୍ରି ଜଣେଇ ବିଦାୟ ଚାହିଁଲେ ଡଃ ସାମନ୍ତ ଅନ୍ତେବାସୀଙ୍କ ଠୁ । ଅନ୍ତେବାସୀଙ୍କ ଭିତରେ ଉତ୍ସାହ ଖେଳିଗଲା । ସେମାନେ ନିଜ ନିଃସଙ୍ଗତାକୁ

ଅନ୍ୟମାନଙ୍କ ସହିତ ବାଣ୍ଟି ଦେଇ କିଛିଟା ହାଲୁକା ମନେ କରନ୍ତି । ଏଇ ସ୍ଥଳେ ତା. ସାମନ୍ତଙ୍କ ଭଳି ଜଣେ ବୁଦ୍ଧିଜୀବୀଙ୍କୁ ନିଜ ଭିତରେ, ହେଉପଛେ କେବେ କେମିତି, ପାଇବାର ପ୍ରତିଶ୍ରୁତିରେ ଉତ୍ସାହିତ ହେବା ସ୍ୱାଭାବିକ ।

ଅତିଥିଙ୍କୁ ନେଇ ଅଭୟା ଓ ରାଘବବାବୁ ଓହ୍ଲେଇଗଲେ ତଳକୁ । ଲକ୍ଷ୍ମୀ ଏତେ ପର୍ଯ୍ୟନ୍ତ ସାଂଗରେ ଥିଲା କର୍ତ୍ତବ୍ୟ ଦୃଷ୍ଟିରୁ । ଏବଂ ରାସ୍ତା ପର୍ଯ୍ୟନ୍ତ ଯାଇ ବିଦାୟ ଦେଇ ଆସିଲାବେଳକୁ ସେ ଝାଳରେ ଓଦା ହେଇଯାଇଥିଲା ଗୋଟାପଣେ । ଆଉ ତା'ମନ ? ମନ ତ ବର୍ଷାରେ ଭିଜୁଥିଲା ହିଁ । ତା' ସହିତ ଭିଜୁଥିଲା ତା' ମନ, ପ୍ରାଣ, ଚେତନା ସବୁକିଛି । ସେଇ ରାତିରେ ସେ କାହା ସହିତ ବିଶେଷ କିଛି କଥାବାର୍ତ୍ତା କରିନଥିଲା - କାରଣ ସେ ଚାହୁଁନଥିଲା ବର୍ଷାଭିଜା ଆମେଜ୍‌ଟା ନଷ୍ଟ ହୋଇଯାଉ ଏମିତି ଆବୁରୁ ଜାବୁରୁ କଥାରେ ।

ତା' ପାଇଁ ତ ଏଇ ବର୍ଷା ନୂଆ, ବର୍ଷାଭିଜା ଅନୁଭବ ବି ନୂଆ । ଏଇ ଏକାନ୍ତ ଅନୁଭବ ଟିକକ ସ୍ମୃତି ହୋଇ ଥାଉ ତା' ପାଖରେ ।

ଖାଇବାକୁ ଦେଲାବେଳେ ହେମକୁ କେମିତି ଅସ୍ୱାଭାବିକ ଲାଗିଲା ଝିଅର ଗମ୍ଭୀରପଣ । କଣ ହୋଇଛି କି ମା' ତୋର ? ପଚାରିଦେଲା ବି । ରଘୁ ମଉସାଙ୍କ ପାଖରେ ତ ଦିନରାତି ବସିଛୁ ସପ୍ତାହେ ହେଲା । କ'ଣ ଖାଇଛୁ କେତେବେଳେ ଶୋଉଛୁ କିଛି ଠିକଣା ନାହିଁ, ବାପା ବି ବ୍ୟସ୍ତ ହେଉଥିଲେ ତୋ ପାଇଁ । ଆଜି ମଉସା ପାଖରେ ମୁଁ ଆଉ ସୁଲତା ମାଉସୀ ଶୋଇବୁ, ତୁ ରାତିକ ବିଶ୍ରାମ ନେଇ ଯା', କ'ଣ କହୁଛୁ ? ହେମ ଝିଅ ଦେହ ମୁହଁରେ ହାତ ବୁଲେଇ କହିଲା । ଲକ୍ଷ୍ମୀ ହସିଦେଇ ଉତ୍ତର ଦେଲା, "ତୁ ଖାଲି ବ୍ୟସ୍ତ ହେଉଛୁ ମୋ ପାଇଁ । ପଢ଼ିଲାବେଳେ କ'ଣ ମୁଁ ରାତି ଅନିଦ୍ରା ହୁଏନି ? ପଢ଼ା ଥିଲେ ମୋତେ ନିଦ ଆସେନା ତୁ ଜାଣିଛୁ । ତା' ଛଡ଼ା ମୁଁ ଆଉ କ'ଣ ଛୋଟପିଲା ହୋଇଛି, ବଡ଼ ହୋଇଗଲିଣି । କହିସାରି ଖାଇବାରେ ମନଦେଲା । ବରଂ ତୁ ବାପାଙ୍କୁ ଦେଖ୍, ସେ ବି ଅସୁସ୍ଥ ।" ହେମ ସବୁ ଶୁଣିଲା, ମନେମନେ ଭାବିଲା, ସତରେ ଲକ୍ଷ୍ମୀ ଆଉ ପିଲା ହେଇ ନାହିଁ । କିଶୋରୀପଣ ବି ଗଲାଣି । ବଡ଼ ହେଲାଣି ଆଉ ସେ ତାର ଏଇ ବଢ଼ିଲା ଝିଅର ମନକଥା ନ ଭାବି, ଶରୀର ପାଇଁ ବ୍ୟସ୍ତ ହେଉଛି - ହସିଦେଲା ହେମ ମନକୁ ମନ ଏକଥା ଭାବୁ ଭାବୁ ।

ଲକ୍ଷ୍ମୀ ଆଖିରେ ପଡ଼ିଗଲା ସେତକ, କାହିଁକି ହସିଲୁ ବୋଉ ? "ହସିଲି ଏଇଥି ପାଇଁ ଯେ, ଝିଅ ମୋର କେବେ ବଡ଼ ହୋଇଗଲାଣି ସତରେ ମୋର ହୋସ୍ ନଥିଲା, କହିଲା ହେମ ଝିଅ ମୁହଁକୁ ଚାହିଁ । "ହଉ ତୁ ଗଲୁ ବୋଉ, ହରଲିକ୍ସ ନେଇ ଆସିବୁ, ମଉସାଙ୍କୁ ଖୁଆଇବି । ଡେରି ହେଇଗଲାଣି । ମୋର ଆହୁରି ଅନେକ କାମ ବାକି

ରହିଛି ସାରିବାକୁ । ଲକ୍ଷ୍ମୀ ଉଠିଲା । ସତରେ ସେ କାର୍ଯ୍ୟବ୍ୟସ୍ତ ଥିଲା ନା, କାମର ବାହାନା ନେଇ ନିଜ ମନ ସହିତ କଥା କହୁଥିଲା, ବାହାରକୁ ତ ଜଣା ପଡୁ ନଥିଲା । ତେବେ ନିରେଖି ତା' ମୁହଁକୁ ଦେଖିଲେ, ଯେ କେହି ଅନୁମାନ ଲଗେଇ ପାରିବ ଯେ, ତା' ଗୋରା ଟକଟକ ମୁହଁରେ ମେଞ୍ଚାଏ ଲାଜର ଗୋଲାପୀ ଛିଟା କିଏ ଯେମିତି ଛାଟି ଦେଇଥିଲା । ସେ ନିଜେ ଗୋଟାପଣେ ଫଗୁଲ ଫଗୁଣ ପାଲଟି ଯାଇଥିଲା ଓ ରହି ରହି କୋଇଲିଟିଏ କୁହୁ ତାନ ଦେଇ ଉଡ଼ିଗଲା ତା' ମନର ସବୁଜ ବନାନୀ ଗହଳରେ । ନିଜକୁ କେମିତି ଅପରିଚିତ ମନେହେଲା । ଅସଂଖ୍ୟ ପ୍ରଶ୍ନର ଜାଲରେ ନିଜେ ଛନ୍ଦି ହୋଇଯାଉଥିଲା ଲକ୍ଷ୍ମୀ । ସେ କିଛି ଭୁଲ୍ କରି ବସୁନି ତ ? ଆକାଶ କୁସୁମ ତୋଳିବାକୁ ସେ ହାତ ବଢ଼େଇ ଦେଇ ଠିକ୍ କରୁନି । କିଏ ଦେବ ତା' ପ୍ରଶ୍ନର ଉତ୍ତର, ଅଂଧାର ? ନା ସମୟ ?

ରଘୁ ମଉସାଙ୍କୁ ଫିଡ଼ିଂ କଲାବେଳେ, ବୋଉ କିଛି ପଚାରୁଥିଲା ତାକୁ, ଭଦ୍ରଲୋକଙ୍କ ସଂପର୍କରେ । ସେ କିନ୍ତୁ ସାଧାରଣ ଉତ୍ତରଟିଏ ହଁ, ନାହିଁ ରେ ଦେଇ, ଆଡ଼େଇ ଦେଲା କଥାକୁ । କଣ ବି କହିଥାନ୍ତା ?

ଘରକୁ ଫେରିବା ବାଟରେ ଡା. ସାମନ୍ତ କଥା ପ୍ରସଙ୍ଗରେ ଲକ୍ଷ୍ମୀ ସଂପର୍କରେ କିଛି ଜାଣିବାକୁ ଚାହିଁଲେ ରାଘବ ବାବୁଙ୍କ ପାଖରୁ । ତାଙ୍କର କହିବା କଥା ହେଲା, ଜରାନିବାସ ଭଳି ଅନୁଷ୍ଠାନରେ ଏତେ୍ କମ୍ ବୟସର ଝିଅଟିକୁ ଏତେବେଡ଼ ଦାୟିତ୍ୱ ଦିଆଗଲା କିମିତି, ମଧ୍ୟବୟସ୍କା ମହିଳା ବୃଦ୍ଧବୃଦ୍ଧାଙ୍କ ସହିତ ଖାପଖାଇ ପାରିବେ । ସେମାନଙ୍କ ବିଚାର ସହିତ ତାଳମେଳ ପ୍ରାୟ ସହଜ ହୁଏ - ଏଠି କିଛି ଅସୁବିଧା ହେଉନି ? ରାଘବ ବାବୁ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ଅଭୟା କହିଲେ; ଠିକ୍ କଥା ଯେ, ହେଲେ ଲକ୍ଷ୍ମୀ ବୟସରେ ସିନା ଛୋଟ, କିନ୍ତୁ ଅଭିଜ୍ଞତାରେ ପରିପକ୍ୱ । ଜୀବନ ଓ ଜୀବନ ସଂଘର୍ଷକୁ କେବଳ ଦେଖିନି, ଅଙ୍ଗେ ନିଭେଇଛି । ଝୁମ୍ପୁଡ଼ି ଘର ଭିତରେ ଜନ୍ମ ନେଇଥିବା ରୂପା ଜହ୍ନଟିଏ । ସମସ୍ତଙ୍କ ମନ ଅଗଣାକୁ ଶୀତଳ ଜହ୍ନ-ଆଲୁଅ ବିଛି ଆଲୋକିତ କଲା ଭଳି, ବିମୋହିତ କଲା ଭଳି ମନଟିଏ । ଅସାଧାରଣ ।

ଲକ୍ଷ୍ମୀର ପ୍ରଶଂସା କରିବାକୁ ଯାଇ ଅଭୟା ପ୍ରଗଳ୍ଭ ହେବ ପଡୁଥିଲେ । ଆଉ ଡକ୍ଟର ସାମନ୍ତ ରୋମାଂଚିତ ହୋଇ ଉଠୁଥିଲେ ସେଇ ଜ୍ୟୋସ୍ନାର ଅମାୟ ସ୍ପର୍ଶରେ ।

ବାସ୍ତବିକ ତା' ଅଭିବ୍ୟକ୍ତିରେ କୌଣସି କୃତ୍ରିମତା ନାହିଁ । ସିଏ ଯାହା ସିଏ ତାହା । ସମାଜର ତଳଶ୍ରେଣୀର ବୋଲି ତାର ଗ୍ଲାନି ନାହିଁ, ଊଣାପଣ ନାହିଁ । ତା' ବାପା ମାଁ ବି ସେମିତି ଜୀବନ ସଂଘର୍ଷର ଚଲାପଥରେ ଯେତେବେଳେ ଯାହା ଆସିଛି, ତାକୁ

ସାମ୍ନା କରିଛନ୍ତି । କିଛି ଅଭିଯୋଗ ନାହିଁ କାହା ପାଇଁ ଅଥଚ ହାର୍ ମାନି ନାହାନ୍ତି ପରିସ୍ଥିତି ଆଗରେ । ଅଟକି ଯାଇନାହାନ୍ତି କି ପଛକୁ ଫେରି ଚାହିଁ ନାହାନ୍ତି । ପରିସ୍ଥିତି, ପରିବେଶ, ଅଥବା ସମାଜର ଶକ୍ତିଶାଳୀ ତଥାକଥିତ ବଡ଼ଲୋକଙ୍କ ସହିତ ଲଢ଼ିବାର ସାହସ କି ସମ୍ବଳ ନାହିଁ ଏଇ ବର୍ଗର ମଣିଷ ମାନଙ୍କ ପାଖରେ । ଅଥଚ ଏମାନେ ଆମ ସମାଜର ଗୋଟାଏ ବଡ଼ ଅଂଶ - ଯାହାଙ୍କୁ ଆମ ଥିଲାବାଲାଏ କେବେ ଖାତିରକୁ ଆଣନ୍ତିନି, ଆଡ଼ ଆଖିରେ ବି ଚାହାଁନ୍ତିନି - ତାରି ଭିତରୁ ଯେ ଲକ୍ଷ୍ମୀ ଭଳି ବଡ଼ମାପର ପୁଅଝିଅ ଜନ୍ମ ହୋଇପାରନ୍ତି - ଭାବିଲେ ବିସ୍ମିତ ହେବାକୁ ହୁଏ । ଟିକିଏ ସାହାଯ୍ୟ, ଚିମୁଟାଏ ସହାନୁଭୂତି - ପଦୁଟିଏ ଆହାପଣ ଅଥବା, ମୁଠିଏ ଭାତ, ଚାଖଣ୍ଡେ ଲୁଗା, ମୁଣ୍ଡ ଉପରେ ଆଶ୍ରା (ଛାତ) ଟିକେ ପାଇଲେ ଏମାନଙ୍କ ଜୀବନ କାହାଣୀ ଆଉ ପ୍ରକାରେ ଲେଖା ହୋଇପାରନ୍ତା ଡକ୍ଟର ସାମନ୍ତ, ସମାଜର ପ୍ରତିକୂଳ ପରିସ୍ଥିତି ଭିତରେ ସେ ବଞ୍ଚି ଶିଖିଛି । ରାଘବ ବାବୁ କହିଲା ବେଳେ ଭାବପ୍ରବଣ ହୋଇ ପଡୁଥିଲେ କ୍ରମଶଃ ।

ପାଠପଢ଼ି ମଣିଷ ହେବାର ଅଦମ୍ୟ ଇଚ୍ଛାଶକ୍ତି ଓ ନିଜ ସାଧନା ବଳରେ ଆଜି ସଫଳତାର ଶୀର୍ଷ ଛୁଇଁବାକୁ ଯାଉଛି ଲକ୍ଷ୍ମୀ, ଏଥିରେ ସଂଦେହ ନାହିଁ । ଆଉ ଏଇ ସଫଳତା ପଛରେ ମୋର କି, ଆମମାନଙ୍କର କିଛିଟା ସାମାଜିକ କର୍ତ୍ତବ୍ୟ ବ୍ୟତୀତ ବିଶେଷ କିଛି ଅବଦାନ ନାହିଁ ବରଂ ଏଇ 'ସୁଧାମୟୀ ଓଲଡ଼ଏଜ୍ ହୋମ୍' ଅନେକ ସାହାଯ୍ୟ କରିଛି - କହିବାକୁ ଗଲେ ଏକ ନିଶ୍ଚିତ ଭରସା ଓ ଆତ୍ମବିଶ୍ୱାସ ଆଣିଦେଇଛି ତା' ଭିତରେ । ବୁଝିଲେ ଡକ୍ଟର ସାମନ୍ତ - ସମସ୍ତେ ମଣିଷ - ହେଲେ ଜଣେ ଜଣେ ଥା'ନ୍ତି ଯୋଉମାନଙ୍କ ସଂଘର୍ଷମୟ ଜୀବନ ତାଙ୍କୁ ଭିନ୍ନ ପରିଚୟ ଆଣି ଦେଇଥାଏ । ଗାଡ଼ି ଚାଲଉ ଚାଲଉ ଡା. ସାମନ୍ତ ରୋମାଚିଂତ ହେଉଥିଲେ ନିଜ ଭିତରେ । ତାଙ୍କ ସ୍ୱପ୍ନର ରାଜକୁମାରୀ ସତେ ଯେମିତି ବାସ୍ତବତାର ରୂପ ନେଇ ଠିଆ ହୋଇଛି ମାଟି ଉପରେ ତାଙ୍କୁ ସ୍ୱାଗତ କରିବାକୁ । ଚୁପ୍ ଚାପ୍ ଶୁଣୁଥିଲେ ଦୁହିଁଙ୍କ କଥା ।

ବସାଘର ଆସିଯାଇଥିଲା । କଥା ଲହସରେ କାହାର ମନେ ନ ଥିଲା । ଗାଡ଼ିରେ ବ୍ରେକ୍ ଦେଇ ଡା. ସାମନ୍ତ କହିଲେ, "ଯେଉଁଠି ସଂଘର୍ଷ ଅଛି, ସେଠି ସଫଳତା ଅଛି - ଏଥିରେ ସଂଦେହ ନାହିଁ । ଲକ୍ଷ୍ମୀ ହୁଏତ ସେଇ ସଫଳତାର ଜୀବନ୍ତ ଉଦାହରଣଟିଏ। ଶୁଭରାତ୍ରି ଜଣେଇ ରାଘବ ବାବୁ, ଅଭୟା ଓହ୍ଲେଇଗଲେ, ଆଉ ଦିନେ କେବେ ସୁବିଧା ଦେଖି ଆସିବା ପାଇଁ ଡଃ ସାମନ୍ତଙ୍କୁ ନିମନ୍ତ୍ରଣ ଦେଇ ।

ଘରକୁ ଫେରିଲା ପରେ ବି ଅଭୟାଙ୍କ ମନ ଭିତରୁ ଲକ୍ଷ୍ମୀର ନିଶା କଟି ନଥିଲା । ଆସିଲା ବାଟରେ ଏତେ ବେଶିମାତ୍ରାରେ ଲକ୍ଷ୍ମୀ ସଂପର୍କରେ ଆଲୋଚନା କରିଥିଲେ ଯେ

ଲକ୍ଷ୍ମୀ ତାଙ୍କ ଚିନ୍ତା ଚେତନା ଭିତରେ ପଶି ପଦ୍ମାସନ ପକେଇ ବସିଯାଇଥିଲା । ରାଘବବାବୁ ମଝିରେ ମଝିରେ କ'ଣ ସବୁ କହୁଥିଲେ, ପଚାରୁଥିଲେ, ହେଲେ ସେ ଅନ୍ୟମନସ୍କ ଭାବେ ହିଁ ଉତ୍ତର ଦେଇ ନିଜ କାମରେ ଲାଗିଥିଲେ ଓ ନିଜ ଭିତରେ କ'ଣ ସବୁ ଅନାବନା ସ୍ୱପ୍ନକୁ ରୂପ ଦେବାର ପ୍ରୟାସ କରି ଚାଲିଥିଲେ । ଲକ୍ଷ୍ମୀ ହିଁ ସଂପୂର୍ଣ୍ଣ ଭାବେ ମାଡ଼ି ବସିଥିଲା ତାଙ୍କ ଭାବନାକୁ ।

ଯେତେବେଳେ ବି ସେ ଜରାଶ୍ରମ ଆସନ୍ତି, ଫେରିଲାବେଳେ ଲକ୍ଷ୍ମୀ ହିଁ ତାଙ୍କ ଚେତନାକୁ ଆଚ୍ଛନ୍ନ କରି ରଖିଥାଏ । ଝିଅଟା ଆଜିକାଲି ଗମ୍ଭୀର ହୋଇଗଲାଣି ତ । ଯେତିକି ଯେତିକି ତା' ବୟସ ବଢୁଛି, ସେତିକିମାତ୍ରାରେ ସେ ଗମ୍ଭୀର ଓ ସଂଯତ ହେଇ ଚାଲିଛି । ମପାଚୁପା କଥା, ଅବଶ୍ୟ ସେ ପିଲାଟି ଦିନରୁ ସବୁକଥାରେ ମପାଚୁପା । ହଠାତ୍ କେବେ ମନଖୁସିରେ କହିପକେଇବନି କିଛି । କେମିତି ବି ନ ହେବ, ଖୋଲା ମୁକୁଳା ମନରେ କଥା କହିବାକୁ ତା' ପରିସ୍ଥିତି ଓ ପରିବେଶ ତ ସୁଯୋଗ ହିଁ ଦେଇନି । ପୁଣି ଏବେ ସେ ବଡ଼ ହେଇଗଲାଣି କେତେ ବଡ଼ବଡ଼ ଦାୟିତ୍ୱ ସମ୍ଭାଳୁଛି । କିଶୋରୀପଣ ନାହିଁ । ତଥାପି ଖୋଲା ସ୍ୱଭାବର । ଅନ୍ୟମାନଙ୍କ ପାଇଁ ଯେତିକି ସମ୍ମାନ, ଅସହାୟଙ୍କ ପାଇଁ ସେତିକି ଦରଦ, କାହା ଦୁଃଖ କଷ୍ଟ ସହିପାରିବନି । ସମସ୍ତେ କହନ୍ତି ସେଥିପାଇଁ, "ତା ଭଳି ଝିଅଟିଏ ଘରେ ଥିଲେ ଦୁଃଖ ରହିବନି । ଆମେ ସବୁ ଘର ଛାଡ଼ି ଆସିଥିଲେ ବି ଦୁଃଖ ଲାଗୁନି... ସବୁ ଅଭାବତକ ପୂରଣ କରିଦେଉଛି ଏକା ଲକ୍ଷ୍ମୀ ।" ଗୁଣ ଖାଲି ନୁହେଁ, ରୂପରେ ବି ଏବେ ଝଲସି ଉଠୁଛି..... ଲକ୍ଷ୍ମୀ ତ ନୁହେଁ ମହାଲକ୍ଷ୍ମୀ । ସେ ଭାରି ଭଲପା'ନ୍ତି ଲକ୍ଷ୍ମୀକୁ ତା' ସ୍ୱଭାବ ପାଇଁ । ଭାବୁ ଭାବୁ ହଠାତ୍ ଭାବନାଟା ଅଟକି ଗଲା ମଝିବାଟରେ । ଖାଲି ଅଟକି ଗଲାନି ତ ସାମ୍ନାକୁ ଆସି ବାଟଓଗାଳି ପଚାରି ଦେଲା ବି, କ'ଣ ଲୋଭ ହେଉଛି ଲକ୍ଷ୍ମୀ ପାଇଁ ?

ଚମକି ଉଠିଲେ ଅଭୟା । ସତରେ ତ ଲୋଭ ହେଉଛି ତାଙ୍କର । ଝିଅଟିଏ ନାହିଁ ବୋଲି ସବୁବେଳେ ତାଙ୍କ ମନଊଣା, ଯେମିତି ଛାତି ଭିତରେ କୋଉଠି ଶୂନ୍ୟପଣଟି ରହିଯାଇଛି ଏବେ ବି । ମନ କହୁଛି, ନେଇ ଆସନ୍ତେ ଲକ୍ଷ୍ମୀକୁ ଘରକୁ କିମିତି ହୁଅନ୍ତା ? ପ୍ରଶ୍ନ କରନ୍ତି ମନକୁ । ଉତ୍ତର ବି ଦିଅନ୍ତି ।

କିଛି ଅସୁବିଧା ହୁଅନ୍ତାନି । କଣ ଅଛି ସେଇ ବୁନିଆଦିରୁ । ଜାତି, ଗୋତ୍ର, ଆଭିଜାତ୍ୟ କିଛି ଗୋଟାଏ ବଡ଼ କଥା ନୁହେଁ । ପଦ, ପଦବୀ, ବଡ଼ ଛୋଟ, ମାନ ସମ୍ମାନ କଥା ଭାବି ବସିଲେ ଲକ୍ଷ୍ମୀ ଭଳି ଝିଅ ମିଳିବନି । ଆତ୍ମୀୟସ୍ୱଜନଙ୍କୁ ଭଲ ଲାଗିବନି ପରଂପରା ଟାଣିଥିବା ନିଷିଦ୍ଧଗାରକୁ ଡେଇଁଲେ । ସତକଥା ଯେ, ହେଲେ ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେ ଝିଅ ଆଣିବେନି ଘରକୁ ? ଆଣିବେ କି ? ନାହିଁ । ମନ ତ

କହୁଛି ନାହିଁ । ତେବେ..... ? ଏତେ ବିଚାର କାହିଁକି ? ସମୟ ଆସିଲେ, ବଳେ ସବୁ ବାଟ ଫିଟି ଫିଟି ଯିବ । ଈଶ୍ୱର ତାଙ୍କର ସବୁ ଇଚ୍ଛା ପୂରଣ କରିଛନ୍ତି - ଆଉ ଏଇ ଟିକକ..... ଆଖିବୁଜି ମନେ ମନେ ଆର୍ଯ୍ୟ ପାଖରେ ଲକ୍ଷ୍ମୀକୁ ଠିଆ କରେଇ ମନ ପୂରେଇ ଦେଖୁ ଦେଖୁ ଉଛୁଳି ଉଠେ ମନପ୍ରାଣ ଆନନ୍ଦରେ । ଆହା, ଲକ୍ଷ୍ମୀ ନାରାୟଣଙ୍କ ଯୋଡ଼ି । ଚିତ୍ରା ସହିତ ଚନ୍ଦ୍ରମା ସତେ କି ! ଭାବନ୍ତି ସମୟ ଆସୁ, ଠିକ୍ ସମୟରେ ସ୍ୱାମୀଙ୍କୁ କହିବେ ଆର୍ଯ୍ୟ କାହିଁକି ବି ମନା କରିବ । କୋଉଥିରେ ଊଣା ଲକ୍ଷ୍ମୀ ଯେ! ଅଭୟା, ନିଜ ଭାବନାକୁ ଯତ୍ନର ସହିତ କୋଳପ ଦେଇ ସାଇତି ରଖନ୍ତି ମନ ସିନ୍ଦୂକରେ । ଥାଉ, ସମୟ ଆସୁ । ଭାବନାର ଆମେଜ ଭିତରେ ବିଛଣା ଧରୁ ଧରୁ ନିଦ ମାଡ଼ିଆସେ ଗୋଟାଏ ନିଶ୍ଚିତ ସମ୍ଭାବନାର ଆଶ୍ୱସ୍ତି ମଧ୍ୟ ତାଙ୍କ ମନ ପ୍ରାଣକୁ ଆଉଁଶି ଦିଏ ।

## ।। ୩ ।।

'ବାପାଙ୍କ ଅବସ୍ଥା ସଂକଟାପନ୍ନ - କେତେବେଳେ ବି କିଛି ଘଟିପାରେ ମ୍ୟାସେଜ୍‌ଟି ତାଙ୍କ ଉଦ୍ଦେଶ୍ୟରେ ସାଇତି ରଖିଥିଲା 'ଭଏସ୍‌ମେଲ୍' । ଖବରଟି ଶୁଣୁ ଶୁଣୁ ବ୍ୟସ୍ତ ହୋଇପଡ଼ିଲେ ଦେବାଶିଷ - ରାଘବ ବାବୁଙ୍କ ବଡ଼ପୁଅ । ସମୟ ଓ ତାରିଖରୁ ଜାଣିଲେ ମ୍ୟାସେଜ୍‌ଟି ଦିନକ ଆଗରୁ ଆସିଛି - 'ସୁଧାମୟୀ ଓଲଡ୍ ଏଜ୍ ହୋମ୍'ରୁ । ବାପାଙ୍କ ଦେହ ଭଲ ନଥିବା ଖବର ସେ ସପ୍ତାହେ ତଳେ ପାଇଥିଲେ ଯଦିଓ, ବିଶେଷ କାର୍ଯ୍ୟବ୍ୟସ୍ତତା ଯୋଗୁଁ ଯୋଗାଯୋଗ ରଖିପାରିନଥିଲେ ।

ଆଉ ଡେରି କରିବା ଉଚିତ୍ ନୁହେଁ ଭାବି କୌଣସି ମତେ ଫ୍ଲାଇଟ୍ ଧରିଥିଲେ ଓଡ଼ିଶା ଅଭିମୁଖେ । ତଥାପି ଦୁଇଦିନ ଡେରି ହୋଇ ଯାଇଥିଲା ଜରାଶ୍ରମରେ ପହଞ୍ଚିଲା ବେଳକୁ । ଏଣେ ଆଶ୍ରମର ଅନ୍ତେବାସୀ ବ୍ୟସ୍ତ ହୋଇ ପଡୁଥିଲେ । ରଘୁ ମଉସାଙ୍କ ସ୍ୱାସ୍ଥ୍ୟାବସ୍ଥା ଅବନ୍ନତି ଆଡ଼କୁ ଗତି କରୁଥିଲା । ଦିନରାତି ତାଙ୍କ ପାଖରେ ଜଗି ବସିଥିଲେ ରାଘବ ବାବୁ, 'ଅଲେଖ ଓ ଲକ୍ଷ୍ମୀ ପାଳିକରି । ଗୁରୁ ଗମ୍ଭୀର ପରିବେଶ । ପ୍ରିୟ ମଣିଷକୁ ହରେଇବାର ଭୟ ସଭିଙ୍କୁ ଆଚ୍ଛନ୍ନ କରି ରଖିଥିଲା ସକାଳର କୁହୁଡ଼ି ଭଳି । ମଣିଷ ଯେ ଜନ୍ମ ସହିତ ମୃତ୍ୟୁକୁ ନେଇ ଆସିଛି ସାଂଗରେ, ଏକଥା ଜାଣି ମଧ୍ୟ ସେ କାହିଁକି ଏତେ କାତର ହୁଏ କେଜାଣି । ବର୍ତ୍ତମାନର ଭୋଗ କରୁଥିବା ଜୀବନଟା ଯେତେ ଦୁଃଖମୟ ହେଲେ ବି, ମରଣକୁ ସହଜରେ ସେ ବରଣ କରିପାରେନା । ଭୋଗି ଆସିଥିବା ସମଗ୍ର ଜୀବନର ଅଜସ୍ର ଅଭିଜ୍ଞତା, ଘାତ ପ୍ରତିଘାତ, ମାନ ଅପମାନ, ନିନ୍ଦା ଅପନିନ୍ଦା ଅବହେଳା

ଦୁଃଖ ଯନ୍ତ୍ରଣା ସତ୍ତ୍ୱେ, ଜୀବନଟା ଲୋଭନୀୟ ଲାଗେ । ବୋଧହୁଏ ସେଇଥିପାଇଁ ମୃତ୍ୟୁଚେତନା ଆବୋରି ବସେ ମଣିଷକୁ ତା' ପରିଣତ ବୟସରେ । ତା' ଭିତରେ ଗୋଟାଏ ଅଜଣା ଆଶଙ୍କା - ସରିଯାଉଛି ତ ଜୀବନଟା, ଛାଡ଼ିଯାଉଛି ତ ମୋର ପ୍ରିୟ ଆତ୍ମୀୟସ୍ୱଜନଙ୍କୁ -ର ଭୟ । ଅଥଚ ଭାବି ବସିଲେ, ଏଇ ଆପଣା ମଣିଷମାନେ ଯେ କେହି ନିଜର ନୁହଁନ୍ତି - ସବୁ କେବଳ ଭ୍ରାନ୍ତି । ସବୁ ଜାଣିଶୁଣି ବି ମଣିଷ ମରଣର ଅମୃତ ସ୍ପର୍ଶକୁ ସହଜରେ ଗ୍ରହଣ କରିପାରେନା, ଭାବିଲେ ବିସ୍ମୟ ଲାଗେ । ରଘୁମଉସାଙ୍କର ତ ଜ୍ଞାନ ନ ଥିଲା ଏତେ କଥା ଭାବିବାକୁ । ଜୀବନ ଚାଲିଥିଲା, ହେଲେ ତାଙ୍କ ଚାରିପଟେ ଘେରି ବସିଥିବା ଶେଷ ପାହାଚର ମଣିଷମାନେ କାତର ହେଇ ପଡୁଥିଲେ, ଅସହାୟବୋଧ କରୁଥିଲେ ସମଭାବନାରେ । ସତେଯେମିତି ସମଗ୍ର ଜରାଶ୍ରମର ପରିବେଶକୁ ଏଇ ମୃତ୍ୟୁଚେତନା ଆଚ୍ଛନ୍ନ କରି ରଖିଥିଲା ।

ଖଟପାଖରେ ବସି ସୁକାନ୍ତ ଭାଗବତ ପଢୁଥିଲା । ଜୀବନର ଅସାରତା ବଖାଣୁଥିଲା ଭାଗବତ । ଏଥିରୁ ମୁକ୍ତି ପାଇଁ ପରମପଦ ଭଜିବାକୁ ନିର୍ଦ୍ଦେଶ ଦେଉଥିଲେ ଭାଗବତକାର । ରଘୁମଉସାଙ୍କ ପ୍ରାଣବାୟୁ ସରି ସରି ଆସୁଥିଲା ଯିମିତି । ଲମ୍ୱା ଲମ୍ୱା ନିଃଶ୍ୱାସ ନେଉଥିଲେ ସେ । ଡାକ୍ତର କିଛି ସମୟ ପୂର୍ବରୁ ଆସି ଅନ୍ତିମକ୍ଷଣର ସୂଚନା ଦେଇ ଯାଇଥିଲେ । ସବୁ ବ୍ୟବସ୍ଥା କରାଯାଇଥିଲା, କେବଳ ଅପେକ୍ଷା ଥିଲା ଦେବାଶିଷଙ୍କ ପାଇଁ ।

ଦେବାଶିଷ ପହଞ୍ଚିଲେ ।

ରଘୁମଉସା ସତେଯେମିତି ପୁଅ ଆସିବାକୁ ଅପେକ୍ଷା କରିଥିଲେ । ଦିନ ସରି ଆସୁଥିଲା କ୍ରମଶଃ । ସରି ଆସିଥିଲା ରଘୁ ମଉସାଙ୍କ ଜୀବନଦୀପରୁ ତେଲ । ଦେବାଶିଷ ବାପାଙ୍କ ପାଦତଳେ ବସିଥିଲେ ହତବାକ୍ ହୋଇ । ଅନ୍ତିମ ନିଃଶ୍ୱାସ ନେବା ପୂର୍ବରୁ କିଏ ସବୁ କହିଲେ ଦେବାଶିଷଙ୍କୁ ବାପାଙ୍କ ପାଟିରେ ଟୋପାଏ ତୁଳସୀ ପାଣି ଦେବାକୁ । "ଇଏ ଆମ ବିଶ୍ୱାସ ପୁଅ, ଏଇ ଟିକକ ପାଇଁ ତ ଆମର ଅପେକ୍ଷା ।"

ଅନ୍ୟଦିନ ଅନ୍ୟ ସମୟ ହେଇଥିଲେ ଦେବାଶିଷ ହୁଏତ ତର୍କ କରିଥାନ୍ତେ, ଯୁକ୍ତି କରିଥାନ୍ତେ । କିନ୍ତୁ ସେଇ ମୁହୂର୍ତ୍ତରେ ବରିଷ୍ଠମାନଙ୍କ ଅନୁରୋଧ ରକ୍ଷା କରି ପୁଅର କର୍ତ୍ତବ୍ୟ ପାଳନ କରିଥିଲେ ।

ରଘୁମଉସା ଆଶ୍ରମର ସବୁଠୁ ବୟୋଜ୍ୟେଷ୍ଠ ନଥିଲେ ସତ, ହେଲେ ସଭିଙ୍କର ପ୍ରିୟ ଥିଲେ । ସମସ୍ତେ ତାଙ୍କୁ ଅଭିଭାବକ ବୋଲି ଭାବୁଥିଲେ । ପରାମର୍ଶ ଲୋଡୁଥିଲେ ତାଙ୍କଠୁ । ତାଙ୍କର ସବୁ ଥାଇ ବି କିଛି ନଥିଲା, ସମସ୍ତେ ଥିଲେ ବି କେହି ନଥିଲେ । କାହାକୁ ସେ ଖୋଜୁନଥିଲେ । ବିଶେଷ କରି ପତ୍ନୀଙ୍କ ଦେହାନ୍ତ ପରେ ସେ ଯେମିତି ଗୃହତ୍ୟାଗୀ ସନ୍ନ୍ୟାସୀଟିଏ, ସ୍ୱାଭିମାନୀ ମଣିଷ । ସଭିଙ୍କର ସମ୍ମାନନୀୟ ।

ଦେବାଶିଷଙ୍କ ଆଖିରୁ ଧାର ଧାର ଲୁହ ବହିଯାଉଥିଲା । ବାପାଙ୍କ ଅନ୍ତିମ ଶ୍ରଦ୍ଧାଞ୍ଜଳି ସ୍ୱରୂପ । ଅନେକ ଦିନ ପରେ ଦେବାଶିଷ କାନ୍ଦିଲେ । ବୋଉ ଚାଲିଯାଇଥିଲା ଆଗରୁ, ସେ ଦେଖିପାରି ନଥିଲେ । ଜାଣିଲେ ବି ଅନେକ ଦିନ ପରେ । ଦୁଃଖ ହେଉଥିଲା ସତ, ହେଲେ ତା'ଠୁଁ ବେଶି ଅଭିମାନ ହେଉଥିଲା ବାପାଙ୍କ ଉପରେ । ପଦେ କହିଲେନି କି, ବୋଉ ବି ଚାହିଁଲାନି ହୁଏତ । ଶେଷ ପର୍ଯ୍ୟନ୍ତ ଦୁହେଁ ତାଙ୍କୁ କ୍ଷମା କରିପାରିନାହାନ୍ତି ନିଶ୍ଚୟ । ଅପରାଧବୋଧର ଅଶ୍ରୁ ବାଧା ମାନୁନଥିଲା । ସେ କିନ୍ତୁ ଏଥର ଖବର ପାଉ ପାଉ ହିଁ ଆସିଛନ୍ତି । ଅନ୍ତତଃ ଶେଷଦର୍ଶନ କରି ଥରେ କ୍ଷମା ମାଗିନେବେ । କିନ୍ତୁ ସମ୍ଭବ ହେଲାନି । ଅଘୋର ନିଦରେ ଶୋଇଯାଇଥିଲେ ବାପା । ଥରେ ଚାହିଁଲେନି ବି ତାଙ୍କୁ ଆଖି ଖୋଲି, ଭାରି ଅଭିମାନୀ । କ'ଣ ବା ଏମିତି କଥା ଥିଲା । ନିଜ ବାପପଣର ଉଦାରତାରେ କ୍ଷମା ତ କରିପାରିଥାନ୍ତେ । ଚାରିପଦ କଟୁକ୍ତି କହିପାରିଥାନ୍ତେ । ନା, କଲେନି କିଛି । ଯିଏ ସମଗ୍ର ଜୀବନକୁ ପିଲାଙ୍କ ସୁଖ, ସ୍ୱାଚ୍ଛନ୍ଦ୍ୟ କାମନା କରି ନିଜ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଭୁଲି ଯାଉଥିଲେ, ସେଇ ବାପାବୋଉ, ଛୋଟମୋଟର ସାଧାରଣରୁ ସାଧାରଣ 'ଇଗୋ'କୁ ଆଡ଼େଇ ପାରିଲେ ନାହିଁ । ଭାବିଲେ ତାଙ୍କୁ ଆଶ୍ଚର୍ଯ୍ୟ ଲାଗେ ।

ମଣିଷ ହିଁ ତ ଭୁଲ୍ କରେ । ଭୁଲ୍ କରିବା ତାର ସ୍ୱଭାବ – ଏଇ ଛୋଟ କଥାଟା ବୁଝିପାରିଲେନି କିମିତି ଏତେ ବୁଦ୍ଧିମାନ ଓ ବିବେକୀ ହୋଇ । ସିଏ ପାରିଲେନି, ତାଙ୍କର ଏତେ ଗଭୀରକୁ ପଶିବାର ବୟସ ନଥିଲା, ସୁକନ୍ୟାର· ବି ନଥିଲା, ଯା' ବୋଲି....., ଛାତି ଭିତରୁ କୋହ ଉଠିଲା ଦେବାଶିଷଙ୍କର..... କୁହୁଳି କୁହୁଳି କାନ୍ଦି ଉଠିଲେ ସେ । ବାପାଙ୍କ ପାଦ ଧରି କ୍ଷମା ମାଗୁଥିଲେ ସତେକି । ଚଳଚ୍ଚିତ୍ର ଭଳି ଆଗପଛ ଅନେକ କଥା, ଅନେକ ସ୍ମୃତି, କେତେ ଘଟଣା ଅଘଟଣା ଭାସି ଉଠିଥିଲା ତାଙ୍କ ଆଖି ଆଗରେ ।

କେଡ଼େ ଉଷତ ମନରେ ବଡ଼ ଘରର ଝିଅ ସୁକନ୍ୟାକୁ ସୁନ୍ଦରୀ ବୋଲି ବୋହୂ କରି ଆଣିଥିଲେ । ସୁକନ୍ୟା ଶିକ୍ଷିତା, ଆଧୁନିକା ଏବଂ ମୁକ୍ତ ବିଚାରର । ପୁଣି ଗୋଟିଏ ବୋଲି ଝିଅ । ବୋଉ ସିମିତି ମରହଟ୍ଟୀ ନଥିଲା । ହେଲେ ପୁରୁଣା ମୂଲ୍ୟବୋଧ, ପୁରୁଣା ବିଚାର ଓ ପରଂପରାକୁ ସମ୍ମାନ ଦେଉଥିଲା । ସେ ଚାହୁଁଥିଲା ସୁକନ୍ୟା ଘରର ବୋହୂ ଭଳି ଚଳପ୍ରଚଳ କରୁ । ଆଉ ଚାରିଜଣ ଆତ୍ମୀୟସ୍ୱଜନଙ୍କ ଆଗରେ ତାଙ୍କର ଟେକି ହୋଇଥିବା ଟେକପଣ ଯିମିତି ତଳକୁ ନ ହୁଏ । ସମସ୍ତଙ୍କ ଆଗରେ ସେ ଯେମିତି ବୋହୂର ଗୁଣ ବଖାଣିପାରିବେ ।

ସୁକନ୍ୟା ସେକଥା ମାନିବାକୁ ଚାହିଁଲାନି । ତା' ପାଇଁ ସ୍ୱାମୀ ପତି ପରମେଶ୍ୱର ନଥିଲେ । ବନ୍ଧୁ ଭାବରେ ଗ୍ରହଣ କରି ସେ ନାଁ ଧରି ସମ୍ବୋଧନ କରୁଥିଲା । ବୋଉ

ପ୍ରତିବାଦ କଲା - ଆରମ୍ଭ ହେଲା ଭୁଲ୍ ବୁଝାମଣା । ଏମିତି ଅନେକ ଘଟଣା, ଖୁବ୍ ଛୋଟ ଅଥଚ ବଡ଼ ଆକାର ହେଇ ଦେଖାଦେଲା । ନିତିଦିନର ପ୍ରତିଟି ମୁହୂର୍ତ୍ତକୁ ଅଶାନ୍ତ, ଭାରାକ୍ରାନ୍ତ କରି ତୋଳିଲା - ଇଗୋ କ୍ଲାସ୍ କଲା । ଜୀବନର ସେଇ ପ୍ରଥମ ଦିନଗୁଡ଼ିକ ବଡ଼ ଅସହ୍ୟ ହୋଇ ଉଠିଥିଲା ତାଙ୍କ ପାଇଁ । ସେ ତ ଆଶଂକିତ ହୋଇ ଉଠୁଥିଲେ ଘର ଭିତରକୁ ପଶିଲାବେଳକୁ । କାହାକୁ ସେ କ'ଣ, କିମିତି ବୁଝେଇବେ କିମିତି ବି ବୁଝେଇଥାନ୍ତେ, ଦୁହେଁ ତ ଆପଣାର ।

ବୋଉର ତା' ପୁଅ ଉପରେ ଷୋଳଅଣା ଅଧିକାର । ଠିକ୍ ସେମିତି ବି ସୁକନ୍ୟାର । ଅଥଚ କେହି କାହାରିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ ବୋଉ ତ ଘରର କର୍ତ୍ତ୍ରୀ ଥିଲା । ବାପା କାର୍ଯ୍ୟବ୍ୟସ୍ତ ମଣିଷ । ଘରକୁ ଆସିଲାବେଳକୁ ଅଶାନ୍ତି । ସେ ବି କ୍ରମଶଃ ନୀରବଦର୍ଶକ ହିଁ ପାଲଟିଗଲେ । କୁହୁଳା ନିଆଁ, କେତେବେଳେ ଶିଖା ଟେକି ଜଳି ଉଠିଲାଣି ଜାଣି ହେଇନି ମଧ । ସେଇ ନିଆଁର ଧାସ କ୍ରମଶଃ ସୁକନ୍ୟା ଘରକୁ ବି ସଂଚରି ଗଲା ।

ନିଜେ ଦେବାଶିଷ କିଂକର୍ତ୍ତବ୍ୟବିମୂଢ଼ ହେଇ ପଡ଼ିଥିଲେ । ଠିକ୍ ସେତିକିବେଳେ ବଂଧୁ ଅଭିଜିତ୍ ବିଦେଶରୁ ଆସିଥାଏ । ତାଙ୍କ ବୈବାହିକ ଜୀବନର ଶୁଭକାମନା କରିବାକୁ ଆସିଥିଲା ସେ ଘରକୁ । ଦେବାଶିଷଙ୍କୁ ଚିନ୍ତିତ ଦେଖି, କାରଣ ଜାଣିବାକୁ ଚାହିଁଥିଲା ବି । ସେ ବଂଧୁ ଆଗରେ କିଛି ଗୋପନ ନକରି ଘଟଣାସବୁ ଖୋଲି କହିଥିଲେ । ସବୁ ଶୁଣିସାରି ଅଭିଜିତ୍ ସହଜ ଉପାୟଟିଏ ବତେଇଲେ । ପ୍ରସ୍ତାବ ଦେଲା, "ତୁ ଘରଛାଡ଼ି ବାହାରକୁ ଚାଲିଯା' ଦୂରରେ ରହିଲେ, ଆପେ ନିଆଁ ଲିଭିଯିବ ଧୀରେ ଧୀରେ । ନିତିଦିନର ଅଶାନ୍ତି ତ କମିଯିବ । ଜୀବନଯାତ୍ରା ସହଜ ହେଇଯିବ । ଯା ବ୍ୟତୀତ କିଛି ଉପାୟ ନାହିଁ ତୋ' ପାଇଁ ।"

କଥାଟା ନିହାତି ଖରାପ ଲାଗି ନଥିଲା ତାଙ୍କୁ । ଠିକ୍ ସେତିକିବେଳେ ଭାଗ୍ୟକୁ ଗୋଟିଏ ମଲ୍ଟିନ୍ୟାସନାଲ୍ କଂପାନୀ ତାଙ୍କୁ ଚାକିରି ପାଇଁ ଅଫର୍ ଦେଇଥିଲା । ଆଉ କିଛି ବିଚାର ନ କରି ସେ ଅଫରକୁ ଗ୍ରହଣ କରି ନେଇଥିଲେ । ଟଙ୍କା ପଇସାର ପ୍ୟାକେଜ୍ ନେଇ କୌଣସି ସର୍ତ୍ତ ରଖିନଥିଲେ । ଏଠା ଚାକିରି ଛାଡ଼ି ସେ ଚାଲିଯିବା ପାଇଁ ଏକାବେଳକେ ସ୍ଥିର କରିସାରି, ବାପାବୋଉକୁ ଜଣେଇଥିଲେ । ବୋଉ ଦୁଃଖ କରିଥିଲା । ବାପା ବି ରୁଷ୍ଟ ହୋଇଥିଲେ । ତାଙ୍କୁ ବି ଦୁଃଖ ଲାଗିଥିଲା । ହେଲେ ତାଙ୍କ ସାମ୍ନାରେ ଅନ୍ୟ କିଛି ବିକଳ୍ପ ନଥିଲା, ପାରିବାରିକ ଶାନ୍ତି ବଜାୟ ରଖିବାକୁ । ସେତେବେଳେ ଶିବାଶିଷର ପାଠପଢ଼ା ସରିନଥିଲା ବି । ସେ ଭାରତମାଟି ଛାଡ଼ିଥିଲେ ସୁକନ୍ୟାକୁ ନେଇ ।

ଅନେକ ବର୍ଷ ପର୍ଯ୍ୟନ୍ତ ସେ ଭାରତ ଆସି ନଥିଲେ ଅଭିମାନରେ ପୁଅଝିଅଙ୍କ

ପାଠପଢ଼ାର ବାହାନା ନେଇ । ବାହାରକୁ ଦିଶୁଥିବା ନିଆଁ ତ ଲିଭିଯାଇଥିଲା । ଜୀବନର ଧାରାବାହିକତା ଗଡ଼ି ଚାଲିଥିଲା ତା' ବାଟେ ବାଟେ ସ୍ୱାଭାବିକ ଢଙ୍ଗରେ । ଅଭ୍ୟାସରେ ପାଲଟି ସବୁ ଗତରେ ପଡ଼ିଗଲା । ସୁକନ୍ୟାକୁ ମୁକ୍ତ ପରିବେଶ ଓ ବାତାବରଣ ମିଳିଗଲା । ହେଲେ ମଝିରେ ମଝିରେ ନିଦ ଭାଙ୍ଗିଗଲେ ଅଜବ ଚିନ୍ତା ସବୁ ମୁଣ୍ଡରେ ପଶେ । ମନେପଡ଼େ ଛାଡ଼ିଆସିଥିବା ଦିନଗୁଡ଼ିକ, ବାପା, ବୋଉ । ଆଉ ପଦୁଟିଏ ବି ସେମାନେ ପଚାରିବାକୁ ଚାହିଁନଥିଲେ କିଛି । ତଥାପି ସେ ଅନୁଭବ କରୁଥିଲେ ତାଙ୍କ ଭିତରେ କୋଉଠି ଶୂନ୍ୟପଣ ରହିଯାଇଛି । କୋଉଠି ଯିମିତି କିଛି ଗୋଟାଏ ଫାଙ୍କ ସୃଷ୍ଟି ହୋଇଯାଇଛି ଯାହାକୁ ସେ ଏ ଯାଏ ବି ଭରିପାରିଲେନି ।

ସେ ଆସିଲେ ଇଣ୍ଡିଆ । ଏକାବେଳକେ ଶିବାଶିଷର ବାହାଘରକୁ । ବାହାଘରର ଚେହେରା ବଦଳିଯାଇଥିଲା ସେତେବେଳକୁ । ବାପା ଅବସର ନେଇ ସାରିଥିଲେ । ବୋଉ ଆଶାତୀତ ଭାବେ ନରମି ଯାଇଥିଲା । ଶିବାଶିଷ ଓ ତା'ସ୍ତ୍ରୀକୁ ମିଳିଯାଇଥିଲା ପୂର୍ଣ୍ଣ ସ୍ୱାଧୀନତା । ବୋଉ ତା' ଶାଶୂପଣକୁ ବିସର୍ଜନ ଦେଇସାରିଥିଲା । ଆଉ କୌଣସି ପ୍ରକାରେ ଆଶା ଆଶ୍ୱାସନା ରଖି ନଥିଲା ପୁଅବୋହୂଙ୍କ ପାଖରୁ କିମ୍ବା କୌଣସି ସାହାଯ୍ୟ ଚାହିଁନି ବି ଆଉ । ସତେ ଯେମିତି ସେ ପର ସମସ୍ତଙ୍କ ପାଇଁ । ସେଇମିତି ପର ଭଳି ହିଁ ଚାଲିଗଲା ବାପାଙ୍କ କାନ୍ଧରେ । ଖୋଜିଲୋଡ଼ିଲାନି ତା ପୁଅମାନଙ୍କୁ । ଅଥଚ ଦଶମାସ ଗର୍ଭରେ ଧରି କ୍ଷୀର ଖୁଆଇ ମଣିଷ କରିଥିଲା । ସେ ଅପରାଧୀ ହିଁ ରହିଗଲେ ।

ଦେବାଶିଷ କାନ୍ଦିଲେ, ବାପାଙ୍କ ପାଦ ଦୁଇଟିରେ ମଥା ରଖି । ଅପରାଧବୋଧର ବୋଝରେ ତାଙ୍କର ଚେତନା ଭୂଇଁ ସାଉଁଟିବାକୁ ଲାଗିଲା । ରଘୁମଉସାଙ୍କ ମରଶରୀର ଚାରିପାଖେ ବସିଥିବା ଅନ୍ୟମାନେ ଲକ୍ଷ୍ୟ କରୁଥିଲେ ଦେବାଶିଷଙ୍କୁ । ଭାବୁଥିଲେ, ବାପା ମା'ଙ୍କ ଋଣବୋଝରୁ ନିଜକୁ ମୁକ୍ତ କରିନପାରି ଭାଙ୍ଗି ପଡୁଛନ୍ତି ସେ । ଆହା, ଏଇ ତ ରକ୍ତର ସଂପର୍କ - ଯାହା ସହଜରେ ଛିଣ୍ଡେନା । ଦୀର୍ଘଶ୍ୱାସର ଉଷ୍ମତାରେ ସତେ ଯେମିତି ଜରାଶ୍ରମର ପରିବେଶ ଓଜନିଆ ହୋଇଯାଇଥିଲା । ସମସ୍ତେ ନିର୍ବାକ୍ ସବୁଠି ଶୀତଳ ନୀରବତା ରାଜତ୍ୱ କରୁଥିଲା ।

ରାତ୍ରିର ପ୍ରଥମ ପ୍ରହର ଅତିକ୍ରାନ୍ତ କରୁଥିଲା । ରାଘବବାବୁ ଆଉ ବେଶୀ ଡେରି କରିବା ଉଚିତ୍ ହେବନି ଭାବି ଉଠିଗଲେ ଦେବାଶିଷଙ୍କ ପାଖକୁ । ତାଙ୍କ ପିଠିରେ ଆଶ୍ୱାସନାର ହାତ ରଖି କହିଲେ, 'ଅନ୍ତିମ ଯାତ୍ରା ପାଇଁ ଆମକୁ ପ୍ରସ୍ତୁତ ହେବାକୁ ହେବ ଦେବାଶିଷବାବୁ । ଆପଣ ପ୍ରକୃତିସ୍ଥ ହୁଅନ୍ତୁ, ସମ୍ଭାଳନ୍ତୁ ନିଜକୁ । ବାପା ମା'ଙ୍କ ଅଭାବ ତ ଏଇ ଜନ୍ମ ପାଇଁ ଆଉ ଭରିବନି । ସେମାନେ ଦ୍ୱିତୀୟ ଈଶ୍ୱର । ନିଜ ସନ୍ତାନଙ୍କୁ କ୍ଷମା ହିଁ ଦେଇ ଆସିଛନ୍ତି । ଦୁଃଖ କରନ୍ତୁନି । ଉଠନ୍ତୁ ଏଥର ।'

'ରାମ'ନାମର ପବିତ୍ର ଉଚ୍ଚାରଣ ଭିତରେ ରଘୁମଉସାଙ୍କ ପାର୍ଥିବ ଶରୀର ଶ୍ମଶାନ ଆଡ଼କୁ ଆଗେଇଲା । ସତେ ଯେମିତି ମୁଠା ମୁଠା କଲ୍ୟାଣ ବିଞ୍ଚି ଦେଇ ଯାଉଥିଲେ ସେ ସଭିଙ୍କ ପାଇଁ ।

ଲକ୍ଷ୍ମୀ, ବାପାବୋଉଙ୍କ ସହିତ ମିଶି ପ୍ରଣାମ ଜଣେଇ କାନ୍ଦି ଉଠିଲା । ତା'ମୁଣ୍ଡ ଉପରୁ ଅଭିଭାବକର ହାତ ଉଠିଗଲା ଚିରଦିନ ପାଇଁ । ତା' ଜୀବନର ସଫଳ ସୂର୍ଯ୍ୟୋଦୟକୁ ଦେଖିବା ପାଇଁ ଶୁଭାନୁଧାୟୀ ମଣିଷଟି ରହିଲାନି । ହଠାତ୍ ଲକ୍ଷ୍ମୀର ଛାତି ଭିତରଟା ଖାଁ ଖାଁ କରି ଉଠିଲା । ଅନେକ ବର୍ଷ ତଳେ କମଳା ମା' ଆଈର ଅନ୍ତିମ ଯାତ୍ରା ଯଦିଓ ଦେଖିଥିଲା, ସେତେବେଳେ କିନ୍ତୁ ମୃତ୍ୟୁର ଶୂନ୍ୟ ପଣକୁ, ଗମ୍ଭୀରତାକୁ ଏତେ ଗଭୀର ଭାବେ ଅନୁଭବ କରିପାରିନଥିଲା । ହେମ ଝିଅକୁ ଛାତିରେ ଚାକି ବୁଝେଇଲା, 'ଜୀବନଟା ଏମିତି ମା', ଥିଲା ତକ ସବୁ ମୋର ମୋର । ଯେତେସବୁ ସୁଖଦୁଃଖର ଖେଳ । ଖେଳ ସରିଗଲେ ପଡ଼ିଆ ଖାଲି ଖାଁ ଖାଁ ଶୂନ୍ୟପଣ । ଯାହା ଆଉ କେବେ ଭରିହେବନି । ଶୂନ୍ୟସ୍ଥାନ ହିଁ ରହିଯିବ ସ୍ମୃତି ହୋଇ ଇଏ ଦୁନିଆଁର ନିୟମ ।

ଚାରିଦିନ ଗଲା । ସମସ୍ତ ସଂସ୍କାର କ୍ରିୟା ସରିଲା । ଦେବାଶିଷ ଲଣ୍ଡନ ଫେରିବା ପାଇଁ ପ୍ରସ୍ତୁତ ହେଲେ । ଗଲାବେଳେ କୃତଜ୍ଞତା ସ୍ୱରୂପ କିଛି ମୋଟାଅଙ୍କର ଅର୍ଥ 'ଓଲଡ୍ ଏଜ୍ ହୋମ୍'କୁ ଦାନ କରି ବାପାଙ୍କ ଅନ୍ତିମ ଅଭିଳାଷ ପୂର୍ଣ୍ଣ କଲେ । ଯିବା ପୂର୍ବରୁ ସମସ୍ତ ଅନ୍ତେବାସୀ, ବିଶେଷ କରି ଲକ୍ଷ୍ମୀ ଆଉ ହେମକୁ ନିଜର କୃତଜ୍ଞତା ଜ୍ଞାପନ କରି କହିଲେ, ଯାହା ଆମେ ସନ୍ତାନ ହେଇ ବାପାଙ୍କ ସେବା କରିପାରିନୁ ତାହା ଆପଣମାନେ ଆନ୍ତରିକତାର ସହିତ ସଂପାଦନ କରିଛନ୍ତି ମୁଁ ସେଇ ଋଣ ଶୁଝିପାରିବିନି କେବେ । ଗଲାବେଳେ ହେମ ହାତରେ ଚେକ୍‌ଟିଏ ଦେବାକୁ ଚାହିଁଥିଲେ ବି ହେମଲତା ଗ୍ରହଣ କରିନଥିଲା । କହିଥିଲା, ରକ୍ତର ସଂପର୍କ ହିଁ କେବଳ ସଂପର୍କ ନୁହେଁ । ଆଉ ଗୋଟିଏ ବି ସଂପର୍କ ଅଛି - ତାର କିଛି ନାଁ ନାହିଁ । ମୋ ବାପାବୋଉଙ୍କ ପାଇଁ ମୁଁ ଯାହା କରିଥା'ନ୍ତି ତାହା ହିଁ କରିଛି । ସେ ସ୍ନେହ ଦେଲାବେଳେ କେବେ କୃପଣତା କରିନାହାନ୍ତି । ତାଙ୍କର କଲ୍ୟାଣ ଟିକିକ ଆମ ପାଇଁ ଯଥେଷ୍ଟ । ଆପଣଙ୍କ ଦୁଃଖ ଠାରୁ ଆମ ଦୁଃଖ କିଛି କମ୍ ନୁହେଁ ।

ଦେବାଶିଷଙ୍କୁ ବିଶେଷ ଚକିତ କରିଥିଲା ହେମଲତାର ଦୃଷ୍ଟିକୋଣ । ଏହା କେବଳ ଭାରତ ମାଟିରେ ହିଁ ସମ୍ଭବ । କି ଉଦାରତା! ଆଉ କୌଣସି ଦେଶରେ ଏ ମାନବିକତାର ତୁଳନା ନାହିଁ ସତରେ । ଦେବାଶିଷ ଭାରତ ଛାଡ଼ିଲେ । ଭାରତ ସହିତ ତାଙ୍କର ସଂପର୍କ ବାପାବୋଉଙ୍କ ଗଲା ପରେ ରହିଲା କି ନରହିଲା, ଦେବାଶିଷ ସେଇ ସଂପର୍କକୁ ରଖିବାକୁ ଚାହିଁବେ କି ନ ଚାହିଁବେ, ସେକଥା ସମୟ ହିଁ କହିବ କେବଳ । କିନ୍ତୁ ଦେବାଶିଷ ଚାଲିଯାଇଥିଲେ ବାପାବୋଉଙ୍କର ଶେଷ ସ୍ମୃତିକୁ ସାଉଁଟି ଧରି ।

ରଘୁରାଜ ମଉସା, ଆଶ୍ରମର ସମସ୍ତ ଅନ୍ତେବାସୀଙ୍କର ସେ ଅତି ଆପଣାର ମଉସା ହିଁ ଥିଲେ । ସମସ୍ତେ ତାଙ୍କୁ ମଉସା ବୋଲି ହିଁ ଡାକୁଥିଲେ । ଜରାଶ୍ରମ ଆରମ୍ଭ ହେବା ଦିନଠୁ ରଘୁମଉସା ଅଛନ୍ତି । କହିବାକୁ ଗଲେ ସେ ଓ ତାଙ୍କର ପତ୍ନୀ ଜରାଶ୍ରମର ପ୍ରଥମ ଅନ୍ତେବାସୀ । ତେଣୁ ସେ ସଭିଙ୍କର ଅଭିଭାବକ ଭଳି ଥିଲେ । ଅଥଚ ତାଙ୍କର ଅବର୍ତ୍ତମାନରେ ସମସ୍ତ ଅନ୍ତେବାସୀଙ୍କ ମନରେ ଏକ ପ୍ରକାର ହତାଶାଭାବ ବସାବାନ୍ଧି ରହିଲା । ଦୈନନ୍ଦିନ ଜୀବନର ପ୍ରତିଟି କାର୍ଯ୍ୟରେ ରଘୁମଉସା ମନେ ପଡୁଥିଲେ । ସେ ସିନା ଜରାଶ୍ରମର ଅନ୍ତେବାସୀ ଥିଲେ, ହେଲେ ପରିଚାଳନା କମିଟିର ସଦସ୍ୟମାନେ ବି ଆବଶ୍ୟକ ବେଳେ ତାଙ୍କ ନିକଟରୁ ପରାମର୍ଶ ଗ୍ରହଣ କରୁଥିଲେ । ତେଣୁ ସ୍ୱାଭାବିକ ଭାବେ ତାଙ୍କର ଅଭାବ ସମସ୍ତେ ଅନୁଭବ କରୁଥିଲେ ।

ବିଶେଷ କରି ଲକ୍ଷ୍ମୀ ପାଇଁ ରଘୁମଉସା ଏକାନ୍ତ ଅପରିହାର୍ଯ୍ୟ ଥିଲେ । ସମସ୍ତଙ୍କର ସେ ପ୍ରିୟ ଥିଲା, ରାଘବ ସାର୍ ତାର ମାର୍ଗଦର୍ଶକ ଥିଲେ, ତଥାପି ରଘୁମଉସାଙ୍କ ଅଭାବ ତା' ପାଇଁ ଅପୂରଣୀୟ କ୍ଷତି ଥିଲା । ନିଜ ପାଠପଢ଼ା ଓ ଜରାଶ୍ରମର ବିଭିନ୍ନ ପ୍ରକାରର ଦାୟିତ୍ୱ ଭିତରେ ବ୍ୟସ୍ତ ରହି ମଧ କିଛି ସମୟ ନିରୋଳା ପାଇଲେ ରଘୁମଉସା ମନେପଡୁଥିଲେ । ନିଜକୁ ଖୁବ୍ ଅସହାୟ ଲାଗୁଥିଲା । ଛୋଟ ହେଉ କି ବଡ଼, କିଛି ଗୋଟେ ସମସ୍ୟା ଦେଖାଦେଲେ, ଅଥବା ନିଜ ପାଇଁ କୌଣସି ନିଷ୍ପତ୍ତି ନେବାର ସମୟ ଆସିଲେ, ବିନା ଦ୍ୱିଧାରେ ସେ ରଘୁମଉସାଙ୍କ ପରାମର୍ଶ ନେଇଯାଉଥିଲା । ନିଜ କ୍ୟାରିଅର୍ ସଂପର୍କରେ କୌଣସି ନୀତିଗତ ନିଷ୍ପତ୍ତି ନେଲାବେଳେ ଖୋଲାଖୋଲି ଭାବେ ସେ ମଉସାଙ୍କ ସହିତ ପରାମର୍ଶ କରିପାରୁଥିଲା । ବାପାବୋଉ ତ ଏସବୁ ପାଇଁ ସମର୍ଥ ନଥିଲେ । ରଘୁ ମଉସା ଯିବା ପରେ ନିଜକୁ ଖୁବ୍ ଅସହାୟ ମନେକଲା ଲକ୍ଷ୍ମୀ । ଯେମିତି ସେ ଏକା ହୋଇଯାଇଛି । ତାକୁ ଚିନ୍ତିତ ରହିବା ଦେଖି ଦିନେ ରାଘବ ସାର୍ ପଚାରିଥିଲେ ତା'ର କାରଣ । କଥା ପ୍ରସଙ୍ଗରେ ଲକ୍ଷ୍ମୀ କହିଥିଲା, ନିଜ କ୍ୟାରିଅର୍‌କୁ ନେଇ ସେ ଖୁବ୍ ଚିନ୍ତିତ । ପରାମର୍ଶ କରିବାକୁ ମଉସା ବି ଆଉ ନାହାନ୍ତି...... ବ୍ୟସ୍ତ ଲାଗୁଛି । ରାଘବ ସାର୍ କହିଲେ, 'ଏଥିରେ ବ୍ୟସ୍ତ ହେବାର କ'ଣ ଅଛି । ତୁ ଡକ୍ଟର ଭୃଗୁ ସାମନ୍ତଙ୍କ ସହିତ ପରାମର୍ଶ କରିପାରୁ । ସେ ଜଣେ ବିଜ୍ଞ ଓ ବିଚକ୍ଷଣ ବ୍ୟକ୍ତି । କାହାର ଉପକାର କରିପାରିଲେ ସେ ନିଜକୁ ଧନ୍ୟ ମଣନ୍ତି । ଚମତ୍କାର ବ୍ୟକ୍ତି ଜଣକ । ତୁ ତାଙ୍କର ସାହାଯ୍ୟ ବିନା ଦ୍ୱିଧାରେ ନେଇପାରୁ । ସେ ତ ଆସୁଛନ୍ତି ଆମ ଜରାଶ୍ରମକୁ ମଝିରେ ମଝିରେ ।' ମୁଁ କଥାବାର୍ତ୍ତା କରିବି ଏ ସଂପର୍କରେ ।

ମନର ନିଭୃତ କୋଠରି ଭିତରେ ଆଶାର ସଳିତାଟିଏ ଯେମିତି ଦପ୍ କରି ଜଳି ଉଠିଲା ! ଲକ୍ଷ୍ମୀ ମନେ ମନେ ସାହସ ବାନ୍ଧିଲା । ସତେ ତ ! ହେଲେ.... ତା ଭିତରୁ ସଂକୋଚ ତ କଟି ପାରୁନଥିଲା । ସ୍ୱପ୍ନକୁ କଣ କିଏ ଧରିପାରେ ନା ଛୁଇଁପାରେ ! ସିଏ ତ ସ୍ୱପ୍ନ ! ସ୍ୱପ୍ନ କେବଳ ଦେଖିବାରେ ଆନନ୍ଦ । ନିଦ ଭାଙ୍ଗିଗଲେ ବି ତ ଦୁଃଖ । ସ୍ୱପ୍ନକୁ ପୋଷି ରଖାଯାଇପାରେ ନିରୋଳାରେ । ସିଏ କିନ୍ତୁ ପୋଷି ରଖିଛି ସମସ୍ତଙ୍କ ଅଲକ୍ଷ୍ୟରେ । ଥାଉ ନା ।

"ନା, ଥିବ କାହିଁକି ? ମଣିଷ ସ୍ୱପ୍ନ ଦେଖେ । ଦେଖିବା ପାଇଁ କେବଳ ନୁହେଁ । ସ୍ୱପ୍ନକୁ ଖୋଜିବା ପାଇଁ ବାଟ ତିଆରି କରିବାକୁ ପଡ଼େ ନିଜକୁ ପୁଣି । ତାକୁ ଚରିତାର୍ଥ କରିବାକୁ ହୁଏ, ତାକୁ ବାସ୍ତବରେ ପରିଣତ କରିବାକୁ ହୁଏ । ଅବଶ୍ୟ ଆମେ ବାଟରେ କଇଁଛ ହେବା କି ଠେକୁଆ, ଆମ ନିର୍ଣ୍ଣୟ ଉପରେ ନିର୍ଭର କରେ ନହେଲେ ସ୍ୱପ୍ନର କିଛି ମାନେ ରହେନା ।"

ଦିନେ କଥା ପ୍ରସଙ୍ଗରେ ଡକ୍ଟର ସାମନ୍ତ ବେଶ୍ ଜୋର୍ ଦେଇ ହିଁ କହିଥିଲେ ଲକ୍ଷ୍ମୀକୁ । 'ଆପଣ ଚେଷ୍ଟା କରନ୍ତୁ ଆଗାମୀ ପରୀକ୍ଷାରେ ବସିବା ପାଇଁ । ଆଉ ଟିକିଏ ଅଧିକା ପରିଶ୍ରମ, ଟିକିଏ ଚେଷ୍ଟା ଦରକାର । ସ୍ୱପ୍ନ ମଣିଷକୁ ଅନେକ ବାଟ ନେଇଁଯାଏ । ସାଧନା ପାଇଁ ପ୍ରୋତ୍ସାହିତ କରେ । ସାଧନା ସମ୍ଭାବନାକୁ ସୃଷ୍ଟି କରେ । ତେଣୁ ନିଜକୁ, ନିଜ ଇଚ୍ଛାଶକ୍ତିକୁ ଦୃଢ଼ କରିବାକୁ ହେବ - ତା'ହେଲେ ହିଁ ହେଲା । ସମ୍ଭାବନା ଯେ ମଣିଷକୁ ଦିନେ କାଳଜୟୀ କରେ - ହସି ହସି କହିଲେ ଡା. ସାମନ୍ତ । ଆପଣଙ୍କର ଯାହା ମ୍ୟାଟିରିଯଲସ୍ ଆବଶ୍ୟକ ମୁଁ ଯୋଗାଇଦେବି । ବ୍ୟସ୍ତ ହୁଅନ୍ତୁନି । ସ୍ଥିରକରି ନିଅନ୍ତୁ ମନକୁ । ପ୍ରିଲିମିନାରିରେ ସଫଳ ହୋଇଛନ୍ତି ଯେତେବେଳେ, ମୂଳ ପରୀକ୍ଷାରେ ବସିବେ ନିଶ୍ଚୟ । ପୁଣି ଟିକିଏ ରହି ମୃଦୁ ହସି କହିଲେ, ଆପଣ ପାରିବେ । ମୁଁ ଜାଣିପାରୁଛି.... ଦିନେ ଆପଣ ଅନ୍ୟମାନଙ୍କ ପାଇଁ ଦୃଷ୍ଟାନ୍ତ -ରଖିବେ ।"

"ମାନେ ! ! ଲକ୍ଷ୍ମୀ ପ୍ରଶ୍ନିଳ ଆଖିରେ ଚାହିଁଲା ଡକ୍ଟର ସାମନ୍ତଙ୍କ ହସିଲା ଆଖିକୁ । ଯିମିତି ପଚାରୁଥିଲା କିମିତି ଜାଣିଲେ ?

"ମୁଁ ମନ ଡାକ୍ତର ତ, 'ମନ -ପାଠ ପଢ଼ିଛି । ମଣିଷର ମନ ଭିତରକୁ ମୋର ପ୍ରବେଶ ଅଛି ।" କହିସାରି ଅପେକ୍ଷା କଲେ ଲକ୍ଷ୍ମୀର ପ୍ରତିକ୍ରିୟା ଜାଣିବାକୁ ।

"ସବୁ 'ମନ' ମାନେ କ'ଣ ପ୍ରବେଶର ଅଧିକାର ଦିଅନ୍ତି ନା ପ୍ରବେଶ କରି ପାରନ୍ତି ? ଏଠି ଅଧିକାରର ପ୍ରଶ୍ନ ଉଠେନା ।" 'ମନ' 'ମନ' କୁ ଚିହ୍ନିପାରେ । କେବଳ ଯେ ଚିହ୍ନିପାରେ ତା' ନୁହେଁ 'ମନ' ଭିତରେ 'ମନ'କୁ ନେଇ ଘରଟିଏ ବି ତୋଳିପାରେ ।" ଡୁବନ୍ତ ସୂର୍ଯ୍ୟକୁ ଚାହିଁ କହିଲେ ଡା. ସାମନ୍ତ କଥାରେ ବ୍ୟଞ୍ଜନା

ଫୁଟିଉଠୁଥିଲା । 'ଘର ବି ଡୋଳିପାରେ... ? ?' ଶୂନ୍ୟକୁ ଚାହିଁ ସ୍ୱଗତୋକ୍ତି କଲା ଭଳି ଗୁଣୁଗୁଣୁଇଲା ଲକ୍ଷ୍ମୀ ।

"ପରୀକ୍ଷା କରି ଦେଖନ୍ତୁ ନା ।"

ଚମକି ଉଠିଲା ଲକ୍ଷ୍ମୀ ନିଜ ଭିତରେ ଡକ୍ଟର ସାମନ୍ତଙ୍କ କଥା ଶୁଣି ।

"ଚମକି ପଡ଼ିଲେ ଯେ, ଭୁଲ୍ କହିଲି ?"

"ମୁଁ କେମିତି ଜାଣିବି ? ଶେଷ ସୂର୍ଯ୍ୟର ରକ୍ତିମ ଆଭା ଲକ୍ଷ୍ମୀ ମୁହଁରେ ପଡ଼ି ଝଟକୁଥିଲା ।"

"ପଚାରି ବୁଝି ନିଅନ୍ତୁ ମନର ମଣିଷକୁ ।"

"ମନର ମଣିଷ !! ଗୋଟାଏ ଆଚ୍ଛନ୍ନ ବିସ୍ମୟ ନେଇ ନିଦରୁ ଉଠିଲା ଭଳି ଡକ୍ଟର ସାମନ୍ତଙ୍କ ମୁହଁକୁ ଚାହିଁ ରହିଲା ଲକ୍ଷ୍ମୀ ନିର୍ବାକ୍ ହୋଇ । ଭୃଗୁ ସାମନ୍ତଙ୍କ ମୁହଁ ଓ ଆଖିରେ ଚେନାଏ ଜହ୍ନ ଆଲୁଅ ଝଲସି ଉଠୁଥିଲ ସତେକି । ଆଖିରେ ଆଖି ମିଶେଇ ସବୁ ପ୍ରଶ୍ନର ଉତ୍ତର ଯିମିତି ସେ ଦେଇ ଦେଇଥିଲେ । ତା' ପାଇଁ କୌଣସି ଶବ୍ଦର ସାହାଯ୍ୟ ଲୋଡ଼ା ନ ଥିଲା । ଲକ୍ଷ୍ମୀ ରୋମାଂଚିତ ହେଉଥିଲା କ୍ରମଶଃ । ଆଞ୍ଜୁଳିଏ ଜୁଇଫୁଲର ମିଠାହସ ଭେଟି ଦେଇ ଡକ୍ଟର ସାମନ୍ତ ଲକ୍ଷ୍ମୀ ପାଖରୁ ବିଦାୟ ନେଇଥିଲେ ପୁଣି ଆସିବାର ପ୍ରତିଶ୍ରୁତି ଦେଇ । ଆଉ ଗଲାବେଳେ ମୁଠାଏ ସ୍ୱପ୍ନ ଲକ୍ଷ୍ମୀ ପଣତରେ ବାନ୍ଧି, ନିଜେ ଆଞ୍ଜୁଳାଏ ସ୍ୱପ୍ନ ନେଇଗଲେ ।

ଭୃଗୁ ସାମନ୍ତ ଗଲାପରେ ଲକ୍ଷ୍ମୀ ସେଦିନ ତା' ମନ ଅଗଣାରେ ଉତ୍ସବର ଦୀପାବଳି ଜାଳିଲା, ଫୁଲଝରୀ ଲଗେଇଲା, ରୋଶଣି କଲା । ନିଜ ଭିତରେ ନିଜେ ବୁଡ଼ିଗଲା ବିଭୋର ହୋଇ । କୋଉଠି କେଜାଣି ହଳଦୀବସନ୍ତ ଡାକୁଛି, ଡାକୁଛି ତା' ସାଥୀକୁ । ଝରକା ପାଖକୁ ଧାଇଁଗଲା ଲକ୍ଷ୍ମୀ ହଳଦୀବସନ୍ତକୁ ଖୋଜିବ ବୋଲି । ଆଶ୍ରମ ପାଚେରୀକୁ ଲାଗି ତିନି ଚାରିଟା ପଳାଶ ଗଛ ଅଛି । ହୁଏତ ତାରି ଭିତରେ ଲୁଚକାଳି ଖେଳୁଛନ୍ତି ପକ୍ଷୀ ଦୁଇଟି । ଆଖି ତାର ଛନ ଛନ ହେଇ ଅଣ୍ଡାଳି ପକାଇଲା ପଳାଶର ଶାଖା ପ୍ରଶାଖାମାନଙ୍କୁ । ସମସ୍ତେ କୁହନ୍ତି ହଳଦୀବସନ୍ତ ଶୁଭ ପକ୍ଷୀ - ଦେଖିଲେ ଶୁଭ ହୁଏ । ଯାହା ମନାସିଥିବ କୁଆଡ଼େ ସବୁ ପାଇହୁଏ, କେଜାଣି ?

ଲକ୍ଷ୍ମୀର ଆକାଶମୁଖୀ ପକ୍ଷୀ-ମନ ଉଡ଼ିବାକୁ ଉଦ୍ୟତ ହେଉଥିବାବେଳେ ପକ୍ଷୀ ଦି'ଟା ଉଡ଼ିଗଲେ ଫୁର୍‌କିନି ଏକା ସାଥୀରେ । ଭାରି ଲାଜୁକି ପକ୍ଷୀ । ସଂଭ୍ରାନ୍ତ । ଜମା ଦେଖେଇ ହେବା ଗୁଣ ନାହିଁ । ଭାରି ଭଲ ଲାଗେ ତାକୁ ସେଇଥିପାଇଁ, ଆକାଶ ଆଡୁ ଆଖି ଫେରେଇ ଆଣି ପଳାଶ ଶାଖାକୁ ଚାହିଁଲା - ମଂଜରିତ ହେଉଛି ଶାଖା - ବସନ୍ତକୁ ସ୍ୱାଗତ କରିବା ପାଇଁ ପ୍ରସ୍ତୁତି ଚାଲିଛି । ବସନ୍ତ ଆସୁଛି । ପଳାଶ ଫୁଟିବ । ନିଆଁ ଜଳିବ

ସତେକି । ଉଚ୍ଛନ୍ନ କରିବ ସମସ୍ତଙ୍କୁ । ଲକ୍ଷ୍ମୀ ନିଜ ଭିତରେ କିମିତି ଉଚ୍ଛନ୍ନ ହେଉଥିଲା । ତାକୁ ଆଜି ସବୁ ସୁନ୍ଦର, ମଧୁର, ସ୍ନିଗ୍ଧ ମନେହେଉଥିଲା । ବୋଉ ଖାଇବାକୁ ଡାକିଲା ପର୍ଯ୍ୟନ୍ତ ସେ ସେଇମିତି ଚାହିଁ ରହିଥିଲା ଆକାଶ ଆଉ ମଂଜରିତ ପଳାଶ ଶାଖାକୁ ଏବଂ ବୁଡ଼ି ଯାଇଥିଲା ଅନାବନା ଅନେକ ଭାବନାରେ । ଯେମିତି ପିଲାଏ ବାଲିଘର କରି ଭାଙ୍ଗୁଥାନ୍ତି - ଗଢ଼ୁଥାନ୍ତି । ପୁଣି ଗଢ଼ୁଥାନ୍ତି - ମନମୁତାବକ ହେଲାଯାଏ - ସେମିତି କିଛି..... ଭଙ୍ଗାଗଢ଼ା ଚାଲିଥାଏ ତା' ଭାବନା ଜଗତରେ ।"

ସେଦିନ ପଢ଼ାରେ ତା'ମନ ଲାଗୁନଥିଲା ଜମା ।

॥ ୪ ॥

ସମସ୍ତଙ୍କୁ ଖାଇବାକୁ ଦେଇସାରି ହେମଲତା କେଶବାର ଖାଇବା ନେଇ ତା' ରୁମ୍‌କୁ ଗଲା । ଗଲା ଶୀତରୁ କେଶବାର ଦେହ ମୋଟେ ସୁସ୍ଥ ରହୁନି । ବିଶେଷ ଚଲାବୁଲା କରିପାରୁନି କେଶବା । ନିଜ କାମ କିଛି କରିପାରୁନି ବୋଲି ସବୁବେଳେ ଚିନ୍ତିତ ରହୁଛି । ହେମର ଦାୟିତ୍ୱ ବଢ଼ୁଛି । କେତେ ପରିଶ୍ରମ କରିବ ବିଚାରୀ । ସ୍ୱାମୀ ପାଇଁ ଖାଇବା ସଜାଡ଼ି, ତା' ହାତକୁ ବଢ଼େଇଦେଲା ହେମ । କେଶବା ଖାଉଖାଉ ନିତିଦିନ ଭଳି ପଚାରିଲା, 'ଲକ୍ଷ୍ମୀ ? ଲକ୍ଷ୍ମୀ ଖାଇଲାଣି, କାହିଁ ମୁଁ ତାକୁ ଆଜି ଦେଖିନି ତ । ବ୍ୟସ୍ତ ଅଛି ?' ରାତିରେ ଲକ୍ଷ୍ମୀ ପ୍ରାୟ , ବାପାଙ୍କ ସହିତ ଏକାଠି ବସି ଖାଏ । ହେମ ବି ବେଳେବେଳେ ସାଥୀ ଦିଏ । ଆଜି କିନ୍ତୁ ଲକ୍ଷ୍ମୀ ଆଗରୁ ଖାଇ ଚାଲିଯାଇଥିଲା ନିଜ ପଢ଼ାଘରକୁ । ଖାଉ ଖାଉ ହେମ କହିଲା, ସେ କାହିଁକି କେଜାଣି ତରବରିଆ ଖାଇ ଚାଲିଗଲା । ତୁନିତାନି ଥିଲା ଜାଣିଛ, ଏଇ କେଇଦିନ ହେବ ଦେଖୁଛି, ଝିଅଟା କିମିତି ଗମ୍ଭୀର ହେଇଯାଇଛି । ଭାବୁଥିଲି ମଉସା ଚାଲିଗଲା ପରେ କେମିତି ଏକୁଟିଆ ହେଇଯାଇଛି ବୋଧେ । ତା'ଛଡ଼ା ପଢ଼ାପଢ଼ିରେ ଭିଡ଼ ଥିବ । ମୋତେ ବି କୋଉ ସମୟ ଅଛି ଯେ, ପାଖରେ ବସି ଦି' ଚାରିପଦ କଥା ହେବି, କହୁନ ? ହେଲେ ଆଜି ମୋତେ କିମିତି ଅଲଗା ଜଣାପଡ଼ିଲା - ଖୁସି ଅଛି ଲକ୍ଷ୍ମୀ, ଅଥଚ ମୋ ମୁହଁକୁ ଚାହିଁ ପାରୁନି; ଲାଜ ଲାଗୁଛି ଯିମିତି । କିଛି ବୁଝିପାରିଲିନି, ଅନୁମାନ କରୁଛି ଯାହା । ମୁହଁର

ରଂଗ ବଦଳିଯାଇଛି ତାର । ଖୁସିର ରଂଗ ଝଲସି ଉଠୁଛି ସତେକି । କେଶବା ଶୁଣିଲା, କହିଲା, ତୋ' ମା' ମନ କେବେ ଭୁଲ୍ ଦେଖିନଥିବ । ତେବେ ଝିଅ ଆମର ଖୁସି ଅଛି ଯେତେବେଳେ, ଭାବିବାର କିଛି ନାହିଁ । କିଛି ଖୁସି ଖବର ପାଇଥିବ ପଢ଼ାପଢ଼ି ନେଇ, କେତେ କଥା ତ ପଡୁଛି । ବଳେ ଜଣା ପଡ଼ିବନି କି । ତା' ଉପରେ ମୋର ଭରସା ଅଛି । କେତେ ଝଡ଼ ବର୍ଷା- ଅଂଧାରକୁ ସାମ୍ନା କରିଛି ଆମ ଝିଅ । ଅଂଧାର ତାକୁ ଡରେଇବନି କି ରାସ୍ତା ଭୁଲିବନି ସେ କେବେ । "ହଁ, ତା' ସତ । ଯୋଉଥି ପାଇଁ ହେଉ, ତା ମୁହଁରେ ଖୁସି ଫୁଟିଉଠିଲେ ମୋ' ମନ ପୂରି ଉଠେ । ହେମ ଅଗଁଠା ଥାଳି ଉଠେଇ ନେଉ ନେଉ କହିଲା । ମନେ ମନେ ଭାବିଲା, ତାକୁ ହିଁ ଘେରି ତାଙ୍କ ଜୀବନ ଚାଲିଛି, ଦୁଃଖ କଷ୍ଟ, ଝଡବତାସ, ବାଧୁନି କିଛି, ସେଇ ସୁଖରେ ରହିବ ବୋଲି । ଲକ୍ଷ୍ମୀ ମୁହଁ ଶୁଖିଗଲେ ତ ଛାତି ଫାଟି ଯିବ ତାର, ସୁଖରେ ରଖିଥାଅ ଠାକୁରେ ଝିଅକୁ ମୋର ।

ମନେ ମନେ ହାତ ଯୋଡ଼ିଲା ହେମ । ରାତି ବଢୁଥିଲା । ଝିଅର ଭାବନା ଭିତରେ ବୁଡ଼ି ହେମ ଆଉ କେଶବାର ଆଖିରେ ନିଦ ମାଡ଼ି ଆସିଲା କ୍ରମଶଃ ।

ସେଇଥର ଗ୍ରୀଷ୍ମଛୁଟିରେ ମାତ୍ର ସପ୍ତାହେ ପାଇଁ ଘରକୁ ଆସି ଥିଲା ଆର୍ଯ୍ୟ । ରାଘବ ବାବୁ ଓ ଅଭୟାଙ୍କ ପାଦ ତଳେ ଲାଗୁ ନଥିଲା । ଏତେ ଦିନକେ ପୁଅ ଆସିଛି । ତା' ମନ ପସନ୍ଦର ଖାଇବା ବନେଇବାରେ ଅଭୟା ବ୍ୟସ୍ତ । ମେସ୍, ହୋଟେଲରେ ଖାଇ ଖାଇ ପିଲାଟା ଝଡ଼ିଗଲାଣି । "ପାଠପଢ଼ା ପାଇଁ କଣ କମ୍ କଷ୍ଟ କରିବାକୁ ପଡୁଛି, ଆଗରୁ ସିନା ପ୍ରଥମ ଦ୍ୱିତୀୟ ଶ୍ରେଣୀର କିଛି ମାନେ ଥିଲା କ୍ୟାରିଅର୍ ପାଇଁ, ଆଜିକାଲି ତ ସେ ସବୁ ନାହିଁ । ଅନେକ ପ୍ରତିଯୋଗୀ । ଭାରତର ସବୁ ରାଜ୍ୟରୁ ଭଲ ଭଲ ପିଲା ଆସୁଛନ୍ତି ପଢ଼ିବାକୁ ଜାଣିଛ ବୋଉ, ରାତିମତ ପ୍ରତିଦ୍ୱନ୍ଦ୍ୱିତା ସବୁ କ୍ଷେତ୍ରରେ ।" -ଆର୍ଯ୍ୟ ସଫେଇ ଦେଲା ବୋଉକୁ ।

ଅଭୟା କହିଲେ, ଚାରି ଛ'ଟା ଦିନ ପାଇଁ ଆସିଲୁ - ସେଥିରେ କ'ଣ ଖାଇବୁ, କେତେ ବା ବିଶ୍ରାମ ନେବୁ । ସ୍ୱାସ୍ଥ୍ୟ ଭଲ ଥିଲେ ସିନା, ପରିଶ୍ରମ କରିବୁ । ପୁଣି ଏଇଟା ଶେଷ ପରୀକ୍ଷା । ଲକ୍ଷ୍ମୀ ବି ତ ପ୍ରସ୍ତୁତ କରୁଛି ନିଜକୁ କମ୍ପିଟେଟିଭ୍ ପାଇଁ, କହି ଅଭୟା ପୁଅ ମୁହଁକୁ ଚାହିଁଲେ, ଆର୍ଯ୍ୟ ଖାଉ ଖାଉ ସହଜ ଗଳାରେ କହିଲା, "ଏଇ ଆମ ଲକ୍ଷ୍ମୀ ତ । କମ୍ପିଟେଟିଭ୍ ପାଇଁ ଚେଷ୍ଟା କରୁଛି । ଭଲ କଥା । ଭଲ ଝିଅଟିଏ, ପଢ଼ାପଢ଼ିରେ ମାହିର । ଏମ୍.ଏ. ବି ତ କରୁଥିଲା ନା କ'ଣ... ଅବଶ୍ୟ, ଅନେକ କଷ୍ଟ କରିଛି ପାଠପଢ଼ିବା ପାଇଁ ..."

"ହଁ, କରୁଛି ତ । ହେଲେ ସବୁ ଗୁରୁଜନ କମ୍ପିଟେଟିଭ୍ ପାଇଁ ତାକୁ ଉତ୍ସାହିତ

କଲେ । ଭଲ ପଢ଼େ ବି ତ । କୋଚିଂ କ୍ଲାସ୍‌କୁ ଯାଉଛି । କ୍ଲାସ୍ ବି କରୁଛି ମଝିରେ ମଝିରେ । ବୁଝିଲୁ ଆର୍ଯ୍ୟ, ଭାରି ଭଲ ଝିଅ । ସବୁ କାମରେ ଧୂରନ୍ଧର । ଆଶ୍ରମ କଥା, ଆଶ୍ରମର ମଣିଷଙ୍କ କଥା, ବାପା ମା'- କାହାକୁ ସେ ଅଣଦେଖା କରୁନି । ସମସ୍ତଙ୍କ ପାଟିରେ ଲକ୍ଷ୍ମୀ । ତାକୁ ଦେଖିଲେ ମନ ପୂରିଉଠୁଛିରେ । ଭାଗ୍ୟରେ ଥିଲେ ସେମିତିକା ଝିଅ ପାଏ ମଣିଷ । କାଲି ତାକୁ ଡାକିଆଣିବି, ଦେଖିବୁ, କି ସୁନ୍ଦର ଦିଶୁଛି । ରୂପ ଗୁଣ କୋଉଥିରେ ଖୁଣିବାକୁ ନାହିଁ - କହିସାରି ଅଭୟା ମୁହୂର୍ତ୍ତେ ନିଃଶ୍ୱାସ ନେଲେ । ମନେ ମନେ ପୁଲକିତ ହୋଇ ଉଠୁଥାନ୍ତି ଲକ୍ଷ୍ମୀର ପ୍ରଶଂସା କରୁ କରୁ । "ଜାଣିଛୁ ଆର୍ଯ୍ୟ, ବାପା ତୋର କୁଆଡ଼େ ତାକୁ ନେଇ ଅନେକ ସ୍ୱପ୍ନ ଦେଖୁଛନ୍ତି ।"

"ସ୍ୱପ୍ନ! କି ସ୍ୱପ୍ନ ? ସେ ଭଲ ପଢ଼େ ବୋଲି ବାପା ତାକୁ ଭଲପା'ନ୍ତି ମୁଁ ଜାଣେ । ସେ ବାପାଙ୍କ ହାତରେ ଗଢ଼ି ହେଇଛି ତ । ତା'ର ଶୁଭଚିନ୍ତକ ହେଉଛନ୍ତି ବାପା । ଜଣାକଥା, ସହଜ ଗଳାରେ ବିଶେଷ ଆଗ୍ରହ ନ ଥିଲା ଭଳି ଆର୍ଯ୍ୟ କଥା ପୂରଣ କରି ଉଠିଲା ଖାଇବା ଟେବୁଲ୍‌ରୁ ।" ଯୋଉ ବିଚକ୍ଷଣ ଝିଅମାନେ ମୋ ସହିତ ପଢୁଛନ୍ତି ନା ଦେଖିଲେ ତୁ ଆଶ୍ଚର୍ଯ୍ୟ ହେବୁ । "କାଲି ସେ ଆସିବ, କହିଛି ମୁଁ । ଦେଖିବୁ । ଖୁସି ହୋଇଯିବୁ ତୁ ।" ମୁଁ କ'ଣ ତାକୁ ଦେଖିନି ଯେ, ଦେଖିବି । ସିଏ ତ ଆଉ ସପ୍ତାଶ୍ଚର୍ଯ୍ୟ ଭିତରେ ନୁହଁ । ଆର୍ଯ୍ୟ ନିଜ ଖଟ ଉପରେ ଲାପଟପ୍ ଖୋଲି ବସିଲା- ଯା'ହେଉ, ପୁଲୋମା ଅନଲାଇନ୍ ଅଛି..... ଚାଟିଙ୍ଗ୍ କରିବାକୁ ଚାହୁଁଛି..... ସ୍କ୍ରିନ୍‌ରେ ଫୁଟି ଉଠିଲା । ଅଗତ୍ୟା ଅଭୟା ଲକ୍ଷ୍ମୀ କଥାରେ ପୂର୍ଣ୍ଣଚ୍ଛେଦ ପକାଇଲେ । ମନେ ମନେ ଭାବିଲେ, ଏବେବି ପୁଅର ପିଲାଳିଆମି ଛାଡ଼ିନି । ମନ ଲାଗିଛି ପଢ଼ାରେ । ଭଲ କଥା । ନିଜକୁ ଆଗ ଗଢ଼ିବାକୁ ହେବ । ତା' ପରେ ସଂସାର । ଯାଉ କିଛି ଦିନ, ପରୀକ୍ଷା ସାରି ଆସୁ, ତାକୁ ସେତିକିବେଳେ ବାନ୍ଧି ରଖିବେ ।

ଦାଣ୍ଡ ଦୁଆରେ ରାଘବବାବୁଙ୍କ ପାଟି ଶୁଭିଲା । ଆଜି ଅନେକ ଡେରିରେ ସେ ଘରକୁ ଫେରୁଛନ୍ତି, କୁଆଡ଼େ ଯାଇଥିଲେ କେଜାଣି । କହୁଥିଲେ ତ ଜରାଶ୍ରମ ଯିବେ ବୋଲି ।

ପୋଷାକ ବଦଳେଇ ମୁହଁ ହାତ ଧୋଇ ରାଘବ ବାବୁ ଖାଇବା ଟେବୁଲ୍‌ରେ ବସିଲେ । ଅଭୟା ଖାଇବାକୁ ବାଢ଼ି, ନିଜେ ବି ଖାଇବାକୁ ବସିଲେ ।

ଆର୍ଯ୍ୟ ଖାଇଲାଣି ଅଭୟା ?

ଖାଇ ନିଜ ଘରେ ବସିଛି ଲାପ୍‌ଟପ୍ ଧରି । ତମ ପାଇଁ ଅପେକ୍ଷା କରିଥିଲା । ଡେରି ହେବା ଦେଖି ମୁଁ ତାକୁ ବାଧ କଲି ଖାଇନେବା ପାଇଁ । ତମକୁ ତ ବେଳ ହୁଏନି ଘରକୁ ଜଲ୍‌ଦି ଟିକିଏ ଆସିବା ପାଇଁ । ପିଲାଟା ଚାରିଦିନ ହେଲା ଆସିଲାଣି ଘରକୁ -

ଥରୁଟିଏ ବି ତା' ସହିତ ଏକାଠି ବସି ଖାଇନ କି ଦି'ପଦ କଥା ହେଇନ । ଅଭୟା ଅଭିଯୋଗ ବାଢ଼ିଲେ ।

କ'ଣ କରିବି କୁହ, ମୋ କାମ ହିଁ ସେଇୟା ତମେ ଜାଣ । କାମ ସରୁନି ମୋଟେ । ଏଇ ଦେଖ । ମୁଁ ଘରକୁ ଫେରିବାକୁ ବସିଛି, ଆମ ସ୍ୱେଚ୍ଛାସେବୀ 'ସହାୟ' ସଂସ୍ଥାର ସଭ୍ୟ ଜଣେ ସମ୍ଭ୍ରାନ୍ତ ଶ୍ରେଣୀୟ ଭଦ୍ରମହିଳାଙ୍କୁ ଏଇ ପାଖ ଜଙ୍ଗଲ ରାସ୍ତାରୁ ଉଦ୍ଧାର କରି ଆଣିଲେ । ଗୋଟାଏ ଗାଡ଼ି ଦୁର୍ଘଟଣାରେ ଭଦ୍ରମହିଳାଙ୍କ ତିନି ଆତ୍ମୀୟଙ୍କ ସହିତ ନିଜର ପୁଅ ଓ ସ୍ୱାମୀଙ୍କର ମୃତ୍ୟୁ ହୋଇଯାଇଛି ସ୍ପଟ୍‌ରେ । ଅବଶ୍ୟ ଏଇ ମହିଳାଙ୍କୁ 'ସହାୟ' ମାସେ ତଳେ ହସ୍‌ପିଟାଲରେ ଆଡ୍‌ମିଟ କରି ରଖିଥିଲା – ଆଜି ତାଙ୍କୁ ହସ୍‌ପିଟାଲ କର୍ତ୍ତୃପକ୍ଷ ଘରକୁ ଛାଡ଼ିଦେଲେ ଆବଶ୍ୟକୀୟ ଚିକିତ୍ସା ଦେଇ । ଦୁଃଖର ବିଷୟ କ'ଣ ଜାଣିଛ ଅଭୟା, ମହିଳା ଜଣକ ସଂପୂର୍ଣ୍ଣ ଭାବେ ମାନସିକ ସନ୍ତୁଳନ ହରେଇଛନ୍ତି – ପାଖରେ କେହି ନାହିଁ ସଂଭାଳିବାକୁ.....

"ମାନେ, ତାଙ୍କର ସବୁ ଆତ୍ମୀୟ..... ବଂଧୁ ବାଂଧବ, ପିଲାଏ ? ଅଭୟା ପଚାରିଲେ ।

ସେଇ କଥା ତ କହୁଛି, ମଣିଷ କେତେ଼ ଅସହାୟ ଜୀବ ସତରେ । ସ୍ୱାର୍ଥପର ବୋଲି ତ ଜାଣିଥିଲି ହେଲେ ଏତେ ନିଷ୍ଠୁର ଏବଂ ଅମଣିଷ ହେଇପାରେ ମଣିଷ, କେହି ଆସିଲେନି ତାଙ୍କୁ ନେବା ପାଇଁ । ସନ୍ତାନ ତ ସେଇ ଗୋଟିଏ, ଯା'ର ମୃତ୍ୟୁ ହେଇଯାଇଛି ଦୁର୍ଘଟଣାରେ । ବଂଧୁବାଂଧବ ତାଙ୍କୁ ନେବାକୁ ଚାହିଁଲେନି ନିଶ୍ଚୟ । ଡାକ୍ତରଖାନା ଆଉ କେତେଦିନ ରଖିଥାନ୍ତା ନିଜ ଦାୟିତ୍ୱରେ ? 'ସହାୟ' ତାଙ୍କୁ ସହାୟତା ଯୋଗେଇଥିଲା ତେଣୁ । କର୍ତ୍ତୃପକ୍ଷ ତାଙ୍କୁ ହସ୍ତାନ୍ତର କରିଦେଇ ମୁକ୍ତ ହେଲେ ଦାୟିତ୍ୱରୁ । ଅଥଚ 'ସହାୟ' ଅଗତ୍ୟା ଆମ 'ଜରାଶ୍ରମ' ରେ ରଖିବାକୁ ବାଧ ହେଲା, ଏଣିକି ମୋ' ଦାୟିତ୍ୱ ବଢ଼ିଲା । ମାନସିକ ରୋଗୀ ତ ଥିଲେ ଆଗରୁ, ଏବେ 'ସରସ୍ୱତୀ' ତାଙ୍କ ସହିତ ଯୋଡ଼ି ହୋଇଗଲେ । ଡା. ସାମନ୍ତଙ୍କୁ ସେଇଥିପାଇଁ ଅପେକ୍ଷା- ସେ ଆସିଲେ "ଏଇ ମାନସିକ ରୋଗୀମାନଙ୍କର ବ୍ୟବସ୍ଥା କରାଯିବ ।"

ତୁମ ଦାୟିତ୍ୱ ତ ଯାହା ଯେମିତି ବଢ଼ିଲା, ଆମ ଆଶ୍ରମ ଆଉ ହେମଲତାର ଦାୟିତ୍ୱ କିନ୍ତୁ ବଢ଼ିଗଲା । ବିଚରା ହଇରାଣ ହୋଇଯିବେ । ଆଗରୁ ତ ମେଣ୍ଟାଲ୍ ପେସେଣ୍ଟ୍ ଇନ୍ଦୁଖୁଡ଼ି ଥିଲେ, ନୂଆ ରୋଗୀ ସରସ୍ୱତୀ ବି ଯଦି ସେହିଭଳି ରୋଗୀ ଆମ ଲକ୍ଷ୍ମୀଟା ହଇରାଣ ହେଇଯିବ ନିଶ୍ଚୟ ।

ଅଭୟା ସବୁ ଶୁଣିସାରି ବ୍ୟସ୍ତତା ପ୍ରକାଶ କରି କହିଲେ, "ଆଚ୍ଛା ଇନ୍ଦୁଖୁଡ଼ୀଙ୍କ ଅବସ୍ଥା କିମିତି ଅଛି ଯେ ? ଡକ୍ଟର ସାମନ୍ତ ଦେଖିଲେଣି ? 'ନା', ଦେଖି ନାହାନ୍ତି

ଆହୁରି । ବାହାରକୁ ଯାଇଛନ୍ତି ଡକ୍ଟର ସାମନ୍ତ ପନ୍ଦର ଦିନ ହେଲା- ଆଉ ସପ୍ତାହକ ପରେ ସେ ଫେରିବେ ବୋଲି ଫୋନ୍ କରିଥିଲେ । ତାଙ୍କୁ ସଂଭାଳିଛନ୍ତି ହେମାଲତା ଦେହିକା । ମାନସିକ ରୋଗୀଙ୍କ ତତ୍ତ୍ୱାବଧାନ ନେବା ଭାରି କଷ୍ଟକର ଅଭୟା, ଡକ୍ଟର ସାମନ୍ତଙ୍କ ଆସିବା ବାଟକୁ ମୁଁ ଚାହିଁଛି । କହିଲେ ରାଘବ ବାବୁ । "ସବୁଠୁ ସାଂଘାତିକ ଅବସ୍ଥା ତାଙ୍କରି । ନିଜ ମୁହଁ ଲୁଚେଇ ବେଳେବେଳେ ଏମିତି ଚିତ୍କାର କରୁଛନ୍ତି ଯେ, ବିକଳ ଜାଗୁଛି । ମଣିଷକୁ ଦେଖିଲେ ହିଁ ତାଙ୍କୁ ଭୟ । ଥରି ଥରି ଅଚେତ୍ ହେଇଯାଉଛନ୍ତି ବି । ଦିନ ରାତି ନିଜ ପଣତନକାନି ହେଉ କି ତକିଆ ଭିତରେ ମୁହଁ ଲୁଚେଇ ରହିଛନ୍ତି । ସାଂଘାତିକ ଭାବେ (ମାନସିକ) ଆଘାତ ପାଇଲେ ମଣିଷ ଏମିତି ନିଜ ମାନସିକ ଭାରସାମ୍ୟ ହରେଇ ବସେ ।

ଲକ୍ଷ୍ମୀଟା କେମିତି ସଂଭାଳିଛି ତାଙ୍କୁ କେଜାଣି ?

ତାକୁ ହିଁ ତ ଯାହା ମାନୁଛନ୍ତି ଇନ୍ଦୁମତୀ । ଅଲେଖ ଓ ଧରଣୀକୁ ନେଇ କାଲି ମୁଁ ଯାଇଥିଲି ତାଙ୍କୁ ଟିକିଏ ଦେଖି ଆସିବି ବୋଲି ଯେ, ଚିତ୍କାର ଆରମ୍ଭ କରିଦେଲେ "କିଏ ଆସିଛ ? କାହିଁକି ଆସିଛ ? ଝିଅଟାକୁ ତ ମାରି ଖାଇଦେଲ । ଆଉ କଣ ଅଛି ଯେ, ସବୁ ତ ସରିଗଲା ମୋର..... ଏମିତି କେତେ କ'ଣ ବାହୁନା । ଦୁଃଖ ଲାଗୁଛି ଅଭୟା ତାଙ୍କ ବିକଳ ଅବସ୍ଥା ଦେଖିଲେ ।

"ମୋ ମାନୁ କେତେ ନେହୁରା ହେଇ କାନ୍ଦିଲା, ସମସ୍ତେ ଥିଲେ, ମୋ ମାନୁକୁ ଘୋଷାଡ଼ି ନେଇଗଲେ ପାଞ୍ଚଟା ଅସୁର । ଘେରିଗଲେ, ଅଂଧାର ହେଇଥିଲା, ଚିହ୍ନି ପାରିଲିନି କାହାକୁ । ତଥାପି ଧାଇଁଗଲି ଝିଅକୁ ଛଡ଼େଇ ଆଣିବି ବୋଲି ଯେ ଜଣେ ଅସୁର ମଦ ବୋତଲରେ ମୋ ମୁଣ୍ଡକୁ ବାଡ଼େଇଦେଲା । ମୁଁ ଜ୍ଞାନ ହରେଇ ପଡ଼ିଗଲି । ଚେତା ଆସିଲା ବେଳକୁ ଝିଅ ମୋର ଚିତ୍କାର କରୁଥାଏ ବୋଉ ବୋଉ ବୋଲି । ମୁଁ ଯନ୍ତ୍ରଣାରେ ଛଟପଟ ହେଉଥାଏ ଦେଖୁନ..... ମୋ ମୁଣ୍ଡରେ ଘା' ଏଯାଏ ଶୁଖିନି । ମାନୁ ବିକଳ ହୋଇ କହୁଥାଏ ମୋତେ ବଞ୍ଚା, ଏ ବୋଉ..... । ଧୀରେ ଧୀରେ ତା' ବୋଉ ଡାକ ଆଉ ଶୁଭିଲାନି । ତାକୁ ଅସୁରମାନେ ପୁଳା ପୁଳା କରି ଖାଇଗଲେ । ସେ ମରିଗଲା, ତାକୁ ମାରିଦେଲେ ସେମାନେ । ମୋ ମାନୁ ଲୋ..... ସେ କି କାନ୍ଦ ଅଭୟା । ମୁଁ ଠିଆ ହୋଇ ପାରିଲିନି ଆଉ ଚାଲି ଆସିଲି । ଭୂଇଁ ସାଉଁଟି କାନ୍ଦୁଥିଲା ଇନ୍ଦୁମତୀ । ହିଂସ୍ରପଶୁଙ୍କ ଉଦଗ୍ର କାମନା ଆଗରେ ହାରିଗଲା ଇନ୍ଦୁଝିଅ । ମା' ଅଭୟାଙ୍କ ଆଖି ଛଳଛଳ ହୋଇଯାଉଥାଏ । ବଡ଼ ନୃଶଂସ, ଛାତିଥରା ଦୃଶ୍ୟ ମା'ର ଆଖି ଆଗରେ ଧର୍ଷଣ ଭଳି ଘୃଣ୍ୟ, ଭୟାନକ ଦୃଶ୍ୟ ଆଉ କଣ ଥାଇପାରେ ! ଯେ କୌଣସି ମା' ନିଜର ମାନସିକ ସନ୍ତୁଳନ ହରେଇ ବସିବା ସ୍ୱାଭାବିକ । ପୁଣି ଝିଅକୁ ବଞ୍ଚେଇ ନ ପାରିବାର

ଅପରାଧବୋଧ । ଦୀର୍ଘଶ୍ୱାସ ପକେଇ ପଣତରେ ଆଖି ପୋଛିଲେ ଅଭୟା । ଯାଠୁ ବଳି ପାଶବିକ ଆଉ କିଛି ହୋଇ ନ ପାରେ । କଣ ପାଇଁ ଯେ ମଣିଷ ଏମିତି ପଶୁ ପାଲଟୁଛି.....

"ଏଥିବୁ ମୂଳରେ ନିଶାପାଣି, ଡ୍ରଗ୍‌ସ୍ ହିଁ ଦାୟୀ । ପାପପୁଣ୍ୟର ବିଚାର ନାହିଁ କ'ଣ କରୁଛନ୍ତି, କାହିଁକି କରୁଛନ୍ତି । କ'ଣ ପାଇବେ ବୋଲି କରୁଛନ୍ତି - ସେ ବିଷୟରେ ଆମ ଯୁବକ ମାନଙ୍କ ଧାରଣା ନାହିଁ । ଜୀବନର ସ୍ୱପ୍ନ ନାହିଁ, ଥିଲେବି ତା'ର ମୂଲ୍ୟ ନାହିଁ ସେମାନଙ୍କ ପାଖରେ - ଥିଲେ ସିନା ବାଟ ଦିଶିବ । ନିଶା ଖାଇ ଅପରାଧ କରିବା ତାଙ୍କ ପାଇଁ ଖୁବ୍ ସହଜ ହୋଇଯାଉଛି । ବାଟର ଠିକଣା ବି (ଭୁଲିହେଇ ଯାଉଛି) ରହୁନି । ବିଦ୍ୟା ନାହିଁ, ହାତରେ କାମ ନାହିଁ, ଭଲ ବାଟ ଦେଖେଇବାକୁ ବି କେହି ଶୁଭାନୁଧ୍ୟାୟୀ ନାହାନ୍ତି । ଯୌବନ ଅଛି, ତାରୁଣ୍ୟର ଉଦ୍ଦାମତା ଅଛି - ଆକଟ କରିବାକୁ କେହି ନାହାନ୍ତି । ମନ ଡାକୁଛି ପାପ କର - ଡେଇଁ ପଡୁଛନ୍ତି ଅଂଧାର ଭିତରକୁ ।" ରାଘବ ବାବୁ ଟାୱେଲ୍‌ରେ ହାତ ମୁହଁ ପୋଛି କଥା ସାରିଲେ, "ଏଇ ତ ଆମ ଦେଶର ଆଜିର ଅବସ୍ଥା ଅଭୟା ।" "ଏ ଯାଏ ବି କିଏ ଆସିଲେନି ତାକୁ ଖୋଜିବାକୁ ନା ?", ଅଭୟା ଜାଣିବା ପାଇଁ ପଚାରିଲେ ।

"ଆଉ କିଏ ଆସିବ କହୁନ, ଇନ୍ଦୁମତୀ ମଧ୍ୟବିତ୍ତ ପରିବାରର ବୋହୂ ଥିଲା । ଶିକ୍ଷିତା, ମାନୁ ତା'ର ଏକମାତ୍ର ସନ୍ତାନ । ସ୍ୱାମୀ ପରିତ୍ୟକ୍ତା ଯେହେତୁ, ଶାଶୂଘର କେହି ତା' ଦାୟିତ୍ୱ ନେଇନଥିବେ । ସେ ଗୋଟାଏ ପ୍ଲେ-ସ୍କୁଲ୍‌ରେ ଟିଚର ଥିଲେ । ଚାକିରି କରି ଝିଅଟିକୁ ମଣିଷ କରିବାର ଉଦ୍ଦେଶ୍ୟ ଥିଲା ନିଶ୍ଚୟ । ହେଲେ ଆମ ସାମାଜିକ ଅବସ୍ଥା ଓ ବ୍ୟବସ୍ଥା ତ ଏତେ ଉନ୍ନତ ହୋଇନି । ବେସାହାରା ନାରୀକୁ ଯଥା ସମ୍ଭବ ସାହାଯ୍ୟ କରିବା ମନୋବୃତ୍ତି ବି ନାହିଁ କାହାର । ଝିଅକୁ ନେଇ ଏକୁଟିଆ ରହୁଥିଲେ, ସାଧାରଣ ଭଡ଼ାଘର । ଝିଅଟା ପଢୁଥିଲା ମାଟ୍ରିକ୍ । ଅମଣିଷ ପଶୁଙ୍କ ହାବୁଡ଼ରେ ପଡ଼ିଯାଇଛି । କେହି ସାହା ଭରସା ନାହିଁ, ଯେତେବେଳେ ବର୍ବରତା ସୀମା ଟପିଛି.... 'କାହିଁକି ଏମିତି ସବୁ ହେଉଛି କହିଲ ।' ଦୟାମାୟା ବୋଲି କିଛି ନାହିଁ । ସମସ୍ତେ ପଶୁ.... ଦୋଷୀ ଅପରାଧ କରି ତ ଖସି ଯାଇଥିବ ? କି ଭୟଂକର ସମୟ ଭିତରେ ଆମେ ଗତି କରୁଛେ ସତରେ । ମନେ ପଡ଼ିଗଲା ଅଭୟାଙ୍କର ଲକ୍ଷ୍ମୀ କଥା, କି ଦୁଃସ୍ଥିତି ଭିତରେ ଗତି କରି ନଆସିଛି ସେ ସତରେ, ଧନ୍ୟ କହିବାକୁ ହେବ, ତାର ସାହସକୁ ।"

"ଘଟଣାର ସାକ୍ଷୀ ତ କେବଳ ଇନ୍ଦୁମତୀ ନିଜେ । ସିଏ ତ ମାନସିକ ସନ୍ତୁଳନ ହରେଇ ବସିଛି । ରାଘବ ବାବୁ କହିଲେ । ବୁଝିଲ ଅଭୟା, ଏ ଦେଶର ଆଇନ୍‌କାନୁନ୍ ବୋଲି କିଛି ନାହିଁ । ପୂରାପୂରି ସିଷ୍ଟମ୍‌ଟା ଖତରା ପାଲଟି ଯାଇଛି । ଉଜ୍ଜ୍ୱଳ, ସୁସ୍ଥ ଭବିଷ୍ୟତର ଆଶା ମଧ୍ୟ ନାହିଁ । ସମାଜରେ ଅପରାଧ ପ୍ରବଣତା ଦିନକୁ ଦିନ ବଢୁଛି । ପିଲାଙ୍କ ଭିତରେ

ଆମେ ଅଭିଭାବକମାନେ ଆତ୍ମବିଶ୍ୱାସ ପୂରେଇବାରେ ଅକ୍ଷମ ହେଇଯାଇଛୁ । "ଆତ୍ମବିଶ୍ୱାସ କିଏ କିମିତି ପୂରେଇବ କହୁନ, ପାରିବାରିକ ବନ୍ଧନ ତ ଦୁର୍ବଳ । ଚାକିରି ମନସ୍କ ବାପାମାଁ ପିଲାଙ୍କୁ ବେଶି ସମୟ ସାନ୍ନିଧ ଦେବାରେ ଅସମର୍ଥ । ସେଥିରେ ଆଧୁନିକ ଜୀବନ ଧାରା, ଖୋଲାମେଲା ସବୁ । କହିଲେ ଅଭୟା, ଆମବେଳେ ଅନେକ ପ୍ରକାରର କଟକଣା ଥିଲା, ବାପାବୋଉଙ୍କ ଲଗାମ ଥିଲା । ତମେ ତାକୁ ଯାହା କୁହ ଗୋଟାଏ ପ୍ରକାର ଭଲ ହିଁ ଥିଲା । ସେତେବେଳେ କାହିଁ ଏତେ ଆତ୍ମହତ୍ୟା, ଅପରାଧ, ନିଶା ଚୋରିନାରୀ ତ ନଥିଲା ନା, ଅଭୟା ଯୁକ୍ତି ବାଢ଼ିଲେ ।

ରାଘବବାବୁ ସ୍ତ୍ରୀଙ୍କ ଯୁକ୍ତିକୁ କାଟିବା ପାଇଁ ଚାହିଁଲେନି । ସେକାଳ ହେଉ କି ଆଜିର କାଳ ସବୁଥିରେ କିଛି କିଛି ଅଭାବ ରହିଯାଉଛି । ଭୁଲ୍‌ଭଟକା ତ ଅଛି । ସମୟ କ୍ରମେ ତ ତାକୁ ସଜାଡ଼ିବା ଉଚିତ । ଅଥଚ ଆମେ ତାକୁ ସୁଧାରିବାକୁ ପ୍ରୟାସ ହିଁ କରୁନୁ । ଦୁର୍ଭାଗ୍ୟକୁ ଡାକି ଆଣୁଛୁ । କହି ହେବନି, ସମୟ ନିଜେ ଏଇ ଅପରିଣାମଦର୍ଶୀ ସମାଜକୁ କୋଉ ମାର୍ଗ ଦେଖେଇବ !

କଥା ଲହସରେ ସମୟ ଜାଣି ହୋଇ ନଥିଲା । ଦାଣ୍ଡ ଦୁଆରେ କାମବାଲୀ ଦୁଆର ଖଟ୍‌ଖଟ୍ କଲା- ଅଭୟା ଉଠିଗଲେ ଦୁଆର ଖୋଲିବାକୁ । ପାଞ୍ଚଟା ବାଜୁଥିଲା କାନ୍ଥ ଘଣ୍ଟାରେ ।

ସେଦିନ, ନିତିଦିନର ସକାଳଟା ଟିକିଏ ଭିନ୍ନ ଥିଲା, ବିଶେଷ କରି ଲକ୍ଷ୍ମୀ ପାଇଁ ।

ହାତରେ ଚା' କେଟ୍‌ଲି ଧରି ସୁଲତା ତରତର ହୋଇ ବାହାରି ଆସୁଥିଲା, କେଶବ ମଉସାଙ୍କୁ ଚା' ଦେଇ, ନାରଣ ଅଜା ଓ ଶିବ ମଉସାଙ୍କ ପାଖକୁ ଯିବ ବୋଲି, ସେମାନେ ଅସୁସ୍ଥ, ନିଜେ ଯାଇ ପିଇପାରିବେନି । ହଠାତ୍ ଆଖିରେ ପଡ଼ିଗଲା ଲକ୍ଷ୍ମୀ ତଳୁ ଉପରକୁ ଉଠୁଥିଲା- ଆଖିରେ ସକାଳ ସୂର୍ଯ୍ୟର ଝଲକ, ମୁହଁରେ ଫୁଟିଲା ଫୁଲର ଆଭା, କୋଉ ଗୋଟାଏ ଗୀତର ସୁର ଗୁଣୁଗୁଣଉଥିଲା ବୋଧେ । ଖୁସି ଖୁସି ମିଜାଜ ନିଶ୍ଚୟ..... "କିରେ ଆଜି କ'ଣ ଭାରି ଫୁଲକିତିଆ ଦିଶୁଛୁ ସକାଳୁ ସକାଳୁ ? ଉତ୍ତରରେ ମୁଠାଏ ଫୁଟନ୍ତ ଢ଼ୁଲଫୁଲର ହସ ସୁଲତା ମାଉସୀ ହାତରେ ଅଜାଡ଼ି ଦେଲା ଲକ୍ଷ୍ମୀ ।

ସତରେ ତା'ମନ ଆଜି ଉଷତ ଥିଲା । ସୁଲତା ମାଉସୀ ଆଖିରେ ସେତକ ପଡ଼ିଯାଇଛି । ସେ ଲୁଚେଇ ପାରିନି । ସ୍ୱତଃସ୍ଫୂର୍ତ୍ତ ଆନନ୍ଦକୁ କିଏ କ'ଣ ଲୁଚେଇପାରେ ! ହେଲେ ଟିକିଏ ଅସୁବିଧା, ଏବେ ଯାଇ ବୋଉ ଆଗରେ ବଖାଣିଦେବ ସୁଲତା ମାଉସୀ । ସୁବିଧା ଦେଖି ବୋଉ ପ୍ରଶ୍ନ କରିବ ତାକୁ । ସବୁ ଅତୁଆ ଏଇଠି । ସୁଲତା ମାଉସୀ ଆଖିରେ ଯଦି ଧରାପଡ଼ିଗଲା ନା, ବୋଉ ଆଖିକୁ କେମିତି ଲୁଚେଇବ ? ? ବୋଉ

ତାର ଉଖାରି ଉଖାରି କାଢ଼ିନେବ ତା'ଠୁ ସବୁ କଥା । ତା'ଛଡ଼ା ଲୁଚେଇବାର ବି କଣ ଅଛି ଯେ ? କାହିଁକି ଲୁଚେଇବ । ବୋଉ କ'ଣ ଡା. ସାମନ୍ତକୁ ଚିହ୍ନିନି ? ସେ ତ ଆଉ ନୂଆ ମଣିଷ ନୁହଁନ୍ତି । ହେଲା, ସେ ଏବେ ବି'ସପ୍ତାହ ହେଇଯିବ ନଥିଲେ । ଦିଲ୍ଲୀ ଯାଇଥିଲେ ତାଙ୍କର କନ୍‌ଫରେନ୍‌ସ୍ ପାଇଁ ଫେରିଛନ୍ତି ରାତିରେ । ଏଇ ଫେରିବା ଖବରଟା ସେ ଜଣେଇବା ପାଇଁ ଫୋନ୍ କରିଥିଲେ ବାସ୍ । ମନକୁ ମନ ପ୍ରଶ୍ନୋତ୍ତର କଲା ଲକ୍ଷ୍ମୀ... ହେଲେ ଏତେ ସକାଳୁ, ରାତି ନ ପାହୁଣୁ ? .....କ'ଣ ହୋଇଗଲା ସେଇଠୁ । ନିଦ ଭାଙ୍ଗି ଯାଇଥିବ । ହାତରେ କିଛି କାମ ନଥିବ । ବେଡ୍ ଟି ଖାଉ ଖାଉ ମନେପଡ଼ି ଯାଇଥିବ ତ, ହାତରେ ଥିବା ମୋବାଇଲ୍‌ରୁ ନମ୍ବର ଡାଏଲ୍ କରି ଦେଇଥିବେ....."

.....ସେଇକଥା ତ ପଚାରୁଛି, ଏତେ ସକାଳୁ ତୁ ତାର ମନେପଡ଼ିଲୁ କାହିଁକି, ତୁ କ'ଣ କି ତାର ଏମିତି ?

ସତେ ତ , ସେ ତାଙ୍କର କଣ କି ? ?

ଲକ୍ଷ୍ମୀ ତକିଆ ଭିତରେ ମୁହଁମାଡ଼ି, ଉତ୍ତର ଖୋଜୁ ଖୋଜୁ ଝାଳେଇଗଲା, କଣ ଉତ୍ତର ଦେବ ସେ ? ? ହେ ଭଗବାନ ! ସେ କାହିଁକି ସୁଲତା ମାଉସୀ ହାବୁଡ଼ରେ ପଡ଼ିଲା । ସତକୁ ସତ କଣ ଉତ୍ତର ଦେବ ସେ ବୋଉ ପଚାରିଲେ ? ଏମିତି ଅଜବ ପ୍ରଶ୍ନ ସବୁ କାହିଁକି ପଚାରେ ବୋଉ କେଜାଣି । ଉତ୍ତର କଣ ଦେବ ସେ..... ଲକ୍ଷ୍ମୀ.....ଏ ଲକ୍ଷ୍ମୀ..... ଲକ୍ଷ୍ମୀ....., ମଲା ଯା, ଏଇଲେ ପରା ତଳକୁ ଯାଇଥିଲୁ, ପୁଣି ଶୋଇପଡ଼ିଲୁଣି...କଣ ହେଲା କି ତୋର... ".....କେଜାଣି.... ମୁଁ ଜାଣେନା..... ଅପ୍ରସ୍ତୁତ ଭାବେ କଣ କହିଦେଇ ଉଠିପଡ଼ିଲା ବିଛଣାରୁ ଲକ୍ଷ୍ମୀ । ଆରେ, ଯାଃ ସାମ୍ନାରେ ବୋଉ ହିଁ ଠିଆ ହୋଇଛି ଜଳଖିଆ ଧରି ।

"ଶୋଇ ପଡ଼ିଥିଲୁକି, କଣ ଏଣ୍ଡେତେଣ୍ଡୁ କହୁଛୁ ଯେ ଏମିତି ?

କଣ କହିଲିକି ? ପଚାରିଦେଇ କଥା ବୁଲେଇଲା । ଏତେ ସକାଳୁ ପରଟା ତରକାରୀ କରିସାରିଲୁଣି ବୋଉ ? ମାନିବାକୁ ହେବ ତୋତେ । ଝିଅ ହାତକୁ ପ୍ଲେଟ୍ ବଢ଼େଇ ପଚାରିଲା ହେମ ତଳକୁ କାହିଁକି ଯାଇଥିଲୁ ଯେ, କିଏ ଫୋନ୍ କରିଥିଲା ? ସୁଲତା କହିଲା ତ, ସେଇକଥା ପଚାରୁଛି ତୋତେ, ପୁଣି କିଏ ନୂଆଁ ମଣିଷ ଆସିଲେ କି କଣ ।

"ନାଇଁ, ନୂଆଁ ମଣିଷ ନୂଆଁ ଅତିଥି କେହି ଆସୁନାହାନ୍ତି ପୁରୁଣା ମଣିଷ ହିଁ ଫୋନ୍ କରିଥିଲେ । ଆଶ୍ରମ ବାସିନ୍ଦା କେମିତି ଅଛନ୍ତି, ଜାଣିବା ପାଇଁ ।

ପୁରୁଣା ମଣିଷ କିଏ ମ ? କାଲି ତ ରାଘବ ବାବୁ ଆସି ଯାଇଛନ୍ତି । "ତ:

ସାମନ୍ତ, ଗଲା ରାତିରେ ଦିଲ୍ଲୀରୁ ଫେରିଲେ ତ, ଆଜି ଆସିବେ ସେ ରେଗୁଲାର୍ ଭିଜିଟ୍‌ରେ", ଚଳଖିଆ ଖାଉ ଖାଉ ଲକ୍ଷ୍ମୀ କହି ପକେଇଲା ଅଧା ଗିଳା ଅବସ୍ଥାରେ ତଳକୁ ମୁହଁ ପୋତି ।

ହେମ ନିରେଖି ଚାହିଁଥିଲା ଝିଅ ମୁହଁକୁ । ଚେଷ୍ଟା କରୁଥିଲା, କିଛି ପଢ଼ିବ ବୋଲି ସେଇ ମୁହଁରୁ । ଲକ୍ଷ୍ମୀ ମୁହଁର ରଂଗ କିଛି ସୂଚନା ଦେଉଥିଲା ଯଦିଓ, ହେମ ଇତସ୍ତତଃ ହେଉଥିଲା ଅନୁମାନ ଲଗେଇବାକୁ । ଲକ୍ଷ୍ମୀ କଥା ବୁଲେଇ ବାପାଙ୍କ କଥା ପଚାରିଲା ।

ହେମଲତା ଅଗତ୍ୟା ଦି' ଚାରିପଦ ଭଲମନ୍ଦ ପଚାରି ଉଠିଗଲା ନିଜ କାମରେ । ତାକୁ ମୁହୂର୍ତ୍ତେ ବେଳ ନଥାଏ ନିଃଶ୍ୱାସ ନେବାକୁ । ଏତେ ନିଘା ରଖିବାକୁ ତାର ବେଳ କାହିଁ ଏବଂ ସ୍ୱସ୍ତିରେ ନିଃଶ୍ୱାସ ମାରିଲା- ଲକ୍ଷ୍ମୀ; ବଞ୍ଚିଗଲା ବୋଉ ପାଖରୁ ଆଜି ।

ହେଲେ ମନ ଉଡୁଥିଲା ତା' ବାଟରେ । ତାକୁ ସେ ଅଟକେଇ ପାରୁନଥିଲା । ଘଣ୍ଟାରେ ଆଠଟା ବାଜୁଛି । ଦଶଟା ବେଳେ ଆସିବେ ବୋଲି କହିଛନ୍ତି ଡଃ ସାମନ୍ତ । ଝରକା ଦେଇ ବାହାରକୁ ଚାହିଁଲା, କୃଷ୍ଣଚୂଡ଼ା ଗଛରେ ନାଲି ନାଲି ଫୁଲ ଫୁଟି ଆସୁଛି । ପଳାଶ ଫୁଲ ନାଲି ଧରିଆସୁଛି.... ବସନ୍ତ ଆସୁଛି । ଉଚ୍ଛନ୍ନ ବସନ୍ତ... କେବଳ ବାହାରେ ତା'ର ସମାରୋହର ସୂଚନା ମିଳୁଛି, ତା' ନୁହେଁ । ତା' ଭିତରେ ବି ବସନ୍ତର ଆଗମନୀ-ବାର୍ତ୍ତାର କୋଳାହଳ । ତା' ଚେତନ ମନର ବନ୍ଦ ଝରକା ଖୋଲିଗଲା - ନିଜକୁ ହଜେଇ ଦେଉଥିଲା ସେ, ସେଇ କୋଳାହଳ ଭିତରେ କ୍ରମଶଃ ଇଚ୍ଛା ହେଉଥିଲା, କୃଷ୍ଣଚୂଡ଼ାର ପରାଗରେଣୁ ବୋଲି ହୋଇଯିବ ଦେହମୁହଁରେ । ବାହାରେ ଅଲେଖ ଡାକିଲା ଦେଇ.... ଦେଇ... ଆବେଶ କଟିଗଲା ଲକ୍ଷ୍ମୀର ହଠାତ୍ । କ'ଣ ହେଲା ? ଗଲା କାଲିଠୁ କିଛି ଡାକ ଆସିଛି । ଥରେ ଦେଖି ଦିଅନ୍ତନି । ମୁଁ ଡାଇରି କରିଦିଅନ୍ତି । 'ହଉ ଚାଇ....ମୁଁ ଯାଉଛି' ।

ଅଗତ୍ୟା ଉଠିଲା ଲକ୍ଷ୍ମୀ ।

ସକାଳ ଦଶଟାରେ ସବୁଥର ଭଳି ଡା. ସାମନ୍ତଙ୍କ ଭିଜିଟ୍‌ରେ ଆସିବା କଥା କିନ୍ତୁ ସେ ଆସିପାରି ନ ଥିଲେ । କ୍ଲିନିକ୍‌କୁ ଜରୁରୀ ଡାକରା ପାଇ ଚାଲିଗଲେ । ସଂଧ୍ୟା ବେଳକୁ ତାଙ୍କୁ ସାଂଗରେ ନେଇ ମୁଁ ପହଞ୍ଚିବି - ବୋଲି ରାଘବବାବୁ ଫୋନ୍ କରି ଜଣାଇ ଦେଲେ ଲକ୍ଷ୍ମୀକୁ । ହଠାତ୍ କୁଆରିଆ ଭାବନାରେ ଭଟା ପଡ଼ିଗଲା ଲକ୍ଷ୍ମୀର ।

ଲକ୍ଷ୍ମୀକୁ ଆଉ ଅପେକ୍ଷା କରିବାକୁ ପଡ଼ିଲାନି ସତ, ହେଲେ ପ୍ରତୀକ୍ଷାର ଅଧୀରତା ତ କମିଲାନି । ମନେ ମନେ କୋଚିଂ ସେଣ୍ଟର୍ ନଯାଇ ବଳକା ପଡ଼ିଥିବା ଅଫିସ୍ କାମ ତକ ସାରିଦେବାକୁ ସ୍ଥିର କରି, ଅଫିସ୍‌ରେ ବସି ଫାଇଲ୍ ଖୋଲି.... ଅପେକ୍ଷା କଲା

ସଂଧ୍ୟାକୁ । ଭାବିଲା, ଏଇ ପ୍ରତୀକ୍ଷାରେ ବି ଆହ୍ଲାଦ ଅଛି । ଆହ୍ଲାଦ ଅଛି ନିରୋଳାରେ ବସି କାହା କଥା ଭାବିବାକୁ । କାହା କଥା ଆଉ ? ନିଜର ଏକାନ୍ତ ଆପଣା ମଣିଷ କଥା । ହଁ, ଆପଣା ମଣିଷ, ଏଯାଏ ତା' ମନ ଅଗଣାରେ କାହାର ବି ଛାଇ ପଡ଼ିନଥିଲା । କେବେ ଆଉ କେମିତି କେଜାଣି, ଅଜଣା ମଣିଷଟିଏ କୋଉ ବାଗରେ ପଶିଆସି ତା'ମନ ଭିତରେ 'ଆପଣା ମଣିଷ' ହୋଇ ଆସନ ପାତି ବସିଗଲାଣି ସେ ଲକ୍ଷ୍ୟ ହିଁ କରିନି । ଭାବିଲେ ତ ତା' ନିଜ ଦେଖା ପୃଥିବୀରେ ବାପାବୋଉଙ୍କୁ ଛାଡ଼ିଦେଲେ ଆପଣାର ବୋଲି କେହି ନଥିଲେ ଯିଏ ତା' ମନପ୍ରାଣ ଚେତନ ଅବଚେତନକୁ ଆବୋରି ରହିବ ଅହର୍ନିଶ ଆଉ ସେ ତାର ସଂଜସକାଳର ପ୍ରତିଟି ମୁହୂର୍ତ୍ତକୁ ଅର୍ପିଦେବ ତା'ପାଇଁ । ଆଖି ବୁଜିଲେ ବି ତାକୁ ଦେଖିବ, ନିଦଗଲେ ବି ସ୍ୱପ୍ନ ଦେଖିବ ତା'ପାଇଁ, ତାକୁ ନେଇଁ । ଇଏ ଏକ ଭିନ୍ନ ଅନୁଭବ । ପୁଲକ ଆଣିଦେଲା ଭଳି ।

ଏଇ ଭିନ୍ନ ଅନୁଭବକୁ ସେ କେବେ କୋଉ ବାଂଧବୀ ସହିତ ବି ଭାଗ କରିନି । ଭାଗ କରିବାକୁ ବି ତା' ପାଖରେ ସମୟ କାହିଁ ? ତା'ଛଡ଼ା ବର୍ତ୍ତମାନସର୍ବସ୍ୱ ଜୀବନ ପ୍ରବାହ ଭିତରେ 'ଭବିଷ୍ୟତ' ବୋଲି ଶବ୍ଦଟିଏ ବି ତ ନ ଥିଲା ତା' ଆଗରେ । କେମିତି ଥା'ନ୍ତା ? ? ଝଡ଼ବତାସକୁ ସାମ୍ନା କରୁକରୁ, ମୁଣ୍ଡ ଘୋଡ଼େଇବାକୁ, ବର୍ଷାରୁ ନିଜକୁ ରକ୍ଷା କରିବାକୁ ଛତାଟିଏ ହିଁ ସେ ଖୋଜିଆସିଛି ଏ ଯାଏ । କେବଳ , ବୋଉ ପାଖରୁ ଆଶ୍ୱାସନା ଶୁଣିଛି, ରାତିପାହିବ, ଅଂଧାର କଟିବ - ଆଲୁଅ ଦିଶିବ ବୋଲି । ତାକୁ ହିଁ ସେ ଅପେକ୍ଷା କରିଛି.... କେବେ ହେବ ଏଇ ସୂର୍ଯ୍ୟୋଦୟ ? କେମିତି ଲାଗିବ ସେଇ ସୂର୍ଯ୍ୟୋଦୟର ସକାଳଟା ?

ଅଥଚ ସେ କେବେ ଆଉ ନିଶ୍ଚିନ୍ତ ନିଦରେ ଶୋଇଛି ଯେ, ସ୍ୱପ୍ନ ଦେଖିବ 'ଭବିଷ୍ୟତ'ର ? 'ବର୍ତ୍ତମାନ'କୁ ନେଇଁ ନିତିଦିନ ଭଳି ବ୍ୟସ୍ତ ଥିବାବେଳେ ଅଚାନକ ଦିନେ ଆସନ୍ନ ବସନ୍ତର ସଜ ସକାଳରେ ଅଚିହ୍ନା ମଣିଷଟିଏ 'ଆପଣାମଣିଷ'ର ପରିଚୟ ପତ୍ର ଧରି ତା' ଚେତନ ମନର ଦୁଆରେ ତ ଠିଆ ହେଇନଥିଲା କେବଳ; ବଢ଼େଇ ଦେଇଥିଲା ସାଂଗରେ ଆଣିଥିବା ଏଇ "ସୁନେଲୀ ଭବିଷ୍ୟତ ସହିତ ସ୍ୱପ୍ନକୁ" ତାରି ହାତରେ ଭେଟିସ୍ୱରୂପ । ଆଉ ସେଇ ଦିନଠୁ ତା' 'ବର୍ତ୍ତମାନ'ର, ଜୀବନପୃଷ୍ଠାରେ ଯୋଡ଼ି ହୋଇଗଲା ଆଉ ଗୋଟିଏ ପୃଷ୍ଠା 'ଭବିଷ୍ୟତ' ହେଇ.... ।

ଦେଇଙ୍କୁ ସାହାଯ୍ୟ କରିବ ବୋଲି ଟେବୁଲ୍ ଏପାଖେ ବସିଥିଲା ଅଲେଖ ତା' ଡାଇରୀ ଖୋଲି । ଦେଖିଲା ଦେଇ ଫାଇଲ୍ ପୃଷ୍ଠାକୁ ଚାହିଁ କ'ଣ ସବୁ ଭାବୁଚନ୍ତି..... କଲମ ଖୋଲା, ଚିଠିପତ୍ର ବି ସେମିତି ଖୋଲା ପଡ଼ିଛି ।

ଅଲେଖକୁ କିମିତି ଆଶ୍ଚର୍ଯ୍ୟ ଲାଗିଲା । ଏଭଳି ସ୍ଥିତିରେ ସେ କେବେ ଦେଇଙ୍କୁ

ଦେଖିନି । କାମରେ ଥରେ ମନଦେଲେ ସେ ନିରବଚ୍ଛିନ୍ନ ଭାବେ କେବଳ କାମରେ ଲାଗିଥାନ୍ତି । ଅଥଚ ଆଜି..... ସେ ଭାବିଲା, ଚହଲେଇ ଦେବ କି ତାଙ୍କ ଭାବନାକୁ..... ଯଦି ଖରାପ ଭାବିବେ, ମନ ଖରାପ ଥିବ ଅଥବା.... ନା, ଆଉ, ସେ ଧ୍ୟାନ ଭାଙ୍ଗିବନି, ନିଜେ ସେ ସଚେତନ ହୁଅନ୍ତୁ ଏହା ଭାବି ନିଜ କାମରେ ମନ ଦେଲା ଅଲେଖ ।

ଠିକ୍ ସେତିକିବେଳକୁ ଫୋନ୍ ରିଂ ହେଲା । ଉଠିଗଲା ଅଲେଖ, ଭାବନା ଚହଲିଗଲା ଲକ୍ଷ୍ମୀର । ଅପ୍ରସ୍ତୁତ ଲାଗିଲା ତାକୁ । ଛିଃ, ତାର ଏଇ ପିଲାଳିଆମି ଦେଖି କ'ଣ ଭାବିଥିବ ଅଲେଖ । ନିଜକୁ ଶାସନ କରିବାକୁ ଯାଇ ତର୍ଜନୀ ଦେଖେଇଲା ଲକ୍ଷ୍ମୀ । ଅଲେଖ କହିଲା, ଦେଇ ତୁମର ଫୋନ୍, ରେଣୁ ଅପାଙ୍କର । ରେଣୁବାଳା ଲକ୍ଷ୍ମୀର ବାନ୍ଧବୀ । ଦୁହେଁ ଏକାଠି କୋଚିଂ ନିଅନ୍ତି । ସେ ଫୋନ୍ କରିଛି କହି ଉଠିଗଲା ଲକ୍ଷ୍ମୀ ଫୋନ୍ ଧରିବାକୁ । ସେପଟୁ ରେଣୁବାଳାର ମୃଦୁ ଭର୍ତ୍ସନା, ତୋର କ'ଣ ହେଇଛି କି ଲକ୍ଷ୍ମୀ ? ଚାରିଦିନ ହେଲାଣି ତୋର ତ କାହିଁ ଦେଖାନାହିଁ । କ'ଣ ନା, କାମ ଅଛି, କାମ ସରୁନିର ବାହାନା । ଆଜିଯାଏ ତ ଠିକ୍ କାମ ସାରି ଆସିପାରୁଥିଲୁ - ଏବେ କାହିଁକି ପାରୁନୁ ? ମନେ ଅଛି ନା, ହାତ ଗଣତି କେଇଟା ମାସ ମାତ୍ର ଅଛି ପରୀକ୍ଷା । ଅଥଚ ତୋର ଉଦ୍ଦେଶ୍ୟ କ'ଣ ମୁଁ ତ ବୁଝିପାରୁନି । ଜାଣିଛୁ ନା, ତୋ' ଉପରେ ସାର୍ ମାନଙ୍କର ଅନେକ ଭରସା ସେମାନେ କ୍ଲାସ୍‌ରେ ତୋତେ ଖୋଜୁଛନ୍ତି । ସେଇଥିପାଇଁ ମୁଁ ଫୋନ୍ କଲି, ଆଜି ଆସିବୁ ନିଶ୍ଚେ । ନୂଆ ଟପିକ୍ ଆରମ୍ଭ ହେବ ।" ଲକ୍ଷ୍ମୀ ଆଉ କ'ଣ ଉତ୍ତର ଦେବ ରେଣୁକୁ । ସତକଥା ତ ସେ କାମର ବାହାନା ନେଉଛି, କାହାକୁ ଠକିବ କ'ଣ, ନିଜକୁ ହିଁ ଠକୁଛି । ସେ ଜାଣିପାରୁନି ତା'ର ଏଇ ଅସ୍ଥିରତା କାହିଁକି ? କାହିଁକି ସେ ଏମିତି ଉତଲା ହେଉଛି ! ମନ ହଜିଯାଇଛି କୋଉ ସବୁଜ ଘନ ଅରଣ୍ୟ ଭିତରେ କେଜାଣି, କଣ ଖୋଜିବାକୁ !

ଏତେଦିନ ଧରି ଗୋଟାଏ ପ୍ରକାର ତପସ୍ୟାର ଜୀବନକୁ ସେ ବଞ୍ଚି ଆସିଲା । ଅର୍ଜୁନଙ୍କ ଲକ୍ଷ୍ୟ ଭଳି ସ୍ଥିର ଓ ନିଶ୍ଚିତ । ଅଥଚ ଆଜି.....

ଏସବୁ ପ୍ରଶ୍ନର ଉତ୍ତର ଖୋଜୁ ଖୋଜୁ ଲକ୍ଷ୍ମୀର ମନ-ଦର୍ପଣରେ କାହାର ହସିଲା ଚେହେରାଟିଏ ଠିଆ ହୋଇଯାଏ । ଲେଖି ହେଇଯାଏ ନାଁଟିଏ.... ଭୃଗୁ ସାମନ୍ତ । ଆନମନା ହେଇଯାଏ ଲକ୍ଷ୍ମୀ । ଲିଭେଇ ପାରେନା ଲାଜ ଲାଗେ । ପ୍ରଶ୍ନ କରେ ନିଜକୁ, ସେ କଣ ବାଟ ହୁଡୁଛି ? କେଜାଣି । ନିଜ ମନକୁ ତ ବାନ୍ଧି ରଖି ପାରୁନି । ଅପରାଧୀ ଅପରାଧୀ ଲାଗେ ।

ଆଜି ବି ତାକୁ ସେଇ ଅପରାଧବୋଧ ମାଡ଼ି ବସିଲା । ନିଜ ମନକୁ ଖୁସି କରିବ ବୋଲି ସେ କର୍ତ୍ତବ୍ୟ ଭୁଲିଯାଇଛି ଭଲକଥା କରୁନି ସେ । ଠିକ୍‌କଥା କହିଛି ରେଣୁ । ସେ ଏମିତି ନଥିଲା । ସେ କୋଚିଂ କ୍ଲାସ୍ ଯିବ, କହିଛି ରେଣୁକୁ ।

ଆକାଶକୁ ସିନ୍ଦୂରିତ କରି ସୂର୍ଯ୍ୟ ମାଁ କୋଳକୁ ଯାଉଥିଲେ । କୋଚିଂ ସେଣ୍ଟରରୁ ଫେରି ଲକ୍ଷ୍ମୀ ଧୁଆଧୋଇ ହୋଇ କିଛି ସମୟ ବାପାଙ୍କ ପାଖରେ ବସିଲା । ନିତିଦିନର କାମ ଭିତରେ ଏଇଟା ଲକ୍ଷ୍ମୀର ଗୋଟାଏ ଅଭ୍ୟାସଗତ କାମ । ବାପାଙ୍କ ପାଖରେ ବସି ଦି'ପଦ କଥା ହେବ । କପେ ଚା' ଖାଇବ ବାପାଙ୍କ ସହିତ । ତା'ପରେ ଅନ୍ୟ କାମ କରିବ । ଆଜି ବି ସେଇୟା କଲା । ରାଘବ ସାର୍ ଆସିବା ସମୟ ହେଲା ତ, ବାପାଙ୍କୁ କହି ଉଠିଲା ଅଫିସ୍ ସଜାଡ଼ିବାକୁ ।

ସତ କହିବାକୁ ଗଲେ, ଅଫିସ୍ ସଜାଡ଼ିବା ତା' ପାଇଁ ଏକ ବାହାନା ହିଁ ଥିଲା । ସେ କାହାକୁ ଅପେକ୍ଷା କରୁଥିଲା ଏବଂ ସେମାନଙ୍କ ଆସିବା ସମୟ ଯେତିକି ଯେତିକି ପାଖେଇ ଆସୁଥିଲା, ମନ ତା'ର ସେତିକି ଅଧୀର ହୋଇ ଉଠୁଥିଲା । ଅପେକ୍ଷା ଭିତରେ ଏତେ ଉଲ୍ଲାସ ଥାଏ, ତାର ଅନୁଭବ ନଥିଲା କେବେ । ମନମୟୂରୀ ନାଚି ଉଠୁଥିଲା ଅସୀମ ଉଲ୍ଲାସରେ । ଶରୀରର ପ୍ରତିକ୍ରିୟା ସିନା ବାହାରକୁ ଦିଶେ – ମନକୁ ତ କେହି ଦେଖିପାରେନା । ଅନୁଭୂତି ଆଉ ଉପଲବ୍ଧି ଦେଇ ତାକୁ କେବଳ ବୁଝି ହୁଏ ।

ଅଲେଖ ଆସି ଖବର ଦେଲା । ଦେଖ ରାଘବ ସାର୍ ଆସିଲେଣି ତାଙ୍କ ସହିତ ନୂଆ ଡାକ୍ତରବାବୁ ବି ଆସିଛନ୍ତି ।

ଲକ୍ଷ୍ମୀର ଚେତନା ସଜାଗ ହୋଇ ଉଠିଲା । ତା' ଭିତରେ କିଏ ବଂଶୀର ମୂର୍ଚ୍ଛନା ତୋଳିଲା ଯେମିତି । ଏକ ପୁଲକିତ ଶିହରଣ ତା' ମନ ପ୍ରାଣକୁ କଦମ୍ବିତ କରିଦେଲା- ମନ ଧାଇଁଗଲା ଏକା ନିଃଶ୍ୱାସକେ ଗେଟ୍ ପାଖକୁ ମନର ମଣିଷକୁ ସ୍ୱାଗତ କରିବାକୁ । ଲକ୍ଷ୍ମୀର ସ୍ଥୁଳ ଦେହ ଅପେକ୍ଷା କଲା ସଂଭ୍ରମତାର ସହ ନୂଆ ଅତିଥିଙ୍କ ସହିତ ରାଘବ ସାର୍‌କୁ ଅଫିସ୍ ଭିତରେ । ସ୍ୱାଗତ କରୁ କରୁ ପ୍ରଣାମ ଜଣାଇଲା ଲକ୍ଷ୍ମୀ ଉଭୟଙ୍କୁ ।

"କେମିତି ଅଛନ୍ତି ଆପଣଙ୍କ ଆଶ୍ରମର ଅନ୍ତେବାସୀ ?

ହସି ହସି ପଚାରିଲେ ଡ: ସାମନ୍ତ ।

"ଏ ଭିତରେ ନୂଆଁ ଅତିଥି ଜଣେ ଆସିଛନ୍ତି, ସିଏ ଏବେ ଆପଣଙ୍କ ଅପେକ୍ଷାରେ ।" -କହିଲେ ରାଘବବାବୁ, ଲକ୍ଷ୍ମୀ କିଛି ଉତ୍ତର ଦେବା ଆଗରୁ । "ମୋର ତ ଫେରିବା କିଛିଦିନ ବିଳମ୍ବ ହୋଇଗଲା । କେମିତି ଅଛନ୍ତି ଅନ୍ୟମାନେ ।" କହୁ କହୁ ତିନିହେଁ ବୈଠକଖାନା ଆଡ଼କୁ ଆଗେଇ ଗଲେ । ସୁକାନ୍ତ ଅପେକ୍ଷା କରିଥିଲା କଫି ନେଇ । ସେଇଠି ଆଶ୍ରମର ଅନ୍ତେବାସୀ ଅପେକ୍ଷା କରିଥିଲେ ନିଜ ନିଜ ସ୍ୱାସ୍ଥ୍ୟ ପରୀକ୍ଷା କରିବା ଉଦ୍ଦେଶ୍ୟରେ । ଡ: ସାମନ୍ତ ଜଣ ଜଣ କରି ସେମାନଙ୍କ ସମସ୍ୟା ସଂପର୍କରେ ପଚାରି ବୁଝି, ଆବଶ୍ୟକୀୟ ପରାମର୍ଶ ଓ ଔଷଧ ବ୍ୟବସ୍ଥା କରି ସେମାନଙ୍କ ସହିତ ଦି' ଚାରିପଦ ସୁଖଦୁଃଖ ବି ହେଲେ । କିଛି ଆଶ୍ୱାସନା ବି ଦେଲେ – "ହୁଏ ଏମିତି, କିଛି

ଭୟ କରିବାର ନାହିଁ । ଏସବୁ ବୟସଜନିତ ଅସୁବିଧା - ନିୟମିତ କିଛିଟା ସହଜ ବ୍ୟାୟାମ ଆଉ ଔଷଧ ବ୍ୟବହାର କଲେ ଠିକ୍ ହେଇଯିବ ।" ଟିକିଏ ଆପଣାପଣ ଆଉ ସହାନୁଭୂତି ଦେଇ ପରକୁ ଆପଣା କରିବାର ଅଦ୍ଭୁତ କୌଶଳ ଡ. ସାମନ୍ତଙ୍କର ନିଜସ୍ୱ ସ୍ୱଭାବ । ସମସ୍ତେ ଏଇଥି ପାଇଁ ତାଙ୍କୁ ଭଲପା'ନ୍ତି । ତାଙ୍କର ମିଠାକଥା ସଭିଙ୍କ ମନକୁ କିଣିନିଏ । ଆସ୍ଥା ବଢ଼େ, ବିଶ୍ୱାସ ଦାନା ବାନ୍ଧେ । ନିଜେ ଡ. ସାମନ୍ତ କୁହନ୍ତି ଏଇ ତ ମଣିଷର ମନସ୍ତତ୍ତ୍ୱ । କୌଣସି କାମ, ଭୟ ଦେଖାଇ, ଧମକେଇ କିମ୍ବା ଅଧିକାର ସାବ୍ୟସ୍ତ କରି ଆଦାୟ କରାଯାଇପାରେନା । ଏମାନେ ତ ସହଜେ ବୟସ୍କ । ସତରେ, ଦି' ସପ୍ତାହ ଗଡ଼ିଗଲେ ରୋଗୀ ଭୋଗୀ ସମସ୍ତେ ତାଙ୍କ ଆସିବା ବାଟକୁ ଚାହିଁ ବସିଥାନ୍ତି ।

ନିୟମିତ ରୋଗୀ ଦେଖା ଓ ସ୍ୱାସ୍ଥ୍ୟ ପରୀକ୍ଷା ସାରି ଡ. ସାମନ୍ତ ଆଉ କପେ କଫି ବରାଦ କଲେ ଲକ୍ଷ୍ମୀକୁ ଚାହିଁ; ଏବଂ ସେଇ ଅବସରରେ ନିଜ ବ୍ୟାଗ୍ ଭିତରୁ କିଛି ବହି, ମ୍ୟାଗାଜିନ୍ ବାହାର କରି ଲକ୍ଷ୍ମୀ ହାତକୁ ବଢ଼େଇ ଦେଲେ ।" ଏସବୁ ଆପଣଙ୍କ ବରାଦ - ଦେଖି ନିଅନ୍ତୁ ଠିକ୍ ଆଣିଛି କି ନାହିଁ, ଆପଣ ଚାହିଁଥିବା ଜିନିଷ ।"

ଧନ୍ୟବାଦ ଜଣେଇ ଲକ୍ଷ୍ମୀ ବହି ଟକ ଖୁସିରେ ଦେଖିନେଲା - ଭଦ୍ରଲୋକ ସବୁ ଜିନିଷ ଖୋଜି ଖୋଜି ଆଣିଛନ୍ତି ତା' ପାଇଁ । ମୁଗ୍ଧ ଆଖିରେ ଚାହିଁ ରହିଥିଲେ ଡ.ସାମନ୍ତ, ଲକ୍ଷ୍ମୀର ପ୍ରସନ୍ନତା ଉକୁଟି ଉଠିଥିବା ମୁହଁଟିକୁ । ରାଘବ ବାବୁ କହିଲେ, ଏଥର ମନ ଖୁସି ତ ? ପ୍ରସ୍ତୁତି ପାଇଁ ତା' ହେଲେ କିଛି ଅସୁବିଧା ନାହିଁ ?

"ଯଦି କିଛି ଅସୁବିଧା ହୁଏ, କିଛି ଦିନ ପାଇଁ ଦିଲ୍ଲୀ ଯାଇ କୋଚିଂ ନେଇଯିବ - ମୁଁ ତ ବାରମ୍ବାର ଯାଉଛି । କହିଲେ ଡ.ସାମନ୍ତ, କଫି ଖିଆ ସରିଲା, ଏଥର ନୂଆ ରୋଗୀଙ୍କୁ ଦେଖିବା ପାଇଁ ଚାହିଁଲେ ଡ.ସାମନ୍ତ । ରାଘବ ବାବୁ ଲକ୍ଷ୍ମୀକୁ ନିର୍ଦ୍ଦେଶ ଦେଲେ, ଯିବା ତୋର ସର ମାଉସୀ ପାଖକୁ ।

କଥାର ଲହରରେ ତିନି ହେଁ ପହଞ୍ଚି ଯାଇଥିଲେ ସରମା ଦୁଆର ଆଗରେ । ପ୍ରଥମେ ଲକ୍ଷ୍ମୀ ଟିକିଏ ଆଗେଇ ଯାଇ ପରଦା ଆଡ଼େଇ ପଶିଗଲା ରୁମ୍ ଭିତରକୁ । ଘର ଭିତରେ ଆଲୁଅ ଜଳୁଥିଲା । ମଧ୍ୟ ବୟସୀ, କ୍ଷୀଣାଙ୍ଗୀ ନାରୀଟିଏ ଏକାଲୟରେ ଗୋଟିଏ ଫ୍ରେମ୍‌ବନ୍ଧେଇ ଫଟୋ ଆଗରେ ଧୂପ ଜାଳି ଚାହିଁ ବସିଥିଲା । ହୁଏତ କଥା କହୁଥିଲା, ଫଟୋ ହୋଇ ଯାଇଥିବା ସେଇ ମଣିଷମାନଙ୍କ ସହିତ ମନକୁ ମନ ।

ମୁହୂର୍ତ୍ତେ ଠିଆ ହୋଇ ସନ୍ତର୍ପଣରେ ଧୀର ସ୍ୱରରେ ଡାକିଲା ଲକ୍ଷ୍ମୀ- 'ମାଉସୀ' ଦେଖିଲ କିଏ ସବୁ ଆସିଛନ୍ତି, ତୁମ ସହିତ ଦେଖା କରିବାକୁ.... । ନା କୌଣସି ପ୍ରତିକ୍ରିୟା ଦେଖାଗଲାନି, ହଲଚଲ ବି ହେଲେନି ଭଦ୍ରମହିଳା ସେଇଭଳି ଧ୍ୟାନମଗ୍ନ..... । ପୁଣି ଡାକିଲା ଲକ୍ଷ୍ମୀ- 'ମାଉସୀ...'

ଏଥର ରାଘବବାବୁ ଡ.ସାମନ୍ତଙ୍କୁ ଭିତରକୁ ଡାକିଲେ, "ଆସ ଭୃଗୁ, ଆସ ଭିତରକୁ" ।

ଚମକି ପଡ଼ିଲେ ମହିଳା ଭୂତ ଦେଖିଲା ଭଳି । ଧ୍ୟାନଭାଙ୍ଗି ଚାହିଁଲେ ଦୁଆର ଆଡ଼କୁ ମୁହୂର୍ତ୍ତଟିଏ । ସ୍ଥିର ଲକ୍ଷ୍ୟ, ଅବାକ୍ ହୋଇଗଲେ ସତେକି ! କିଛି ସମୟ ସେଇମିତି ନିର୍ବାକ୍ ହେଇ ଚାହିଁରହିଲେ ଆଗନ୍ତୁକଙ୍କୁ, ଧୀରେ ଧୀରେ ଆଖି ଉଜ୍ଜ୍ୱଳ ହେଇ ଉଠିଲା - ଯେମିତି ସେ ଚିହ୍ନିଛନ୍ତି ଓଠ ଥରିଉଠିଲା କିଏ ? ଭୃଗୁ ? ମୋ ପୁଅ ? ? ଭାର୍ଗବ ଆସିଛି ?

ଘର ଭିତରକୁ ପଶୁ ପଶୁ ଠିଆ ହେଇଗଲେ ଡ. ସାମନ୍ତ । ନିଜ ଭିତରେ ନିଜେ ସେ ଚମକି ଉଠିଲେ । ରୋଗୀକୁ ପରୀକ୍ଷା କରିବା ଆଗରୁ, ତା' ମନସ୍ତତ୍ତ୍ୱ ପଢ଼ିବା ପୂର୍ବରୁ ହିଁ ତାଙ୍କ ପାଇଁ ସୂତ୍ରଟିଏ ମିଳିଗଲା । ସତେକି ସମସ୍ତ ଚିନ୍ତା ଚେତନାକୁ ଏକାଗ୍ର କରି ସେ ରୋଗିଣୀର ମୁହଁକୁ ନିରୀକ୍ଷଣ କରିବାକୁ ପ୍ରୟାସ କଲେ । ଅବଶ୍ୟ ଘଟଣାଟି ଅଚାନକ ଆଉ ନାଟକୀୟ ହିଁ ଥିଲା ।

ଏଥର ଭଦ୍ରମହିଳା ବସିବା ସ୍ଥାନରୁ ଉଠି ଆସିବାକୁ ଚେଷ୍ଟା କରୁ କରୁ ଦୁର୍ବଳ ସ୍ୱାସ୍ଥ୍ୟ ହେତୁ ଟଳି ପଡୁଥିଲେ, ଧରିନେଲା ଲକ୍ଷ୍ମୀ । ସେ କିନ୍ତୁ କହି ଚାଲିଥା'ନ୍ତି" କିମିତି ଆସିଲା ଭୃଗୁ ? କାହା ସଂଗେ ? ମୋ ପୁଅ ଭୃଗୁ, ଭୃଗୁ ଆସିଛି... ଆଉ ତା' ବାପା କାହାନ୍ତି ? ? ନିଷ୍ପ୍ରଭ ଆଖି ଦୁଇଟି ଯେମିତି ଖୋଜି ପକାଉଥିଲା ଏପାଖ ସେପାଖ ହୋଇ, କେତେବେଳେ ଦୁଆର ଆଡ଼କୁ ତ କେତେବେଳେ ଡ.ସାମନ୍ତଙ୍କ ମୁହଁକୁ ଚାହିଁ, ପଚାରି ଚାଲିଥିଲେ, କାହାନ୍ତିରେ ଭୃଗୁ.....ତୋ ବାପା ?" ଭଙ୍ଗା ଗୋଡ଼ଟାରେ ଦମ୍ଭ ନଥିଲା ସେମିତ ଟଳମଟଳ ହେବା ଅବସ୍ଥାରେ ଆଗେଇ ଯାଇ ଠିଆ ହେଇ ପଡ଼ିଲେ ଡ.ସାମନ୍ତଙ୍କ ସାମ୍ନାରେ ଏବଂ ନିବିଷ୍ଟ ହେଇ ଚାହିଁ ରହିଲେ କିଛି ସମୟ ।

କ'ଣ ଭାବିଲେ କେଜାଣି ଡ. ସାମନ୍ତ ହଠାତ୍ ନଇଁ ପଡ଼ିଲେ ମହିଳାଙ୍କ ପାଦ ତଳେ ପ୍ରଣାମ କରିବାକୁ ।

ରାଘବ ବାବୁ ଡ.ସାମନ୍ତଙ୍କ ପରିଚୟ ଦେବାକୁ ଯାଉଥିଲେ- ଇଙ୍ଗିତରେ ମନା କରିଦେଲେ ଡ. ସାମନ୍ତ ଏବଂ ନିଜ ଆଡୁ ପରିଚୟ ଦେଲେ 'ମୁଁ ଭୃଗୁ' । ଚକିତ ହେଲେ ବି କିଛିଟା ଅନୁମାନ କରିପାରିଥିଲେ ରାଘବାବାବୁ । କାରଣ ବାଟରେ ଆସିଲା ବେଳେ ସରସ୍ୱତୀର କେଶ୍ ହିଷ୍ଟ୍ରି ସଂପର୍କରେ କିଛିଟା ସୂଚନା ଦେଇଥିଲେ ସେ ଡ. ସାମନ୍ତଙ୍କୁ । ଲକ୍ଷ୍ମୀ ବି ବିସ୍ମିତ ହୋଇ ଚାହିଁଥିଲା । ଘଟଣା କ'ଣ ଘଟିଯାଉଛି ଦେଖିବାକୁ ।

ଭଦ୍ରମହିଳା ଡ.ସାମନ୍ତଙ୍କ ଦେହ ମୁହଁକୁ ପାଗଳଙ୍କ ଭଳି ଅଣ୍ଡାଳି ପକାଉଥିଲେ । ସତ ନା ମିଛ ଜାଣିବାକୁ ହୁଏତ । ହଁ, ଏଇ ମୋ ଭୃଗୁ.... ଏଇ ତ, ଏଯାଏ କୋଉଠି

ଥିଲୁ ବାବା, ମୋ' ଆଖି ତ ଅନ୍ଧ ହୋଇଯାଇଥିଲା ତୋତେ ନ ଦେଖି, ....ବାରମ୍ବାର ଏମିତି ଆବୁରୁ ଢାବୁରୁ କରି ଗୁଣୁ ଗୁଣଉଥାନ୍ତି । ଆଖିରୁ ବହି ଯାଉଥାଏ ଧାର ଧାର ହୋଇ ଲୁହ । ଚିରନ୍ତନ ମାତୃତ୍ୱ ସଢ଼ାଢ଼ି ହୋଇ ଚେଇଁ ଉଠୁଥାଏ କୋଳେଇ ଧରିଥାନ୍ତି ଡ.ସାମନ୍ତଙ୍କୁ ସେମିତି । କିଛି ସମୟ କଟିଗଲା ଏମିତି.... ସେଇ ଅବସ୍ଥାରେ ଭଦ୍ରମହିଳାଙ୍କୁ ଖଟ ଉପରକୁ ଆଣି ବସେଇ ଦେଲେ ଓ ନିଜେ ବି ବସି ପଡ଼ିଲେ । ଚାହିଁଥିଲେ ରାଘବ ବାବୁ ଓ ଲକ୍ଷ୍ମୀ ଆଶ୍ଚର୍ଯ୍ୟଚକିତ ହୋଇ । ମହିଳାଙ୍କ ଶେତା ପଡ଼ିଯାଇଥିବା ନିଷ୍ପ୍ରଭ ଆଖି ଦୁଇଟିର ଲୁହ ବଦଳରେ କ୍ରମଶଃ ଆଶାର ଆଲୁଅ ଚହଟି ଉଠୁଛି.... । ସମ୍ମୋହିତ ପରିବେଶ । ଆଉ ସେଇ ଆଲୁଅ ସଂକ୍ରମିତ ହେଉଛି ଧୀରେ ଧୀରେ ତାଙ୍କ ମୁହଁରେ । ଓଠରେ ଅବୋଧ ଶିଶୁର ନିରୋଳା ହସ । ଡ. ସାମନ୍ତ ଧୀରେ ଧୀରେ ହାତ ବୁଲେଇ ଆଣୁଛନ୍ତି ତାଙ୍କ ମୁଣ୍ଡରେ, ଆଉଁଶି ଦେଉଛନ୍ତି, ପିଲାଙ୍କୁ ନାନାବାୟା ଗାଇ ଶୁଆଇ ଦେଲାଭଳି ଏକ ମଧୁର ଅନ୍ତରଂଗ ସ୍ପର୍ଶ ଦେଇ ।

ଆଖିବୁଜି ହୋଇ ଆସୁଛି ମହିଳାଙ୍କର । ଡ.ସାମନ୍ତ ବି ଅଭିଭୂତ ହୋଇ ଯାଉଥିଲେ ମହିଳାଙ୍କ ଅନ୍ତରଂଗ 'ପୁଅ' ଡାକରେ । କୋଉ ଦୂର ଅତୀତରେ କେବେ କିଏ ତାଙ୍କୁ ପୁଅ ବୋଲି ଡାକି ଅଥୟ ହୋଇଯାଉଥିଲା କେଜାଣି ମନେନାହିଁ । ତା' ପରର ଏହି ଚାଲିଆସିଥିବା ଜୀବନ ଭିତରେ କିଏ ତାଙ୍କୁ ଏତେ ଅନ୍ତରଙ୍ଗ ସ୍ନେହର ଛୁଆଁ ଦେଇ ପୁଅ ବୋଲି ସମ୍ବୋଧନ କରିଥିବା ବି ତାଙ୍କର ମନେ ପଡୁନଥିଲା । ଏବେ ସରମାଁର 'ପୁଅ' ଡାକ ତାଙ୍କ ଚେତନାକୁ ଗଭୀର ଭାବେ ଆଛନ୍ନ କରିପକାଉଥିଲା ସତେ ଯେମିତି ସେ ନିଜେ ସମ୍ମୋହିତ ହୋଇ ପଡୁଥିଲେ ଏକ ସୁଖଦ ସ୍ଥିତିରେ । ଉଭୟେ ଆତ୍ମହରା, କାହା ମୁହଁରେ ଭାଷା ନଥିଲା । ବିସ୍ମୟର ବି ସୀମା ନଥିଲା । ଇଏ କି ପ୍ରକାର ଚମତ୍କାର ! ! ଏ ପୁଣି ସମ୍ଭବ ହେଲା କିମିତି ? ? ହସ ତ ଦୂରର କଥା, ଏଇ ଗହୀରା ଆଖିରେ ଲୁହର ଶ୍ରାବଣ ଅଚାନକ କିମିଆଁ କଲା ଭଳି ଫଗୁଣ ପାଲଟିଯିବ - ଏ ତ କଳ୍ପନାର ବାହାରେ ।

ରାଘବବାବୁ କିନ୍ତୁ ଠଉରାଇ ପାରୁଥିଲେ, ଇଏ ସେଇ 'ଭୃଗୁ' ନାମର କିମିଆଁ ମନୋବିଜ୍ଞାନୀ ଡ. ସାମନ୍ତ ସରମାଙ୍କୁ ଏକ ଭ୍ରାନ୍ତ ପୃଥିବୀକୁ ନେଇ ଯିବାରେ ସମର୍ଥ ହୋଇଛନ୍ତି - ତାଙ୍କ ଚିକିତ୍ସା ମାର୍ଗ ଖୋଲିଯାଇଛି । ମନେ ମନେ ଈଶ୍ୱରଙ୍କୁ ପ୍ରଣାମ ଜଣେଇଲେ "ତମର ଅପାର କରୁଣା ପ୍ରଭୁ ।"

ମୁହୂର୍ତ୍ତକରେ ଏକ ନାଟକୀୟ ଦୃଶ୍ୟ ସଂଘଟିତ ହୋଇଗଲା ଜରାଶ୍ରମର ଏଇ ନିଭୃତ କୋଠରି ଭିତରେ । ଏଭଳି ବିଭୋର ମୁହୂର୍ତ୍ତ କ୍ୱଚିତ୍ ଦେଖିବାକୁ ମିଳେ ଜୀବନରେ ।

ବେଶ୍ କିଛି ସମୟ କଟିଗଲା ଏଇ ଭାବ ବିଭୋର ଅବସ୍ଥାରେ । ମାତୃତ୍ୱର ଏଇ ଚିରନ୍ତନ ଛବି ତିନୋଟି ଚେତନାକୁ ଆଛନ୍ନ କରି ରଖିଥିଲା ଏଇ କିଛି ସମୟ ଧରି ।

ହୁଏତ ଆହୁରି କିଛି ସମୟ ଏମିତି କଟି ଯାଇଥାନ୍ତା । ଦୁଆର ସେପାଖ ପରଦା ଆଳୁଅରେ ଯଦି ସୁକାନ୍ତ ଆସି ଡାକିନଥାନ୍ତା ଲକ୍ଷ୍ମୀକୁ । "ଦେଇ.... ଦେଈ ମ...."

ପ୍ରକୃତିସ୍ଥ ହେଲେ ରାଘବବାବୁ । ଲକ୍ଷ୍ମୀ ଫେରିଆସିଲା ନିଜ ଜଗତକୁ । ପରଦା ଆଡ଼େଇ ସୁକାନ୍ତ କକ୍ଷ ଭିତରକୁ ଆସି କହିଲା "ଇନ୍ଦୁଖୁଡ଼ୀ ଆଉ ସରମାଁଙ୍କର ଖାଇବା ସମୟ ହୋଇଗଲାଣି ଅନେକବେଳୁ - ଏଇକଥା ମନେ ପକେଇଦେବାକୁ ଆସିଲି ।"

"ଆଉ ଟିକିଏ ସମୟ ଯାଉ, କାମ ସରିଗଲାଣି ତ.... କହି ଲକ୍ଷ୍ମୀ ବିଦା କଲା ସୁକାନ୍ତକୁ ।

ଡ. ସାମନ୍ତ ନିଜେ ପ୍ରକୃତିସ୍ଥ ହେଇ ସରମାଁକୁ ବିଛଣାରେ ଶୁଆଇ ଉଠିଲେ । ରାଘବ ବାବୁ ଆନନ୍ଦାତିଶଯ୍ୟରେ ଡ. ସାମନ୍ତଙ୍କୁ ଅନେକ ଖୁସିରେ କୋଳେଇ ପକାଇ ତାଙ୍କ ସଫଳତା ପାଇଁ ଶୁଭକାମନା ଜଣାଇଲେ- "ଇଏ ଶୁଭ ସୂଚନା ଭୃଗୁ, ଅଂଧାର କଟିଯାଉଛି..... ଏଥର ନୂତନ ସୂର୍ଯ୍ୟୋଦୟକୁ ଅପେକ୍ଷା.... ହଜିବା....ଖୋଜିବା..... ଆଉ ପାଇବାର ଏଇ ଅଲଭ୍ୟ ସଂଯୋଗ, ବାସ୍ତବିକ ଈଶ୍ୱରଙ୍କ ବରଦାନ ।"

ଡ.ସାମନ୍ତଙ୍କ ମୁହଁରେ ଭାଷା ନଥିଲା । ବାସ୍ତବତାର ସ୍ପର୍ଶରେ ସେ ହୁଏତ ଟିକିଏ ଅପ୍ରସ୍ତୁତ ବୋଧ କରୁଥିଲେ । ତେବେ ତାଙ୍କର ଏଇ ଚିକିତ୍ସା ଜଗତରେ ଏଭଳି ଛୋଟବଡ଼ ବହୁ ଆକସ୍ମିକ ଘଟଣା ଘଟିଥାଏ । ମାନସିକ ରୋଗୀ ଗୋଟାଏ ଭ୍ରାନ୍ତ ପୃଥିବୀରୁ ବାହାରି ଆସି ଆଉ ଏକ ଭ୍ରାନ୍ତ ପୃଥିବୀ ଭିତରେ ପ୍ରବେଶ କରେ ବେଳେବେଳେ ଏବଂ ଭଲ ମଣିଷ ଭଳି ବ୍ୟବହାର କରେ । କେବଳ ସେତିକି ନୁହେଁ, ଚିକିତ୍ସକକୁ ବି ସେଇ ଭ୍ରାନ୍ତ ଜଗତକୁ ଟାଣିନିଏ । ମିଛ ଅଭିନୟର ଚକାଭଉଁର ଭିତରେ ପଶି ଅଣନିଃଶ୍ୱାସୀ ହୁଏ ଭଲ ମଣିଷ । ଆଜି ବି ସେଭଳି କିଛି ଘଟିଗଲା । ନିଜେ ବି ନିଜ ଅଜାଣତରେ ସେ ଭିନ୍ନ ଏକ ଦୁନିଆଁକୁ ଖୋଜି ପାଇଥିଲେ । ଯାହା ସେ ହଜେଇ ଦେଇଥିଲେ ଅନେକ ଅନେକ ବର୍ଷ ତଳେ । ଆଉ ଆଜି ଯେ ସେ ବାନ୍ଧି ହେଇଯାଇଛନ୍ତି ମାଁର ଚିରନ୍ତନ ଅମୃତ ଡୋରିରେ - ଏକଥା କଣ ସେ ଅସ୍ୱୀକାର କରିପାରିବେ ? ନିଜକୁ ପ୍ରଶ୍ନ କରୁଥିଲେ ଭୃଗୁ ସାମନ୍ତ ।

ସତରେ ଭଦ୍ରମହିଳାଙ୍କ ପୁଅ ଡାକରେ କି ମାୟା ଥିଲା କେଜାଣି - ଦୀର୍ଘ ବର୍ଷର ନିଦ୍ରିତ ଶୈଶବ ତାଙ୍କର ଚେଇଁ ଉଠିଲା ମୁହୂର୍ତ୍ତକରେ । ତାଙ୍କର ସ୍ପର୍ଶ, ସ୍ପର୍ଶ ତ ନୁହେଁ, ସଂଜୀବନୀ ସୁଧା.... ଅମୃତ ବୋଲି ହେଇଗଲା ସତେକି !

"ଆମେ ଏଥର ବାହାରିବା ତ ? ପଚାରିଲେ ରାଘବବାବୁ । ନା' ଇନ୍ଦୁମତୀ ପାଖକୁ ଯିବା ?"

"ନା, ଆଉ ଆଜି ନୁହଁ । ବର୍ତ୍ତମାନ ଫେରିଯିବା ବସାକୁ ।" ମନେମନେ ଭାବୁଥିଲେ, ଆଜି, ଏଇ ଟିକକ ଆଗରୁ ସେ ଯାହା ପାଇଛନ୍ତି - ତାକୁ ସେ ସାଇତି

ରଖିବାକୁ ଚାହାଁନ୍ତି ଏକାନ୍ତ ଭାବେ । ତେବେ ସରମାକୁ ସେ ଦିନେ ସତ ଦୁନିଆଁର ଆଲୁଅ ଦେଖେଇବେ ନିଶ୍ଚୟ ।

ଲକ୍ଷ୍ମୀ ଘର ଭିତରକୁ ଯାଇ ସରମାଁର କେଶ ହିଷ୍ଟ୍ରି ଫାଇଲ୍ ଆଣି ବଢ଼େଇ ଦେଲା ଡା. ସାମନ୍ତଙ୍କୁ ।

ରାତି ବଢୁଥିଲା । ବିଦାୟ ନେଲେ ସେ ଆଶ୍ରମରୁ । କାଲି ଆସିଲେ ଇନ୍ଦୁମତୀ କଥା ବିଚାର କରିବେ । ତାଙ୍କୁ କୌଣସି ମେଣ୍ଟାଲ୍ ହସ୍‌ପିଟାଲ୍‌କୁ ନେବାକୁ ହିଁ ପଡ଼ିବ । ସେ ସଂପର୍କ କରିବେ ହସ୍‌ପିଟାଲ୍‌ମାନଙ୍କ ସହିତ ନହେଲେ ଆଉ ଉପାୟ ନାହିଁ - କହିଲେ ରାଘବ ବାବୁଙ୍କୁ ଓ ଷ୍ଟାର୍ଟ୍ ଦେଲେ ଗାଡ଼ିକୁ ।

ଯିବା ବାଟରେ ରାଘବ ବାବୁ ସରସ୍ୱତୀ - ଘଟଣାର ତର୍ଜମା କରିବାକୁ ଯାଇ କହିଲେ, "ବଡ଼ ଦୟନୀୟ ସ୍ଥିତି ସରମାଁର । ଜୀବନର ସବୁକିଛି ସରିଯାଇଛି ତାର । ନିଜ ପରିବାର କହିଲେ - ଆଉ କେହି ନାହିଁ । ଆତ୍ମୀୟଙ୍କ ଭିତରୁ ବି ତିନି ଚାରିଜଣ ଏଇ ଦୁର୍ଘଟଣାରେ ଯାଇଛନ୍ତି । ସ୍ୱାମୀ ବ୍ୟାଙ୍କର୍ ପଦସ୍ଥ ଅଫିସର୍ ପୁଅ ଭାର୍ଗବ ଡାକ୍ତର । ପୋଷ୍ଟ୍ ଗ୍ରାଜୁଏଟ୍ କରିବା ପାଇଁ ଚାକିରିରେ ଯୋଗ ନ ଦେଇ ଇଣ୍ଟରଭ୍ୟୁକୁ ଅପେକ୍ଷା କରିଥିଲା, ଏଣ୍ଟ୍ରାନ୍ସ ପରୀକ୍ଷା ସରିଥିଲା । ତା' ବାପା ବୀରେନ୍ଦ୍ର ସାମ୍‌ଲ ବିଦେଶ ପଠେଇବାକୁ ଚାହୁଁଥିଲେ - ସେଇ ଥିଲା ଏକମାତ୍ର ସନ୍ତାନ । ହେଲେ ଈଶ୍ୱରଙ୍କ ଇଚ୍ଛା ଆଉ ପ୍ରକାରେ ।"

କୌଣସି ଆତ୍ମୀୟଙ୍କ ବିବାହ ଉତ୍ସବରେ ଯୋଗ ଦେବା ଉଦ୍ଦେଶ୍ୟରେ ତିନି ପରିବାର ମିଶି ସୁନାବେଡ଼ା ଯାଇ ଫେରୁଥିଲେ ରାଜଧାନୀକୁ । ବିରେନ୍ଦ୍ର ନିଜେ ଡ୍ରାଇଭ୍ କରୁଥିଲେ । ଭାର୍ଗବ ପାଖରେ ବସିଥିଲା । ଅନ୍ୟମାନେ ସବୁ ପଛରେ ବସିଥିଲେ । ଅକସ୍ମାତ ଲୁହା ବୋଝେଇ ଟ୍ରକ୍ ସହିତ ମୁହାଁମୁହିଁ ଧକ୍କା ଲାଗି ସବୁ ଶେଷ ହେଇଗଲା । ତିନୋଟି ପରିବାର ନିଶ୍ଚିହ୍ନ ହୋଇଗଲେ । ରାସ୍ତାରେ ଯିବା କୌଣସି ଏକ ଗାଡ଼ି ଦୁର୍ଘଟଣାଗ୍ରସ୍ତ ଲୋକଙ୍କୁ ଦେଖି, ଖୋଜ୍ ଖବର ନେଇଁ, 'ସହାୟ' ସଂସ୍ଥାକୁ ଜଣେଇଥିଲେ । ଏଇ ସରସ୍ୱତୀ ଗୁରୁତର ଭାବେ ଆଘାତ ପାଇ ଅଚେତ ହେଇ ପଡ଼ିଥିଲା । ଏହି 'ସହାୟ' ସଂସ୍ଥା ହିଁ ତାକୁ ନେଇଁ ଡାକ୍ତରଖାନାରେ ଆଡ୍‌ମିଟ୍ କରିଥିଲା ଦୀର୍ଘ ଦୁଇମାସ ହେଲା ।

"ରାଘବବାବୁଙ୍କ ଘର ଆସିଯାଇଥିଲା । ଓହ୍ଲେଇବା ପାଇଁ ଡ. ସାମନ୍ତ ଗାଡ଼ିରେ ବ୍ରେକ୍ ଦେଉ ଦେଉ କହିଲେ- " ମଣିଷର ସମଗ୍ର ଜୀବନଟାକୁ ଦେଖିଲେ ଲାଗେ, ସବୁ ହିଁ ଆକ୍ସିଡେଣ୍ଟ୍ - ତାର ଜନ୍ମଟା ହିଁ ତ ଆକ୍ସିଡେଣ୍ଟ୍ !" ହାତ ଯୋଡ଼ିଲେ ଭୃଗୁ ସାମନ୍ତ । ଦୀର୍ଘନିଃଶ୍ୱାସ ନେଇଁ ଶୁଭରାତ୍ରି ଜଣେଇ ରାଘବ ବାବୁ ଓହ୍ଲେଇଗଲେ ।

|| ୫ ||

ଗ୍ୟାରେଜ୍‌ରେ ଗାଡ଼ି ପାର୍କିଂ କରି ଭୃଗୁ ସାମନ୍ତ ଘରର ଚାବି ନିଜେ ହିଁ ଖୋଲିଲେ । ଘର ଭିତରଟାରେ ଅନ୍ଧାର ରାଜତ୍ୱ କରୁଥିଲା । ଭିତରକୁ ପଶୁ ପଶୁ ତାଙ୍କୁ କିମିତି ମାଡ଼ିମାଡ଼ି ପଡ଼ିଲା ନିଛାଟିଆ : ଶୂନଶାନ୍ । ତାଙ୍କୁ ମୋଟେ ଭଲ ଲାଗେନି । ଏମିତିକା ସ୍ଥିତି ଖୁବ୍ କମ୍, କହିବାକୁ ଗଲେ ପ୍ରାୟ କେବେ ଘଟେନି । କାରଣ ସବୁବେଳେ ତ ବିଜୁ ଥାଏ ।

ଦୈବାତ୍ ଆଜି ସେ ନାହିଁ । ଗାଁକୁ ଯାଇଛି, ସେ ଏଥର ଟିକିଏ ବେଶିଦିନ ପାଇଁ ଦିଲ୍ଲୀ ଯାଇଥିଲେ । ବିଜୁ କହିଥିଲା ଗାଁକୁ ଯିବ, ଅନେକ ଦିନ ହେଲା ବାପାବୋଉଙ୍କୁ ଦେଖିନି ଏବଂ ସେ ଫେରିବା ପୂର୍ବରୁ ହିଁ ଫେରିଆସିବ । କିନ୍ତୁ ସେ ନିଜେ ଦି'ଦିନ ପୂର୍ବରୁ ଫେରିଆସିଲେ । ବିଜୁ କାଲିକୁ ଫେରିବ । ଅତଏବ ଏଇ ଦି'ଦିନ ତାଙ୍କୁ ଏକା ଏଇ ନିଛାଟିଆ ଘର ଭିତରେ କଟେଇବାକୁ ପଡ଼ିବ । ମନଟା ମାନ୍ଦା ପଡ଼ିଗଲା । ଛୋଟ ନିଃଶ୍ୱାସଟିଏ ନେଇଁ, ଡାହାଣ ପଟ କାନ୍ଥରେ ହାତ ମାରିଲେ । ହାତରେ ସୁଇଚ୍‌ଟା ପଡ଼ିଲା, ଅନ୍ କଲେ ଅଜାଡ଼ି ହେଇ ପଡ଼ିଲା ଆଲୁଅ । ଓହୋ, ବଞ୍ଚିଗଲା ମଣିଷ ତାଙ୍କୁ ଅନ୍ଧାର ମୋଟେ ଭଲ ଲାଗେନି ଅସହ୍ୟ ମନେ ହୁଏ ।

ଶୋଇବା ଘର ଭିତରକୁ ପଶିଲେ । ପୋଷାକ ବଦଳେଇ ମୁହଁ ହାତ ଧୋଇଲେ । ବିଜୁଟା ସବୁବେଳେ ତାଙ୍କ ପାଖରେ ଛାଇ ଭଳି ଥାଏ ତ, ମନଜାଣି ସବୁ କାମ ତାଙ୍କ ହାତ ପାଖକୁ ଯୋଗାଇ ଦିଏ । ତାଙ୍କୁ କିଛି ଭାବିବାକୁ ପଡ଼େନି ।

ଅନେକ ବର୍ଷ ହେଇଯିବ, ବିଜୁ ତାଙ୍କ ପାଖରେ ଅଛି । ତାଙ୍କର ରୁଚି ଅରୁଚି,

ଇଚ୍ଛା ଅନିଚ୍ଛାର ଟିକିନିଖି ହିସାବ ସେ ରଖେ । ତାଙ୍କର ସବୁ ଅଭ୍ୟାସ ସହିତ ସେ ପରିଚିତ । ସେ ଆଜି ନାହିଁ ବୋଲି ଅଡୁଆ ଲାଗୁଛି, ଏକୁଟିଆ ଲାଗୁଛି ।

ବାପା-ବୋଉଙ୍କ କଥା ତାଙ୍କର ମନେନାହିଁ । ଶୁଣିଛନ୍ତି ସେ ପେଟରେ ଥିଲେ, ବାପା ଚାଲିଯାଇଥିଲେ କୌଣସି ଦୂରାରୋଗ୍ୟ ବେମାରୀରେ । ତାଙ୍କୁ ଚାରିବର୍ଷ ହୋଇଥିଲା, ବୋଉ ଚାଲିଗଲା ବି ତାଙ୍କୁ ଏକା ଛାଡ଼ି ।

ସେ ମାଉସୀ ଘରେ ବଡ଼ ହେଇଥିଲେ । ମାଉସୀଘରେ ଅନେକ ଭାଇଭଉଣୀ, ଅନେକ ମଣିଷଙ୍କ ଭିତରେ ଚଳିବାକୁ ପଡ଼ିଥିଲା । ସ୍ନେହ, ଆଦର, ଯତ୍ନ, ଭଳି ଦୁର୍ଲ୍ଲଭ ଶବ୍ଦ ସହିତ ତାଙ୍କର କେବେ ଭେଟ ହୋଇନି । ଗଣ୍ଡେ ଖାଇ ଖଣ୍ଡେ ପିନ୍ଧି ପାଠ ପଢ଼ି ମଣିଷ ହୋଇଛନ୍ତି, ନିଜ ଗୋଡ଼ରେ ଠିଆ ହୋଇଛନ୍ତି - ବାସ୍ ସେତିକି । ବଂଚିବା - ଯୋଉଠି ମୂଳକଥା ହେଇଯାଏ, ସେଠି କଣ ଖାଇଲି, କଣ ପିନ୍ଧିଲି, କିଏ ଦେଲା, କୋଉଠୁ ଆସିଲା, କିମିତି ଆସିଲା - ର ପ୍ରଶ୍ନ ହିଁ ଉଠେନା । ଖାଇଲି ବଂଚିଲି ସମୟର ହାତଧରି ଆଗକୁ ପାଦ ବଢ଼େଇଲି - ସେତିକି ଯଥେଷ୍ଟ । ପାଦ ବଢ଼େଇଲି ବୋଲି ତ ଆଜି ଆସି ଏଇଠି ପହଞ୍ଚିଛି - ତିଆରି ପାରିଛି ନିଜ ପରିଚୟଟିଏ । ସେଥିପାଇଁ ସେ କୃତଜ୍ଞ । ଈଶ୍ୱରଙ୍କ ନିକଟରେ । ଅନେକଙ୍କୁ ତ ଏତିକି ସୁଯୋଗ ବି ମିଳେନି । ତାଙ୍କୁ ମିଳିଛି । ମଣିଷ ଭିତରୁ ମାନବିକତା ହଜିନି ବୋଲି ଏବେ ବି ତାଙ୍କର ବିଶ୍ୱାସ ଅଛି । ତେବେ ଜୀବନର ଅନ୍ୟ ନାମ ସଂଘର୍ଷ । ଜୀବନ ଅଛି ତ ସଂପର୍କ ଅଛି । ତେବେ ସେ ଏକୁଟିଆ । ଏକୁଟିଆ ନିଜ ଭିତରେ, ଅଥଚ ତାଙ୍କ ଚାରିପଟେ ଅସଂଖ୍ୟ ମଣିଷ । ଏକଥା ଭାବିଲେ ନିଜେ ଆଶ୍ଚର୍ଯ୍ୟ ହୁଅନ୍ତି । କାହିଁକି ଏମିତି ଲାଗେ ତାଙ୍କୁ! ନିଜ ମନକୁ ନିଜେ ପଢ଼ିବାକୁ ପ୍ରୟାସ କରୁ କରୁ, ସେ ମଣିଷ ମନ ଭିତରକୁ ପଶିବାକୁ ଚାହିଁଲେ ।

ସତରେ, ମଣିଷର ମନ ବଡ଼ ବିଚିତ୍ର । ବିଚିତ୍ର ମଣିଷ ମନର ମାନଚିତ୍ର । ଅନେକ ବର୍ଷ ତଳର କଥା । ସେ ନୂଆ ହେଇ ଚାକିରିରେ ଜଏନ୍ କରିଥା'ନ୍ତି । କାମ କରିବାକୁ ଭଲ ଲାଗୁଥାଏ । ମନରେ ଉତ୍ସାହ, ଅନେକ ରୋଗୀ । ଅନେକ ପ୍ରକାରର ମନ । ଅନେକ ପ୍ରକାରର ମାନସିକ ସ୍ଥିତି । ସମୟ ନ ଥାଏ ହାତରେ । ସେତିକିବେଳେ, ଆଉଟ୍‌ଡୋରକୁ ଆସିଥିବା ରୋଗୀଙ୍କ ଭିତରେ ଥିଲା ଚଉଦ ପନ୍ଦର ବର୍ଷର ପିଲାଟିଏ । ବାପା ସାଂଗରେ ଆସିଥିଲା । ଛୋଟ ଚାଷୀ, ଅଶିକ୍ଷିତ । ବଡ଼ ବ୍ୟସ୍ତ ହେଇ କହିଥିଲା, ବାବୁ ଏଇଟି ମୋର ପୁଅ ଗୋଟିଏ ବୋଲି, ଆଉ ପାଞ୍ଚୋଟି ଝିଅ । ପାଠ ପଢ଼ାଉଥିଲି । ଦଶମ ଶ୍ରେଣୀ ପଢୁଥିଲା । ସବୁ ତ ଠିକ୍ ଥିଲା । ଖାଉଥିଲା, ଖେଳୁଥିଲା, ସ୍କୁଲ୍ ଯାଉଥିଲା, ମୋତେ ବିଲବାଡ଼ିରେ ସାହାଯ୍ୟ ବି କରୁଥିଲା, ଏଇ ଦି'ମାସ ହେଲା ହଠାତ୍ ଚୁପ୍ ଚାପ୍ ଗୁମ୍‌ସୁମ୍ ହୋଇଯାଇଛି । ଅନ୍ଧାର ଭିତରେ କିଏ ନଥିବା ଜାଗାରେ ନିଜକୁ ଲୁଚେଇ କାନ୍ଦୁଛି - ବହୁ କଷ୍ଟରେ ଖିଆପିଆ କରୁଛି । କିଛି ବି କହୁନି, ଯିମିତି କାହାକୁ ଭୟ

କରୁଛି" । ସେଇ ପିଲାଟି ଥିଲା ଏଇ ବିଜୁ । ସେ ପରୀକ୍ଷା କରିଥିଲେ । ପ୍ରଥମେ ମାସେ ଖଣ୍ଡେ ତାକୁ ଡାକ୍ତରଖାନାରେ ରଖିଦେଇ ଯିବାକୁ କହିଥିଲେ ତା' ବାପକୁ । ମାସେ ଛାଡ଼ି ଦି'ମାସ, ଚାରିମାସ ଗଲା । କ୍ରମଶଃ ସ୍ୱାଭାବିକ ଅବସ୍ଥାକୁ ଆସିଲା ମଧ । କୌଣସି କାରଣରୁ ସେ ମାନସିକ ଚାପର ଶିକାର ହେଇଥିଲା ନିଶ୍ଚୟ - ଗୋଟାଏ ପ୍ରକାର ଫିୟର କଂପ୍ଲେକ୍ସ । ସେଥିରୁ ନିଜକୁ ମୁକୁଳେଇବା ପାଇଁ ତାକୁ ଛ'ମାସରୁ ଅଧିକା ସମୟ ଲାଗିଲା । ସୁସ୍ଥ ହେଲା ପରେ କିନ୍ତୁ ସେ ଆଉ ଘରକୁ ଯିବାକୁ ଚାହିଁଲାନି । ଡାକ୍ତରଖାନା ପରିବେଶ ତାକୁ ବେଶ୍ ସୁହାଇଲା । ଛୋଟ ମୋଟ କାମରେ ସାହାଯ୍ୟ କଲା । ତାର ସଂଭ୍ରାନ୍ତ ବ୍ୟବହାରରେ ସମସ୍ତେ ସନ୍ତୁଷ୍ଟ ଥିଲେ । ତାର ଚାକିରି କରିବାକୁ ଇଚ୍ଛା ଥିଲା ସେଇଠି । ତା' ବାପା ବି ଚାହିଁଲା ସେଇୟା ।" ଆପଣ ତାକୁ ନୂଆଁ ଜୀବନ ଦେଇଛନ୍ତି - ଆପଣମାନଙ୍କ ପାଖରେ ହିଁ ସେ ଥାଉ । ବଞ୍ଚିଥାଉ ଭଲରେ । ହାତୀ ଯୋଉଠି ଥିଲେ ବି ରାଜାଙ୍କର । ମୁଁ ତାକୁ ଦାବୀ କରୁନି ।" ଆଉ ସେଇଦିନରୁ ସେ ନିଜେ ତାକୁ ପାଖକୁ ନେଇଁ ଆସିଲେ । ସେତେବେଳେ ପର୍ଯ୍ୟନ୍ତ ସେ ବଂଧୁମାନଙ୍କ ସହିତ ମେସ୍‌ରେ ରହୁଥିଲେ । ସେଇଦିନଠୁ ସେ ଅଛି ତାଙ୍କ ସହିତ ଭାଇ ଭଳି । ସେ ନଥିଲେ ତାଙ୍କୁ ଭଲ ଲାଗେନି । ସ୍ୱାଭାବିକ ଲାଗେନି । ତାର ଅଭାବକୁ ସେ ଅନୁଭବ କରନ୍ତି । କାଲି ଆସିବ ବିଜୁ । ଏ ଘର ଦାୟିତ୍ୱ ତାକୁ ଦେଇଦେଲେ, ସେ ମୁକ୍ତ ହେବେ । ବିଛଣା ଧରିବା ପୂର୍ବରୁ ବହି ଖଣ୍ଡେ ଧରି ପଢ଼ିବାକୁ ଚେଷ୍ଟା କଲେ ଭୃଗୁ । ରାତିରେ ଆଉ ଖାଇବା ଆବଶ୍ୟକ ନଥିଲା । ଲକ୍ଷ୍ମୀ ବେଶ୍ ଖୁଆଇଥିଲା ଦିହିଁଙ୍କୁ । ପେଟ ବି ପୂରିଛି, ମନ ବି ପୂରିଛି । ହଠାତ୍ ଆବୁରୁ ଜାବୁରୁ ଭାବନା ଭିତରକୁ ପଶି ଆସିଲା 'ଲକ୍ଷ୍ମୀ' ସବୁ ଭାବନା ଆଡ଼େଇ ଦେଇ ଲକ୍ଷ୍ମୀ ଆବୋରି ବସିଲା । ତାଙ୍କର ଚିନ୍ତା ଓ ଚେତନାକୁ ଏଥର । ଲକ୍ଷ୍ମୀ : ଶିଶିର ଭିଜା ଫୁଟନ୍ତ ଗୋଲାପ, ଆଃ !! ଭାବୁ ଭାବୁ ବହି ଖଣ୍ଡକ ଧରି ସେ ଲମ୍ୱ ହେଇ ପଡ଼ିଗଲେ ଖଟ ଉପରେ । ବିଜୁ ତାଙ୍କର ବାହାର ଦୁନିଆଁକୁ ସଜାଡ଼ି ସାଇତି ଆବୋରି ରଖିଥିଲା । ତାଙ୍କ ସୁଖଦୁଃଖ, ଭଲମନ୍ଦରେ ସାଥି ଦେଇଆସିଛି । ଆଉ ଏବେ, ମହକୁଥିବା ଗୋଛାଏ ରଜନୀଗଂଧାର ସ୍ତବକ ଭଳି ନିତିଦିନର ଉଦାସୀ, କର୍ମବ୍ୟସ୍ତ ସଂଜ ସକାଳକୁ ସଂଜୀବିତ କରିବା ସହିତ, ତାଙ୍କର ସମଗ୍ର ଚେତନ ଅବଚେତନକୁ ଆଛନ୍ନ କରି ରଖିଛି ଲକ୍ଷ୍ମୀ ଏକାନ୍ତ ଭାବେ । ଏ କଥା ମନକୁ ଆସିବା ମାତ୍ରେ ରୋମାଂଚିତ ହେଇ ଉଠିଲେ ବିଶିଷ୍ଟ ମନୋବିଜ୍ଞାନୀ ଡା. ଭୃଗୁ ସାମନ୍ତ । ଆଜି କିଏ ତ ଅଛି ଜଣେ ନିଜର ବୋଲି ଭାବିବାକୁ । ତାଙ୍କ କର୍ମବ୍ୟସ୍ତ ସମୟ ତକ ବାଦ୍ ଦେଲେ ଆଉ ଯାହା ବାକି ଥିବା ଶୂନ୍ୟସ୍ଥାନରେ ଏବେ 'ଲକ୍ଷ୍ମୀ' ହିଁ 'ଲକ୍ଷ୍ମୀ' । ଆଃ ! ମିଠା ମିଠା ସ୍ୱପ୍ନର ଦୁନିଆ ଭିତରକୁ ପଶିବାକୁ ଆରମ୍ଭ କରୁଥିଲେ ଭୃଗୁ ଆଖିପତା ଭାରି ହେଇ ଆସୁଥିଲା.... ।

|| ୬ ||

ଡା. ଭୃଗୁ ସାମନ୍ତଙ୍କ ପରାମର୍ଶ କ୍ରମେ ଇନ୍ଦୁମତୀକୁ ରାଞ୍ଚି ମେଣ୍ଟାଲ୍ ହସ୍‌ପିଟାଲ୍‌କୁ ସ୍ଥାନାନ୍ତରିତ କରିବା ପାଇଁ ନିଷ୍ପତ୍ତି ନିଆଗଲା । ଏହା ବ୍ୟତୀତ ତାଙ୍କ ପାଇଁ ଅନ୍ୟ ଉପାୟ କିଛି ନ ଥିଲା । ଜରାଶ୍ରମ ଇନ୍ଦୁମତୀର ଚିକିତ୍ସା ଭାର ତ ବହନ କରିପାରିନଥାନ୍ତା - କେବଳ ମାନବିକତା ଦୃଷ୍ଟିରୁ କିଛିଦିନ ପାଇଁ ଦାୟିତ୍ୱ ବହନ କରିଥିଲା ମାତ୍ର । ତଥାପି ଅନ୍ତେବାସୀଙ୍କ ସହାନୁଭୂତି, ସଦିଚ୍ଛା, ସେବା ଯତ୍ନର ଅଭାବ ନ ଥିଲା । ସମସ୍ତେ ଇନ୍ଦୁମତୀର ଯନ୍ତ୍ରଣାକୁ ନିଜ ଭିତରେ ଭାଗ କରି ନେଇଥିଲେ । ତାର ଲାଞ୍ଛନା ସମଗ୍ର ନାରୀ ଜାତିର ଲାଞ୍ଛନା ଥିଲା । ତା' ଜୀବନରେ ସାମାଜିକ ନ୍ୟାୟ ସେ ପାଇ ନଥିଲା । ସାଧାରଣ ପାରିବାରିକ ଜୀବନଟିଏ ନଥିଲା ଇନ୍ଦୁମତୀର - ସେ ଅବହେଳିତା ସୁରକ୍ଷା ଟିକିଏ ଦେବାରେ ବି ସମାଜ ଅସମର୍ଥ ହେଲା - ବଂଚିବାର ଅଧିକାର ଟିକିଏ' ବି ଦେଲାନି । ଭାବିଲେ ଏକଥା ଦୁଃଖ ଲାଗେ, ଲଜ୍ଜା ଲାଗେ । ଅଥଚ ଏକ ଅଖଣ୍ଡ ପାରିବାରିକ ଜୀବନ ଓ ଅମ୍ଳାନ ସଂପର୍କର ଭାବଗତ ଆଦର୍ଶର - ଉଦ୍‌ଘୋଷଣାରେ ଆମେ ଓ ଆମ ଦେଶ ବିଶ୍ୱ ଦରବାରରେ ଉଦାହରଣ ସୃଷ୍ଟି କରିଛୁ । ବିଶ୍ୱାସ ହୁଏନା, ଆଜି ଆମେ, ଏଭଳି ସ୍ଥିତିରେ ଆସି କେମିତି ପହଞ୍ଚିଛୁ! ଓ କାହିଁକି ? ଏକଥା ଭାବିଲା ବେଳକୁ 'ବୟସ୍କ ଚେତନା' ସବୁ ଆନ୍ଦୋଳିତ ହେବା ସଂଗେସଂଗେ ଅସହାୟ ଅସୁରକ୍ଷିତ ମନେ କରି ଆତଙ୍କିତ ହେଇପଡୁଥିଲା ନିଶ୍ଚୟ । ଭବିଷ୍ୟତ ବଂଶଧରଙ୍କ ଉପରେ ପ୍ରଶ୍ନବାଚୀ ଲାଗିଯାଉଥିଲା 'ନିଶ୍ଚିନ୍ତ ଭରସା' ଆଉ 'ଆସ୍ଥା' କୁ ନେଇ ।

ତଥାପି ଇନ୍ଦୁମତୀ ଜରାଶ୍ରମ ପରିବାରର ଜଣେ ଥିଲା । ଏବଂ ସଂବୁରି ମନ ଭିତରେ ନିଜ ପାଇଁ ସହାନୁଭୂତିର ଛୋଟ ଜାଗାଟିଏ ଅଧିକାର କରି ନେଇଥିଲା କାରୁଣ୍ୟର ଜୀବନ୍ତ ବିଗ୍ରହ ସାଜି । ତେଣୁ ତା' ଯିବା ଖବର ଶୁଣି ସମସ୍ତଙ୍କ ମନ ଉଦାସ ହୋଇଗଲା । ତା' ପାଇଁ ଦୁଃଖ ପ୍ରକାଶ କରିବାକୁ ତାର ଆତ୍ମୀୟ ସ୍ୱଜନ ତ କେହି ନ ଥିଲେ ତା' ସହିତ । ତା'ଛଡ଼ା ତା' ଜୀବନ ଅଂଧାର ଭିତରେ ଥାଇ, କ୍ରମଶଃ ଅଂଧାର ଭିତରକୁ ହିଁ ପଶି ଯାଉଥିଲା - ଜୀବନରେ କେବେ ସୂର୍ଯ୍ୟୋଦୟ ହେବ କି ନାହିଁ କିଏ କହିବ ସମୟ ଛଡ଼ା ?

ଦୀର୍ଘ ଦିନର ରହଣୀ ପରେ, ଦିନେ ଶେଷ ଗ୍ରୀଷ୍ମର ଏକ କ୍ଲାନ୍ତ ଅପରାହ୍ନରେ ସମସ୍ତ ଅନ୍ତେବାସୀ ଅଶ୍ରୁଳ ବିଦାୟ ଦେଇଥିଲେ ଇନ୍ଦୁମତୀକୁ - କାମନା କରିଥିଲେ ଅନ୍ତତଃ ଭଲ ହୋଇ ଆଲୁଅ ଦେଖୁ ଇନ୍ଦୁମତୀ ।

ଡା. ସାମନ୍ତ ଓ ରାଘବବାବୁ ଅଭିଭାବକ ହିସାବରେ ଇନ୍ଦୁମତୀକୁ ନେଇଁ ରାଞ୍ଚି ଅଭିମୁଖେ ଯାତ୍ରାରମ୍ଭ କଲେ ।

ସାଂଗରେ ଲକ୍ଷ୍ମୀ, ସୁଲତା ଓ ସୁକାନ୍ତ ବି ଗଲେ । କାରଣ ଇନ୍ଦୁମତୀର ସେବା ଯତ୍ନରେ ଏଇ ତିନିହେଁ ସିଧାସଳଖ ସଂପୃକ୍ତ ଥିଲେ ଏବଂ ଇନ୍ଦୁମତୀ ଏଇ ତିନିଙ୍କୁ ହିଁ ଚିହ୍ନି ଥିଲା । ହେମଲତା ରହିଲା ସରମାଁଙ୍କ ଦାୟିତ୍ୱରେ । ପରିବେଶକୁ ସଜଳ, ସକରୁଣ କରି ବିଦାୟ ନେଲା ଇନ୍ଦୁମତୀ 'ସୁଧାମୟୀ ଓଲଡ଼୍ ଏଜ୍ ହୋମ୍' ରୁ । ସଭିଙ୍କ ମନ ଓଜନିଆ ହୋଇଯାଇଥିଲା । ଇନ୍ଦୁମତୀର କିଛି କହିବାର ନଥିଲା କାହାକୁ ହେଲେ ତା'ର ଭୟାର୍ତ୍ତ ଆଖି ଦୁଇଟି ଅନେକ ଅନେକ ପ୍ରଶ୍ନବାଚୀକୁ ଛାଡ଼ିଯାଇଥିଲା ପଛରେ । ଅନେକ ଇନ୍ଦୁମତୀ, ଅନେକ 'ମାନୁ' ମାନେ ଏଇ ପ୍ରଶ୍ନ ଛାଡ଼ି ଯାଇଛନ୍ତି । ସେମାନଙ୍କର କ'ଣ ବଞ୍ଚିବାର ଅଧିକାର ନାହିଁ ? ? କଣ କରିଛି ସମାଜ ସେମାନଙ୍କ ପାଇଁ ? ଦେଇପାରିଛି କି ନାରୀକୁ ସୁରକ୍ଷା ? ସେମାନେ ବଂଚିତ, ଅବହେଳିତ, ନିପୀଡ଼ିତ, ଲାଞ୍ଛିତ ।

ସରସ୍ୱତୀ ଓରଫ୍ ସରମାଁ କ୍ରମଶଃ ପ୍ରକୃତିସ୍ଥ ହେଉଥିଲେ । ନିତି ସନ୍ଧ୍ୟାରେ ଭୃଗୁ ସାମନ୍ତଙ୍କୁ ଆଶ୍ରମ ଭିଜିଟ୍ କରିବାକୁ ପଡୁଥିଲା ତାଙ୍କର ଆସିବା ବିଳମ୍ବ ହେଲେ, ବ୍ୟସ୍ତ ହୋଇ ପଡୁଥିଲେ ସରସ୍ୱତୀ । ଅଜଣା ଭୟ, ଆତଙ୍କରେ ଶିହରି ଉଠୁଥିଲେ ହଜାରେ ପ୍ରଶ୍ନବାଣରେ ବ୍ୟତିବ୍ୟସ୍ତ କରିପକାଉଥିଲେ ସମସ୍ତଙ୍କୁ । ଅଗତ୍ୟା ଭୃଗୁ ସାମନ୍ତଙ୍କୁ ଆସିବାକୁ ହିଁ ପଡୁଥିଲା ।

ତାଙ୍କର ଆସିବା କାରଣ ଯେ କେବଳ ସରମାଁ ଥିଲେ ତା' ନୁହେଁ, ଲକ୍ଷ୍ମୀର ଆକର୍ଷଣ ବି କିଛି କମ୍ ନଥିଲା ତାଙ୍କ ପାଇଁ । ପାଟି ଖୋଲି କେହି କାହାକୁ କିଛି ନ କହିଲେ ବି, ଉଭୟେ ଉଭୟଙ୍କୁ ଖୋଜୁଥିଲେ ମନପ୍ରାଣରେ । ଉଭୟେ ନିକଟତର

ହେଉଥିଲେ- ଆନ୍ତରିକତା ବଢୁଥିଲା । ପ୍ରେମ ଆଉ ମମତାର ଏଇ ଅନ୍ତରୀଣ ସ୍ରୋତ, ଅନ୍ତଃସଲୀଳା ଫଲ୍‌ଗୁ ଭଳି ତିନୋଟି ପ୍ରାଣକୁ ଛୁଇଁ ଛୁଇଁ ବହି ଚାଲିଥିଲା ସଭିଙ୍କ ଆଡୁଆଳରେ ନିଜ ଛନ୍ଦରେ । ସତେଜ ହେଇ ଉଠୁଥିଲେ ସରସ୍ୱତୀ, କାର୍ଯ୍ୟକଳାପ ସ୍ୱାଭାବିକ ହେବାକୁ ଲାଗିଲା ଆଶ୍ଚର୍ଯ୍ୟ ଭାବେ । ଭୃଗୁ ସାମନ୍ତଙ୍କୁ ନିଜ ପୁଅ ଭାର୍ଗବ / ଭୃଗୁ ବୋଲି ହିଁ ସେ ଧରି ନେଇଥିଲେ ଅବଚେତନ ସ୍ତରରେ । ଭୃଗୁ ସାମନ୍ତଙ୍କର ମଧ୍ୟ ଏଥିରେ କୌଣସି ଆପତ୍ତି ନଥିଲା । ମା'ର କଲ୍ୟାଣ, ସ୍ନେହ ସଦିଚ୍ଛା ତ ସଭିଙ୍କ ପାଇଁ ଆଶୀର୍ବାଦ । ଈଶ୍ୱର ଯଦି ତାଙ୍କ ଆଞ୍ଜୁଳା ଭିତରେ ଏଇ ନିଛଳ ନିର୍ମଳ ମମତାକୁ ଅଜାଡ଼ି ଦେଉଛନ୍ତି, ସେ ତ ଭାଗ୍ୟବାନ୍ । ମା' ଓ ମମତାର ଏଇ ମର୍ଯ୍ୟାଦା ରକ୍ଷା କରିବା ତାଙ୍କର କେବଳ ଦାୟିତ୍ୱ ନୁହେଁ ଧର୍ମ ବି । ସମସ୍ତ ଅନ୍ତେବାସୀ ଚକିତ ହୋଇ ଦେଖୁଥିଲେ - ଏଇ ପରିବର୍ତ୍ତନର ସ୍ୱରୂପକୁ ବିଶେଷ କରି ରାଘବବାବୁ, ଅଭୟା ଓ ହେମଲତାଙ୍କୁ ବିଶ୍ୱାସ ଲାଗୁନଥିଲା - ଇଏ ତ ସତରେ ଚମତ୍କାର!! ହେଲେ ମନୋବିଜ୍ଞାନୀ ଡ.ସାମନ୍ତଙ୍କର ଅଜଣା ନଥିଲା ଯେ, ସରମାଁ ଏକ ଭ୍ରାନ୍ତ ପୃଥିବୀ ଭିତରେ ନିଶ୍ଚିନ୍ତରେ ବିଚରଣ କରୁଛନ୍ତି । ଏକଥା ଜାଣି ମଧ୍ୟ ସଜ୍ଞାନ ଚିତ୍ତରେ ସେ ନିଜେ ବାନ୍ଧି ହୋଇଯାଉଥିଲେ ସେଇ ମମତାର ବନ୍ଧନରେ । ଏଇ ସଂପର୍କ କେବଳ ଚିକିତ୍ସା ଓ ଚିକିତ୍ସକର ସଂପର୍କ ଭିତରେ ଆବଦ୍ଧ ହେଇ ରହିନଥିଲା । ପ୍ରତିଦାନରେ ସେ ଅଜାଡ଼ି ଦେଇଥିଲେ ତାଙ୍କର ଦୀର୍ଘ ଦିନର ସଂଚିତ ଅପତ୍ୟ ସ୍ନେହ, ବିଶ୍ୱାସ ଆଉ ଭରସାକୁ ସରମାଁର ମମତା ବୋଳା ପଣତକାନିରେ । ଉଭୟେ ଉଭୟଙ୍କ ପାଇଁ ପରିପୂରକ ଥିଲେ କହିବାକୁ ଗଲେ ।

ଜରା ଆଶ୍ରମର ଅନ୍ତେବାସୀ, କର୍ମଚାରୀ ସଭିଏଁ କ୍ରମଶଃ ଆଶ୍ୱସ୍ତ ହେବାକୁ ଲାଗିଲେ । ଭଲ ହେଉଛନ୍ତି ସରସ୍ୱତୀ । ଲକ୍ଷ୍ମୀର ଦାୟିତ୍ୱ କମିଲା । ପଢ଼ାପଢ଼ିରେ ସେ ଏଥର ବେଶି ସମୟ ବିନିଯୋଗ କଲା ଆସନ୍ତା ପରୀକ୍ଷାରେ ସେ ଯେ ବସିପାରିବ ତାର ଆତ୍ମବିଶ୍ୱାସ ଦାନା ଧରି ଆସିଲା । ତା'ଛଡ଼ା ଭୃଗୁ ସାମନ୍ତଙ୍କ ପ୍ରୋତ୍ସାହନ ତାକୁ କମ୍ ପ୍ରୋତ୍ସାହିତ କରୁନଥିଲା ।

## ।। ୭ ।।

ସମୟ ଧାଉଁଥିଲା ତା' ନିଜ ବାଟରେ । ବର୍ଷା ଯାଇ ଶରତ ଆସିଲା । ମେଘକନ୍ୟାମାନେ ନିଜ ନିଜ ପଣତରୁ ବର୍ଷା-ଧୂଳି ଝାଡ଼ି ଜ୍ୟୋତ୍ସ୍ନାର କର୍ପୂର ମାଖି ହେଲେ ଦେହମୁହଁରେ । କୁସୁମିତ ହେଲା ବସୁନ୍ଧରା । ଜହ୍ନିଫୁଲ ଫୁଟିଲା ଆଶ୍ରମର ତାରବାଡ଼ରେ । ଦୂରରୁ ପଡ଼ିଆ ଧାରରେ କାଶତଣ୍ଡୀ ଫୁଟି ଚାମର ଢାଳିଲା । ଶ୍ୱେତାମ୍ବରୀ ପିନ୍ଧି ବସୁମତୀ ପ୍ରସ୍ତୁତ ହେଲା ଶାରଦୀୟ ଦେବୀ ଆରାଧନା ପାଇଁ । ଘରେ ବାହାରେ ସମାରୋହର ସଜବାଜ ଲାଗିଗଲା । ମା' ଆସିବେ ଦୁର୍ଗତି ନାଶି ଅଭୟ ଦେବାକୁ ଜଗତଜନଙ୍କୁ ।

ସୂର୍ଯ୍ୟ ମା' କୋଳକୁ ଯାଇ ନାହାନ୍ତି । ଚା' ଖିଆ ପର୍ବ ଆରମ୍ଭ । ଜରାଶ୍ରମର ବାହାର ବାରଣ୍ଡାରେ ବସି ଚା' ଖାଇବାକୁ ଏକାଠି ବସିଥିଲେ ଧୀରାମାଇଁ, ରେବା ମାଉସୀ, ସାବି ଖୁଡ଼ୀ, ନିଶାନାନୀ, ରାଣୀ ଆଉ ହେରିକା । ଆଖି ପଡ଼ିଗଲା ଜହ୍ନିଲଟା ଉପରେ । କି ସୁନ୍ଦର ଫୁଟିଛି ଫୁଲ, ତରା ଭଳି, ମନ ଉଡ଼ିଗଲା ପଛଦିନକୁ ପଛେଇ ପଛେଇ.... ଖୁଦୁରୁକୁଣୀ ଓଷା, ଜହ୍ନିଓଷାର ବେଳ ସେଇ ପିଲାଦିନ । ସେ ତ ଗଲା, ସଂସାର କରିବା ବେଳ ଆସିଲା, ପୁଅ ଝିଅଙ୍କୁ ନେଇଁ ଘରକରଣା - ନିଜ ମନମାଫି ସଂସାର । ଏଇ ମାସଟା ଖାଲି ପର୍ବପର୍ବାଣୀ ପୂନିଅଁ ଓଷାର । ଘରେ ଘରେ ମଉଛବ । ଝିଅ ଝିଆରୀ, ବଂଧୁ ବାଂଧବ, ଅତିଥି, ଅଭ୍ୟାଗତଙ୍କ ଯିବା ଆସିବା । ଭାରଥୋର, ନୂଆଲୁଗା କେଡ଼େ ଖୁସିର ସେ ସବୁ ଦିନ..... ନିଃଶ୍ୱାସ ନେବାକୁ ତର ନାହିଁ..... ନିଶା ନାନୀ ପୁରୁଣାଦିନକୁ ହେଜି ହେଇ ଛୋଟ ନିଃଶ୍ୱାସଟିଏ ନେଲେ ।

"ସତକଥା, ଯୁଗେ ହେଇଗଲା ଭଳି ଲାଗୁଛି । କେତେଦିନରୁ ଘରଦ୍ୱାର ଛାଡ଼ି ଆସିଲେଣି । କ'ଣ କେମିତି କରୁଛନ୍ତି ପିଲାଏ କେଜାଣି - କିଏ ଅଛି ଯେ କହିବ । ଆମେ ତ ସାତପର ହେଇଗଲୁଣି..... ମାଧୁରୀ ଅପା କଥା ଯୋଡ଼ିଲେ ।

"ସ୍ୱପ୍ନ ପରି ଲାଗୁଛି ଭାବିଲେ । ସେଇଦିନ ସବୁ କୁଆଡ଼େ ହଜିଗଲାଣି । ଯାହା ଶରଣାର୍ଥୀ ଭଳି ରହିଥିଲୁ ଅଂଧାର ଭିତରେ । ସୂତା ଛିଣ୍ଡିଗଲା, ସଂପର୍କ ଛିଡ଼ିଗଲା । ମୁଁ ତ ମରହଟ୍ଟୀ ହେଇଗଲି । ନୂଆଁ ପାଠପଢୁଆ ଝିଏ ଘରେ ପଶିଲେ କିଛି ମାନିଲେନି ପ୍ରଥା, ପରଂପରା । ପୂଜାପାଠ ଚୁଲିକୁ ଗଲା । ଏକାବେଳକେ ଏରୁଣ୍ଡିବନ୍ଧ ଡିଆଁଇ ପଠେଇ ଦେଲେ ବାନପ୍ରସ୍ଥ କର ବୋଲି । କହୁ କହୁ ରାଣୀ ଆଈ ଆଖି ପୋଛିଲେ ପଣତରେ । ସେ ସବୁ ଗଲା ଜନ୍ମର କଥା ନାନୀ, ଭୁଲିଯିବା ହିଁ ଭଲ । ଭାବିଲେ ମନକୁ ଦୁଃଖ ଦେବ । ସେ ଜୀବନ ତ ଆମ ପାଇଁ ଅଣଲେଉଟା ରୁକୁଣା ରଥ । କହିଲେ ସୁଧୀରା । ସମସ୍ତଙ୍କ ଭିତରେ ବସି, ହେମଲତା ଆଲୋଚନା ଶୁଣୁଥିଲା । ସମସ୍ତେ ବୟସର ଶେଷ ପାହାଚରେ । ପୁରୁଣା ଦିନକୁ ହେଜି ହେଉଛନ୍ତି । ଏଇବେଳଟା, ସଂଜ ଆସିବା ପୂର୍ବରୁ, ତାକୁ ଟିକିଏ ସମୟ ମିଳେ ନିଃଶ୍ୱାସ ନେବାକୁ । ମୁହୂର୍ତ୍ତେ ବସିଯାଏ ସମସ୍ତଙ୍କ ମେଳରେ ଦୁଃଖ ସୁଖ ହେବାକୁ ସୁଲତା ଚା' କରିଦିଏ ସେ ଚା' ଖାଏନା, ହେଲେ ବସେ ସମସ୍ତଙ୍କ ସହିତ ସମସ୍ତଙ୍କ କଥା ଶୁଣୁଶୁଣୁ, ମନେ ମନେ ଭାବିଲା । ଏଇ ଯୋଉ ବୟସ୍କ ମଣିଷମାନେ ଲମ୍ୱା ଜୀବନଟାକୁ ନିଜ ପ୍ରକାରେ ଜିଇଁ ଆସିଛନ୍ତି । ସଂସାରର -ସାତରଂଗ ମିଞ୍ଝି ହୋଇ ରହିଛି ଏଇ ଦେହ ମନରେ । ସମୟ ସିନା ଉପର ଚମଡ଼ାକୁ ଧୋଇ ଧାଇ ଫିକା କରିଦେଇଛି - ମୁଣ୍ଡରେ ଧଳା ବୋଳି ଦେଇଛି, ନ ହେଲେ ମଂଜ ଭିତରେ ମାଖି ହୋଇ ରହିଥିବା ରଂଗ ଆଉ ଉଲ୍ଲାସର କାହାଣୀ ତ ହଜିଯାଇନି । ଝୁରି ହେଉଛନ୍ତି ଘରୁଆ ଘରର ମା', ମାଉସୀ ଆଈମାନେ ।

ହେମଲତାର ମନ ତେଣିକି ଭାବନାର ଅନ୍ୟ ବାଟ ଧରିଲା । ତାଙ୍କ ପାଇଁ ସିନା ଜୀବନଟା ଦୁଃସହ ଥିଲା, ସମର୍ଥ ନଥିଲା କିଛି । ମୁଠେ ଭାତ, ଟିକେ ଆଶ୍ରା ପାଇଁ ତାଙ୍କ ବିକଳ ହେଉଥିଲେ । ସେଇ ନିତି ସଂଘର୍ଷର ଜୀବନରେ ପୂଜାପାର୍ବଣ, ପୁନିଅଁ, ଯାନିଯାତରାର ମାନେ କିଛି ନ ଥିଲା ସେମାନଙ୍କ ପାଇଁ ।

ତଥାପି ରାହାସପୁର ଜମିଦାର ଘରେ ହେଉ କି ଭାବପୁର ତିଆଡ଼ୀଘରେ ଥିଲାବେଳେ ହେଉ, ସେ ଦେଖିଛି ଏଇସବୁ ପୂଜାପାର୍ବଣ, ଓଷା ପୂନେଇଁର ଥାଟବାଟ । ବିଶେଷ କରି କୁଆଁର ପୂନେଇଁ ଦୁର୍ଗାପୂଜା ପାଇଁ ସବୁଠି ନିଆରା ପ୍ରସ୍ତୁତି । ନିଜର କିଛି ନ ଥିଲେ ବି ସମସ୍ତଙ୍କ ସହିତ ମନ ଉଷତ ହୁଏ, ଆନନ୍ଦରେ ଭାଗ ନିଏ । ରାହାସପୁର ସାନ୍ତାଣୀ ତ ନୂଆ ଲୁଗାପଟା ଦେଉଥିଲେ ତାଙ୍କର ହଜିଆ ମୂଲିଆ, ସେବାକାରୀମାନଙ୍କୁ ।

ଭାବପୁର ବୁଢ଼ୀ ସା'ନ୍ତାଣୀ କିନ୍ତୁ ନିଆରା । ସେ ତ ମଣିଷଙ୍କୁ ଭଲ ପାଉଥିଲେ । କରୁଣାର ଅବତାର । ତା' ପାଇଁ, କେଶବା ପାଇଁ ନୂଆ ଲୁଗା ହେଉଥିଲା ରାଧାମାଧବଙ୍କ ପୂଜା, ଦେବୀ ପୂଜା ବେଳେ ସଭିଙ୍କୁ ପ୍ରାୟ ଲୁଗା ବାଣ୍ଟୁଥିଲେ । ଯନ୍ତାଳ ହେଉଥିଲା । ତା' ହାତକୁ ଫୁରୁସତ୍ ନଥିଲା । ମନେପଡ଼ିଲା କମଳା ମାଁ - ସମସ୍ତଙ୍କଠୁ ଭିନ୍ନ ଅଲଗା । ତା' ପାଖରେ କିଛି ନଥିଲା ନା ଧନ, ନା ମଣିଷ ବଳ - ହେଲେ କୋଟିଏ ଟଙ୍କାର ମନଟିଏ ଥିଲା ।

କୁଆଁର ପୂନିଅଁ ଆସିଲେ, ଯେମିତି ବି ହେଉ, ନୂଆ ଛାମାଖଣ୍ଡେ କିଣି ଆଣିବ ଲକ୍ଷ୍ମୀ ପାଇଁ, କହିବ କେତେଦିନ ଝିଅ କୁଆଁରୀ ହୋଇ ରହିବ । କପାଳରେ ସିନ୍ଦୂର ଲାଗିଲେ କୁଆଡ଼େ ହଜିଯିବ ପିଲାଦିନର ସୁଖ ସରାଗ । ଏବେ ତ ମୁଁ ବଞ୍ଚିଛି, ଲକ୍ଷ୍ମୀ ପିନ୍ଧିବନି ନୂଆଁ ଖଣ୍ଡେ ? ଚାରି ପିଲା ପିନ୍ଧିବେ ଯେତେବେଳେ ତାକୁ ଅଭିମାନ ଲାଗିବନି ନ ପିନ୍ଧିଲେ । ଆହା, କେଡ଼େ ବଡ଼ ମନଟାଏ ନଥିଲା କମଳାମା'ର !

ହେମର ଆନମନାପଣ ରାଣୀ ଆଈ ଆଖିରୁ ଲୁଚି ପାରିଲାନି ପଚାରିଲା, କ'ଣ ଭାବୁଛୁ କି ହେମ, କେଶବା କଥା ? କେଶବାର ଦେହ ପ୍ରାୟ ଭଲ ରହୁନଥିଲା ତ ।

ହେମ ଚମକି ପଡ଼ିଲା ହଠାତ୍ । ନିଜକୁ ସହଜ କରିବାକୁ ଯାଇ କହିଲା, ନାହିଁ, ତମମାନଙ୍କ କଥା ଶୁଣୁ ଶୁଣୁ ମନେପଡ଼ିଗଲା ପୁରୁଣାଦିନର କଥା । ମୋର ସିନା ସମର୍ଥ ନଥିଲା କିଛି, ହେଲେ ଯୋଉଠି ଥିଲି, ଯାହା ଘରେ ଥିଲି, ସେମାନଙ୍କ ଆନନ୍ଦ ଉଲ୍ଲାସରେ ତ ଭାଗ ନେଇଥିଲି ନା.....

"ତା ନୁହେଁ ତ ଆଉ କ'ଣ । ଜୀବନ କେତେ ବାଟରେ, କେତେ ମୋଡ଼ ଦେଇ ଚାଲେ । କେବେ ସୁଖ କେବେ ଦୁଃଖ । ସବୁ ଏଇ ମଣିଷ ଭୋଗେ । ସୁଖଦିନରେ ଦୁଃଖ ମନେପଡ଼େ, ଦୁଃଖ ବେଳେ ସୁଖର ଦିନକୁ ହେଜି ହୁଏ । ଯାହା ଗଲାଣି ଯାଉ, ଆଗକୁ ଆସୁଥିବା ସମୟକୁ ବାଟ ଓଗାଳି ଧରି ସିନା ରଖି ପାରିବାନି ସବୁଦିନ ପାଇଁ । ସେଇ ମୁହୂର୍ତ୍ତକର ଖୁସି ଆନନ୍ଦକୁ ଛାଡ଼ିଦେବା କାହିଁକି ? କହିଲେ ସାବି ଖୁଡ଼ୀ । ଆଉ ମାତ୍ର ଦିନ କେଇଟା ରହିଲା କୁଆଁର ପୂନେଇଁ । ଲକ୍ଷ୍ମୀ ତ ଆମ ବୁଢ଼ାବୁଢ଼ୀଙ୍କ ପାଇଁ ଏକୁଟିଆ ଝିଅ - ତା' ପାଇଁ ନୂଆ ଲୁଗା ଖଣ୍ଡିଏ କିଣି ଦେଇ ପାରିବାନି ଆମେ ?

"ତା'ପାଇଁ ପରା ଅଭୟା ମା' ରାଘବବାବୁଙ୍କ ଘରୁ ଶାଢ଼ୀ ଆସିବ । ସବୁଥର ଆସେ" -ସୁଲତା କହିଲା । ତେବେ ମୋ ମନକୁ ଗୋଟାଏ କଥା ଆସୁଛି..... ସୁଲତା ମୁହୂର୍ତ୍ତେ ଅଟକି ଚାହିଁଲା ସମସ୍ତଙ୍କ ମୁହଁକୁ..... "କହୁନୁ କ'ଣ କହିବାକୁ ଚାହୁଁଛୁ.... ନିଶାନାନୀ ଆଖିର ଚଷମା ପୋଛୁ ପୋଛୁ କହିଲେ । ଆଖିକୁ ସବୁ ଛାଇଛାଇଆ ଦିଶୁଛି ତ"..... କହୁଥିଲି କଣ କି ....ସୁଲତା ସାହସ ଜୁଟେଇ କହିବାକୁ ଚାହିଁଲା । କହିଲା,

"ଏ ବର୍ଷ ଆମ ଆଶ୍ରମରେ ପୂନେଇଁ ଉତ୍ସବ ପାଳିଲେ କିମିତି ହୁଅନ୍ତା ? କିଛି ନ ହେଲେ କ୍ଷୀରି ପିଠା କରି ଖାଆନ୍ତେ । କାର୍ତ୍ତିକ ଆସିଲେ ତମେମାନେ ତ ଶୁଦ୍ଧ ଆହାର ଖାଇବ ହବିଷ ନାଁରେ.........

"ସୁଲତା କିଛି ନାକରା କଥା କହୁନି ମ...." କହିଲେ ମାଧୁରୀ ମାଈଁ ଉତ୍ସାହିତ ହେଇ । ସମସ୍ତେ ମିଳିମିଶି ରୋଷେଇ କରିବା, କ'ଣ କହୁଛୁ ହେମ ? "କୋଉ କଥା ପଡ଼ିଛି କି ଭାଉଜ.... ? ସଂଜବେଳିଆ ବୁଲି ବାହାରିଥିବା ଶିବ ସାନ୍ତାରା, ରାଜୁ ପରିଡ଼ାଙ୍କ କାନରେ କିଛି କଥା ପଡ଼ିଗଲା ହଠାତ୍ । ଏଇ ଆମ ସୁଲତା କହୁଛି ପୂନେଇଁ ପାଳିବ କ୍ଷୀରିପିଠା କରି, ମୁଁ ବି କହିଲି ଖେଚେଡ଼ି ଡାଲମା କରି ଖାଇବା ସଂଜକୁ । ରାଘବବାବୁ ଆଉ ଡାକ୍ତରବାବୁଙ୍କୁ ନିମନ୍ତ୍ରଣ କରିବା ଆମ ସହିତ ଯୋଗଦେବା ପାଇଁ.....ଭାରି ଭଲ ହେବ । ଅନେକ ଦିନ ହେଇଗଲାଣି - ପର୍ବପର୍ବାଣି ଦିନରେ ଟିକେ ଭଲମନ୍ଦ ଖାଇ ଆନନ୍ଦ ଉଲ୍ଲାସ କରିବା ଭୁଲିଗଲାଣି ମଣିଷ । ଇଏ ତ ଘୋଷରା ଜୀବନ-ଚିଟା ଲାଗିଲାଣି । ପିଲାଙ୍କ ମେଳ, ଗାଁ ପଶାପାଳି ସାଂଗସାଥୀଙ୍କ ସହିତ ତାସ୍ ମାତ୍ "ସିଏ ଗୋଟାଏ ନିଆରା ଜୀବନ ଥିଲା... କହୁ କହୁ ଉଦାସ ହେଇଗଲେ ଶିବ ସାନ୍ତାରା । ପତ୍ନୀଙ୍କ ଦେହାନ୍ତ ପରେ ଝିଅ ଜୋଇଁ ଦିଲ୍ଲୀ ଚାଲିଗଲେ । ବୟସ ହେଇଗଲାଣି... ଭଲ ଦିଶୁନି ଆଉ ଆଖିକୁ..... ଏଇ ଆଶ୍ରମକୁ ଚାଲି ଆସିଛନ୍ତି ସେ । ହଁ ଆଉ କେଇଟା ଦିନର ଜୀବନ ଆମର ଯେ..... ହେଇଟି ଦେଖୁ ଦେଖୁ ରଘୁଭାଇନା ଚାଲିଗଲେ...ରାଜୁ ପରିଡ଼ାଏ କହିଲେ କର ଯାହା କରିପାରିବ । ହେଲେ କଥାଟା ରାଘବବାବୁଙ୍କ କାନକୁ ଯେମିତି ଯିବ, ସିଏ ଜାଣିବା କଥା ନା.... । ଲକ୍ଷ୍ମୀ ଜାଣିଲାଣି ?" ଆଲୋଚନା କରୁ କରୁ ସଂଜ ଆସିଗଲା । ସମସ୍ତେ ଉଠିଲେ ପ୍ରାର୍ଥନା ପାଇଁ । ପ୍ରାର୍ଥନା ଘଣ୍ଟା ବାଜିଲା ଢଂ ଢଂ ହେଇ ।

ସରସ୍ୱତୀଙ୍କ ସ୍ୱାସ୍ଥ୍ୟାବସ୍ଥାରେ ଉନ୍ନତି ଆସିଥିଲା । ଖିଆପିଆ କରୁଥିଲେ ଠିକ୍ । ହେଲେ ମାନସିକ ସ୍ତରରେ ବିଶେଷ କିଛି ସିମିତି ଅଗ୍ରଗତି ଘଟି ନଥିଲା । ବୁଲାଚଲା କରୁଥିଲେ ନିଜ କାମ ନିଜେ କରୁଥିଲେ । କିନ୍ତୁ ବାହାରକୁ ଯିବାକୁ ଚାହୁଁନଥିଲେ, କହୁଥିଲେ.... "କେମିତି ଯିବି.... କାଳେ, ଭୃଗୁ ବାପା ଆସିଯିବେ ହଠାତ୍, ମୋତେ ଖୋଜି ଯଦି ନ ପାଇବେ, ଚାଲିଯିବେ ପୁଣି । ମୁଁ କୁଆଡ଼େ ଯିବିନି ତାଙ୍କୁ ଅପେକ୍ଷା କରିଛି ପରା ।

ହେଲେ, ଏଇ ସପ୍ତାହେ ହେବ, ସରମାଁ ଆଉ ପ୍ରକାରେ ଜିଦ୍ ଧରିଛନ୍ତି । ଡ. ସାମନ୍ତଙ୍କୁ ଦେଖିଲା ମାତ୍ରେ ତାଙ୍କର ଗୋଟିଏ କଥା "ମୁଁ ତ ଭଲ ହୋଇଗଲିଣି । ଆଉ କାହିଁକି ରହିବି ଏଠି ? ତୁ କଷ୍ଟ କରି ଆସୁଥିବୁ ମୋତେ ଦେଖିବାକୁ ବର୍ଷା ଶୀତ କାକରରେ

କାହିଁକି,ଏଥର ମୋତେ ଘରକୁ ନେଇଯା'...... ଘରକୁ ଯିବା । କେତେ କାମ ପଡ଼ିରହିଛି ଘରେ ।"

ଭୃଗୁ କହନ୍ତି, "ଯିବା ତ ନିଶ୍ଚେ, ଯାଉ ଆଉ କିଛି ଦିନ, ସ୍ୱାସ୍ଥ୍ୟ ଆଉ ଟିକେ ଭଲ ହୋଇଯାଉ । ଘରକୁ ଗଲେ ତମେ ଆହୁରି କାମରେ ବ୍ୟସ୍ତ ରହିବ ପୁଣି ବିଗିଡ଼ିଯିବନି ସ୍ୱାସ୍ଥ୍ୟ ? ଏଠି ଲକ୍ଷ୍ମୀ, ସୁଲତା, ସମସ୍ତେ ଅଛନ୍ତି ତମ କଥା ବୁଝିବାକୁ..... ଘରେ ଏକୁଟିଆ ଲାଗିବ ତମକୁ, ମୁଁ ତ ହସ୍‌ପିଟାଲ୍ ଚାଲିଯିବି । ମିଛର ଆଶ୍ରୟ ନିଅନ୍ତି- ଡା. ସାମନ୍ତ । ମନେ ମନେ ଭାବନ୍ତି, ସରମାଁ ପାଇଁ ସେ କ'ଣ କରିପାରିବେ । ବଡ଼ ସମ୍ବେଦନଶୀଳ ସ୍ଥିତିରେ ସେ ଅଛନ୍ତି । ଘରକୁ ନେଇଯିବାରେ କୌଣସି ଅସୁବିଧା ନାହିଁ – ବିଲ୍କୁ ଦେଖାଚାହାଁ କରିପାରିବ । କିନ୍ତୁ ପରିସ୍ଥିତି ଯଦି ଭିନ୍ନ ଆକାର ନେଲା, ମାନସିକ ଆଘାତ ପାଇଲେ ସରମା କୌଣସି କାରଣରୁ – ତା'ହେଲେ ତ ଆଉ କିଛି ବାଟ ତାଙ୍କ ପାଖରେ ରହିବନି । ଏ' ବିଷୟରେ ସେ କଥାବାର୍ତ୍ତା ବି କରିଛନ୍ତି ବଂଧୁମାନଙ୍କ ସହିତ, ରାଘବ ବାବୁଙ୍କ ସହିତ । ସେ ଯଦି କୌଣସି ପ୍ରକାରେ ନିଜ ସ୍ଥିତିକୁ ଫେରିପାରନ୍ତେ, ସଚେତନ ହୁଅନ୍ତେ ସତ ଘଟଣା ସଂପର୍କରେ -ତା'ହେଲେ କିଛି ଅସୁବିଧା ନଥିଲା, ସେ ସଂଭାଳି ନିଅନ୍ତେ ସବୁ । ସ୍ୱପ୍ନ ଭିତରେ ବଞ୍ଚିଲା ଭଳି ସିଏ ବଞ୍ଚିଛନ୍ତି ବର୍ତ୍ତମାନ, ସେଥିପାଇଁ ସେ ଆଶଙ୍କିତ । ରିସ୍କ ନେବାକୁ ଚାହୁଁନାହାନ୍ତି ।

ଆଜି କିନ୍ତୁ ଗୋଟାଏ ପ୍ରକାର ଜିଦ୍ ଧରିଲେ ଡା. ସାମନ୍ତଙ୍କ ପାଖରେ । " କିଛି ନ ହେଲେ ଟିକେ ବୁଲି ଆସିବା ଘରଆଡ଼େ..... ମୋତେ ନେଇ ଚାଲ..... ମୋ ମନ ଲାଗୁନି ଏଠି । ମୋତେ ଏକା ଲାଗିବ ବୋଲି ଭାବୁଛୁ ତ, ଆମେ ନେଇଁଯିବା ଲକ୍ଷ୍ମୀକୁ ସାଙ୍ଗରେ, ଆଉ କିଛି ଅସୁବିଧା ନଥିବ ।

ଭୃଗୁ ଅସୁବିଧାରେ ପଡ଼ିଲେ ସତକୁ ସତ କ'ଣ କହିବେ ନ କହିବେ ଭାବୁ ଭାବୁ କହି ପକେଇଲେ ହେଲେ ଲକ୍ଷ୍ମୀର ପରା ପରୀକ୍ଷା ଅଛି । ପଢୁଛି ସେ । ଖୁବ୍ ବ୍ୟସ୍ତ ଅଛି ଏବେ, ତା' ପରୀକ୍ଷା ସରିଯାଉ..... ନେଇଯିବା ତାକୁ । ତାର ଆପତ୍ତି ନଥିବ କହିଦେଇ, ପାଖରେ ଠିଆ ହୋଇଥିବା ଲକ୍ଷ୍ମୀକୁ ଚାହିଁ ମୃଦୁ ହସି ପଚାରିଲେ "କିଛି ଆପତ୍ତି ଅଛି ତମର ମୋ' ଘରକୁ ଯିବାକୁ... ମା ଚାହୁଁଛନ୍ତି ତମେ ଯିବା ପାଇଁ... କ'ଣ ଯିବା ତ ?

ଲକ୍ଷ୍ମୀ ବୁଝିପାରିଲା କଥାର ବ୍ୟଞ୍ଜନା । ସାଙ୍କୁଡ଼ି ଗଲା ଲଜ୍ଜାରେ ନିଜ ଭିତରେ । ମୁହୂର୍ତ୍ତେ ଅଟକି ଉତ୍ତର ଦେଲା ସରମାଙ୍କୁ ଚାହିଁ । "ସତକଥା ମା' ପରୀକ୍ଷା ପାଇଁ ବ୍ୟସ୍ତ ଅଛି ମୁଁ । ତା' ଛଡ଼ା ବାପାଙ୍କୁ ଛାଡ଼ି ତ ଏବେ ଯିବା ସମ୍ଭବ ହେବନି । ସେ ଖୁବ୍ ଅସୁସ୍ଥ ନା, ଚାଲି ପାରୁନାହାନ୍ତି । ଭଲ ହେଇଯା'ନ୍ତୁ ଟିକିଏ..... ଯିବା । ଏଠି ତ କିଛି ଅସୁବିଧା ହେଉନି ତମର ନା ।" ଠିକ୍ ଏତିକି ବେଳକୁ ସୁଲତା ଆସି ପହଞ୍ଚିଲା..... । କାନରେ

ବାଜିଲା 'ଯିବା' ଶବ୍ଦ, ପଚାରିଲା କୁଆଡ଼େ ଯିବ ଦେଈ ? "ସରମା ଡାକୁଛନ୍ତି ତାଙ୍କ ସହିତ ଘରକୁ ଯିବା ପାଇଁ...."

"କିମିତି ଯିବୁ ଯେ..... ଆମେ ପରା କୁଆଁର ପୂନେଇଁ ପାଳିବା, ଆଉ ଦିନ କେଇଟା ପରା ?"

"ସତେ ! ସରସ୍ୱତୀଙ୍କ ଭାବନା ସିଆଡ଼କୁ ମୋଡ଼ି ହେଇଗଲା ତେଣିକି । ପିଠାପଣା, ନୂଆଁ ଲୁଗା, ଚାନ୍ଦ, ଜହ୍ନି ଓଷା ଭିତରେ ପୁଣି ମନେପଡ଼ିଲେ ଭୃଗୁର ବାପା । "ବାପା ଆସିବେ ତ ? ତା'ହେଲେ ମୋତେ ଏଠି ଅପେକ୍ଷା କରିବାକୁ ପଡ଼ିବ । ତୋ'ପାଇଁ ନୂଆଁ ଲୁଗା ନେଇ ଆସିବେ ତ 'ନିଶ୍ଚୟ' ଭୃଗୁ କହିଲେ, ଅବଶ୍ୟ ତାଙ୍କୁ ଛୁଟି ମିଳିଲେ ହେଲା ।" କଥା ଭିତରେ ଔଷଧ, ଇଞ୍ଜେକସନ୍ ପାଇଁ ସମୟ ହେଇ ଯାଇଥିଲା । ଡ.ସାମନ୍ତ ଇଞ୍ଜେକସନ୍ ଦେଇସାରି କହିଲେ ସୁଲତାକୁ, ସରମା ଏଥର ଶୋଇପଡ଼ିବେ, ତାଙ୍କୁ ଖାଇବାକୁ ଦେଇ ଦେଇପାର । ଶୁଭରାତ୍ରି ଜଣେଇ ବିଦାୟ ନେଲେ ଡ. ସାମନ୍ତ ସେଦିନ ପାଇଁ ।

ଗଲା ସପ୍ତାହଟା ଚାରିଆଡ଼େ ଦୁର୍ଗାପୂଜାର ଧୂମ ଲାଗିଥିଲା, ଶୁଭୁଥିଲା, ଦେବୀ ଆବାହନୀର ମନ୍ତ୍ର । ଆର୍ତ୍ତ ମଣିଷର ମା'ଙ୍କ ପାଖରେ କରୁଣା ଭିକ୍ଷା - 'ରୂପଂଦେହୀ, ଜୟଂଦେହୀ, ଯଶୋଦେହୀ'ର ମନ୍ତ୍ରୋଚ୍ଚାରଣ ମଣିଷର ଆଶା, ଆକାଂକ୍ଷା, କାମନାକୁ ସଂଜୀବିତ କରୁଥିଲା - ସଂଜୀବିତ ହେଉଥିଲେ ଆକାଶରୁ ମାଟି ପର୍ଯ୍ୟନ୍ତ ସକଳ ପ୍ରାଣୀ ଓ ପ୍ରକୃତି ।

ଗଲା କାଲି ଥିଲା ଭସାଣି । ଦଶହରା ଦିନ ମାଧୁରୀ, ସାବିତ୍ରୀ, ରେବତୀ, ନିଶାମଣି ଓ ସୁଧୀରା ମନେ କଲେ ଦେବୀ ମେଢ଼ ଦେଖି ଆସିବାକୁ, ଅନ୍ୟମାନେ ଚାଲିବୁଲିବା ପାଇଁ ସମର୍ଥ ନଥିଲେ । ନିଶାମଣି କହିଲା, ଆଜିକୁ ତ ଆମେ ଟିକିଏ ସମର୍ଥ ଅଛୁ, କିଏ ଜାଣେ ଆସନ୍ତା ପୂଜାପାର୍ବଣକୁ କଣ ହୋଇଥିବା, ଥିବା କି ନଥିବା । ଚାଲ ଥରେ ଦେଖି ଆସିବା ଦେବୀଙ୍କୁ । ସମସ୍ତେ ମିଶି ରାଣୀ ଆଈଙ୍କୁ ସାଂଗରେ ଟାଣିଲେ । ଚାଲ ଯିବା । ହେମଲତା ବି ବାହାରିଲା ଯିବା ପାଇଁ । ଯଦିଓ ତାର ମେଢ଼ ଦେଖିବାର ସଉକ ନଥିଲା । ହେଲେ ବାପ, ଝିଅଙ୍କର ମଂଗଳ ମନାସିବାକୁ, ଦେବୀଙ୍କ ଆଗରେ ପଦେ ଗୁହାରୀ କରିବା ଅଭିପ୍ରାୟରେ ହିଁ ସେ ଯାଇଥିଲା । ତାର ସିନା କପାଳ ମନ୍ଦ, ତା' ଉପରର ଆକାଶଟା ଅଂଧାର, ହେଲେ ଲକ୍ଷ୍ମୀର ଜୀବନ ଆକାଶରେ ସୂର୍ଯ୍ୟୋଦୟ ଘଟୁ । ହୀରାଟିଆ ଖରାରେ ଝଲସି ଉଠୁ ତା'ଜୀବନ - ଏଇ ଭିକ୍ଷା ନେଇ ସେ ଯିବାକୁ ଇଚ୍ଛା କରିଥିଲା - ତା'ଛଡ଼ା କେଶବାର ସ୍ୱାସ୍ଥ୍ୟ, ନେଇ ସେ ବ୍ୟସ୍ତ ବି, ମନ ଭଲ ରହୁନି । ଚାଲୁ ଚାଲୁ ଦେବୀଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲା- ଜୀବନଟା ଯାକ କେବଳ ବିପଦ ଆପଦକୁ

ମୁଣ୍ଡେଇ ଚାଲିଛୁ ମା' ଆମେ । କେବେ କେବେ ଆଲୁଅର ସଂଧାନ କରିବାକୁ ଯାଇ ଆକାଶ ଆଡ଼କୁ ଚାହିଁଦେଲେ ଅଜଣା ଆଶଂକାରେ ଥରି ଉଠେ ଅନ୍ତରାତ୍ମା, ଝଡ଼ ଆସୁନି ତ ? ମେଘ ଢାଙ୍କି ଦେବନି ତ ସୂର୍ଯ୍ୟକୁ ? ତା' କପାଳ ପଛେ ଛୋଟ ହେଉ, ଲକ୍ଷ୍ମୀ ଦଶଜଣରେ ଜଣେ ହେଇ ଠିଆ ହେଉ - ଏଇ ଆଶା ତ ତାଙ୍କୁ ଏତେ ବାଟ ଟାଣି ଆଣିଛି । ମନବଳ ଭାଙ୍ଗି ଆସୁଥିଲେ ବି ନିଜକୁ ନିଜେ ଦମ୍ଭ ଦେଇ, ଅନ୍ୟକୁ ଦମ୍ଭ ବାଣ୍ଟିଛି । ଏଥର କଣ ଗୋଟାଏ ବଡ଼ ପରୀକ୍ଷାରେ ବସିବ ଲକ୍ଷ୍ମୀ । ମା'ଙ୍କର କରୁଣା ନଥିଲେ ଏତେବଡ଼ ଘାଟି ପାରି ହେବ କିମିତି ?

ଆଉ କେଶବ।.... ଜୀବନସାରା ମଣିଷଟା ଦୁଃଖକଷ୍ଟ, ଯନ୍ତ୍ରଣାକୁ ହିଁ ସାମ୍ନା କରିଆସିଛି ନିଜର ଅସହାୟତାକୁ ସାଥି କରି ଖଞ୍ଜ ପାଦରେ ଏତେ ବଡ଼ ଲମ୍ବା ରାସ୍ତାକୁ ପାରିକରିଛି । ତାଙ୍କୁ ସୁସ୍ଥ ରଖିଥାନ୍ତୁ, ନ ହେଲା ତାଙ୍କ ଜୀବନରେ ସୂର୍ଯ୍ୟୋଦୟ, ଲକ୍ଷ୍ମୀର ଭାଗ୍ୟାକାଶ ଉଜ୍ଜଳି ଉଠିଲେ, ସେଇ ହେବ ଆମ ପାଇଁ ଉଦଯୋତ୍ସବ । ଏଇ ଗୁହାରୀ ନେଇ ହେମ ଦେବୀଙ୍କ ପାଖରେ ମଥାନତ କରିଥିଲା ।

ଆଉ ମହାଷ୍ଟମୀ ଦିନ ସନ୍ଧ୍ୟାରେ ଅଭୟା ମା' ଆସି ଲକ୍ଷ୍ମୀକୁ ନେଇଗଲେ ତାଙ୍କ ସହିତ । ସୁଲତା ବି ଗଲା ସାଥିରେ ତାର ପୂଜାମଣ୍ଡପ ବୁଲିବାକୁ । ବୁଲି ବୁଲି ଦେଖିଥିଲା ବି । ସବୁଠି ଆନନ୍ଦର କୋଳାହଳ । ଉଲ୍ଲାସ ଭିତରେ ଜୀବନ ଉତ୍ସବମୁଖର । ଆନନ୍ଦର ହୋରି ଖେଳୁଛି ଜୀବନ । କୋଉଠି ବି ଦୁଃଖ ଅବସାଦର ଚିହ୍ନବର୍ଣ୍ଣ ନାହିଁ । ଚକିତ ଲାଗିଲା ଲକ୍ଷ୍ମୀକୁ । ମନରେ ପ୍ରଶ୍ନ ଉଠିଲା, ସତରେ କ'ଣ ମଣିଷର କିଛି ଦୁଃଖ ନାହିଁ, ନା ଦୁଃଖକୁ ଭୁଲିବାର ବାହାନା କରୁଛି ? ସୁଖଲୋଭୀ ମଣିଷ ତ! ସେଥିପାଇଁ ଆଜି ଭଳି ଦିନରେ ଦୁଃଖକୁ ପିଠି ଦେଖେଇ ଆନନ୍ଦର ଶୁଭ ପକେଇବ, ସୁଖର କାମନା କରିବ । 'ସତ'କୁ ସ୍ୱୀକାର କରିବାର ସତ୍ ସାହସ ନାହିଁ ତା'ର । ଇଏବି ଗୋଟାଏ ପ୍ରକାର ପ୍ରତାରଣା ନିଜ ସହିତ । ନିରୀହ ପ୍ରତାରଣା । ମୁହୂର୍ତ୍ତେ ଜୀବନକୁ ମହୋତ୍ସବମୟ ବୋଲି ଭାବି ନେଲେ ଯେ, ତାର ଦୁଃଖ ଦୂର ହୋଇଯିବନି, ସମସ୍ୟା ଘୁଞ୍ଚିଯିବନି -ସେ ଜାଣେ । ତଥାପି, ଆନନ୍ଦର ବାହାନା ଖୋଜେ । ସତରେ ବିଚିତ୍ର ଏଇ ମଣିଷର ମନ ।

ମା' କେବେ ବି ସୁଖ ଆନନ୍ଦର ଝୁଡ଼ିକୁ କାହା ପଣତରେ ଅଜାଡ଼ି ଦିଅନ୍ତିନି । ମଣିଷକୁ ହିଁ ନିଜ ଭାଗ୍ୟ ଗଢ଼ିବାକୁ ପଡ଼େ । ନିଜ ଭିତରର ଆତ୍ମ ପ୍ରତ୍ୟୟକୁ ସଂକଳ୍ପରେ ପରିଣତ ନ କଲେ ସଫଳତା, କି ସୁଖ ଲାଭ ହୁଏନି ତାର । ସେଇ ଶକ୍ତି ନିଜ ଭିତରେ ଅଛି । ତାକୁ ଖୋଜିବାକୁ ହେବ ସଂଘର୍ଷ କରିବାକୁ ପଡ଼ିବ । ସୁଖ ଆଉ ଦୁଃଖ ଉଭୟକୁ ସ୍ୱୀକାର କରିବାକୁ ହିଁ ହେବ । ସେଇ ସାହସ, ସେଇ ଶକ୍ତି ମା' ଦେଇଛନ୍ତି ସମସ୍ତଙ୍କ ଭିତରେ । ତେଣୁ ସେ ଶକ୍ତିମୟୀ । ସର୍ବଭୂତରେ ଶକ୍ତି ରୂପେଣ ସଂସ୍ଥିତା । ସେଇ

ଶକ୍ତିମୟୀର ଜୟଗାନ କରୁଛି ମଣିଷ । ଆରାଧନା କରୁଛି- ତାର ସମଗ୍ର ଜୀବନ ହେଉ ନିରବଚ୍ଛିନ୍ନ ଦୁର୍ଗାପୂଜା । ଭାବୁ ଭାବୁ ଲକ୍ଷ୍ମୀ ଅଭୟା ମା'ଙ୍କ ପଛେ ପଛେ ପହଞ୍ଚି ଯାଇଥିଲା ଦେବୀ ମଣ୍ଡପରେ । ଧୂପ ଦୀପ, ଗୁଗ୍ଗୁଳ ଗନ୍ଧରେ ରୋମାଞ୍ଚିତ ହେଲା ତା'ର ଚେତନା । ଲକ୍ଷ୍ମୀ ହାତ ଯୋଡ଼ିଲା, କ'ଣ ସେ ମାଗିବ ମା'ଙ୍କୁ ଦୁର୍ଲଭ ଜୀବନଟିଏ ଦେଇଛନ୍ତି ତାକୁ । ତାହା ହିଁ ତା ପାଇଁ ଶିକ୍ଷାୟତନ । ଜୀବନକୁ ବହୁବାଟରେ ସେ ଭେଟିଛି । ଅନେକ ଶିକ୍ଷା ଦେଇଛି ଏଇ ଜୀବନ ତାକୁ । ମା'ଙ୍କ କରୁଣାର ପଟାନ୍ତର ନାହିଁ । ଆଉ କଣ ଅଧିକା ମାଗିବ ସେ । ମଥାନତ କରି ପ୍ରଣାମ କଲା । "ଏଇ ଜୀବନକୁ ଦିବ୍ୟ କର, ଭବ୍ୟ କର, ସାର୍ଥକ କର ମାଁ । ଏଇ ପୃଥବୀକୁ ଦୁଃଖ ଶୋକରୁ, ରୋଗ ଯନ୍ତ୍ରଣାରୁ ମୁକ୍ତ କର । ଦୟା, କ୍ଷମା, ପ୍ରେମର ଝରଣା ଭରିଦିଅ ମଣିଷ ଭିତରେ । ଜଗତର କଲ୍ୟାଣରେ ଲାଗୁ ଏଇ ଜୀବନ ମା', ଏତିକି ମୋର କାମନା ।"

ସୁଲତା ପାଖରେ ଠିଆ ହୋଇଥିଲା, କ'ଣ ମାଗିଲୁ ଲକ୍ଷ୍ମୀ ମା'ଙ୍କୁ ପଚାରିଲା ।

ଉତ୍ତରରେ ହସିଦେଇ ଲକ୍ଷ୍ମୀ କହିଲା, "କ'ଣ ଆଉ ମାଗିବି ଯେ, ସବୁତ ଦେଇଛନ୍ତି ସେ ।" ତୁମମାନଙ୍କର ସ୍ନେହ, ଶ୍ରଦ୍ଧା-କଲ୍ୟାଣର ଯୋଗ୍ୟ କରିଛନ୍ତି ମୋତେ - ଇଏ କ'ଣ କମ୍ କଥା ? ଅଭୟା ପୂଜା ଦେଉଥିଲେ, କାନରେ ପଡ଼ିଲା ଲକ୍ଷ୍ମୀର କଥା ପଦକ ଉଲ୍ଲସିତ ହୋଇଉଠିଲେ । କେଡ଼େ ବଡ଼ ମନ - ଝିଅଟାର ସତେ ! ହଠାତ୍ ମନକୁ ଆସିଲା, ମାଁ ଏଇ ଝିଅଟିକୁ ମୋ ଆର୍ଯ୍ୟ ପାଇଁ ଦିଅନ୍ତାନି, ଘର ମୋର ଉଜ୍ଜ୍ୱଳ ହେଇଯାନ୍ତା । ପଣତ ପସାରି ଦେଲେ ଅଭୟା ମା'ଙ୍କ ଆଗରେ ।

ଆଶ୍ରମକୁ ଫେରୁ ଫେରୁ ରାତିର ବୟସ ଟିକିଏ ବଢ଼ି ଯାଇଥିଲା । ଲକ୍ଷ୍ମୀ ବ୍ୟସ୍ତ ହୋଇପଡ଼ିଲା । ତାର ଦାୟିତ୍ୱ ଥିଲା ସରମାଁଙ୍କୁ ଖୁଆଇ ସାରି ଔଷଧ ଦେବା । ହେଲେ ତାର ଫେରିବା ବିଳମ୍ବ ଦେଖି ନିଜେ ହେମଲତା ସେଇ କାମ ତୁଲାଇ ଦେଇଥିଲା । ତା'ଛଡ଼ା ନିଜେ ଡା. ସାମନ୍ତ ଆସିଥିଲେ ରାଘବ ବାବୁଙ୍କ ସହିତ । ସରମାଁଙ୍କୁ ଦଶହରା ପ୍ରଣାମ ଜଣେଇବା ପାଇଁ । ଆଣିଥିଲେ ମା'ଙ୍କ ପାଇଁ ନୂଆ ଶାଢ଼ୀ - ଦଶହରାର ପବିତ୍ର ଭେଟି । ତାଙ୍କ ଜୀବନର ଇଏ ହେଲା ପ୍ରଥମ ଉପହାର ମା' ପାଇଁ । ଖୁସି ହେଇଥିଲେ ସରସ୍ୱତୀ । ଶାଢ଼ୀକୁ ଓଲଟେଇ ପାଲଟେଇ ଦେଖିଥିଲେ ବାରମ୍ବାର, ଦେଖେଇ ଥିଲେ ପୁଅ ଆଣିଛି ବୋଲି ।

ଆନନ୍ଦରେ ଓଦା ହୋଇ ଉଠିଥିଲା ଡା. ସାମନ୍ତଙ୍କ ଆଖି । ସବୁ ଶୁଣିଲା ଲକ୍ଷ୍ମୀ ବୋଉ ପାଖରୁ । ଖୁସି ଲାଗିଲା ତାକୁ । ଯାହାହେଉ ମଣିଷଟା ଏତେବଡ଼ ଦୁଃଖକୁ କୌଣସି ପ୍ରକାରେ ଭୁଲିପାରିଛି, ସ୍ୱାଭାବିକ ଲାଗୁଛି ତାଙ୍କର ବ୍ୟବହାର । କିନ୍ତୁ ଡାକ୍ତର କହୁଛନ୍ତି ଭିନ୍ନକଥା । ଲକ୍ଷ୍ମୀର ଭାବନା ବାଟବଣା ହୁଏ ଭାବିଲା ବେଳକୁ ।

କୁଆଁର ପୂନେଇଁର ସ୍ନିଗ୍ଧ ସକାଳ । କୁମାର କୁମାରୀଙ୍କ ପାଇଁ ଉଲ୍ଲାସର ଦିନଟିଏ । ଜହ୍ନିଓଷାର ଉଦ୍ଭାଁ ପର୍ବ । ମିଠା ମିଠା କାକର ଛୁଇଁ ଯାଉଛି ସମସ୍ତଙ୍କ ଦେହମନକୁ ।

ଗାଁମାନଙ୍କରେ ସିନା ସିନ୍ଦୂରା ଫାଟିଲାବେଳକୁ ଝିଅ ବୋହୂଙ୍କର ଖଇ ଆଞ୍ଜୁଳି ଓ ସୂର୍ଯ୍ୟ ବନ୍ଦାପନାର ପହିଲି ହୁଳହୁଳିର ତରଙ୍ଗାୟିତ ଧ୍ୱନି ଗଗନ ପବନକୁ ପ୍ରକମ୍ପିତ କରୁଥିଲା, ହେଲେ ଏଇ ସହରରେ ପୁଣି ଏକଣା ଅପନ୍ତରାରେ ସେଇସବୁ ଉଚ୍ଛ୍ୱସିତ ଉଲ୍ଲାସର ଧ୍ୱନି କୋଉଠୁ ଶୁଭିବ ? ତା'ଛଡ଼ା ଜରାଶ୍ରମରେ ତ ସେଭଳି କିଛି ଘଟଣା ଘଟିବାର କାରଣ ହିଁ ନଥିଲା ।

ତଥାପି କଥା ପଡ଼ିଥିଲା ପୁରୁଣା ଦିନର । ରାଣୀ ଆଈ, ସାବିତ୍ରୀ, ଉଷା ନାନୀଙ୍କ ସହିତ ଆଉ କେତେଜଣ ମିଶି ନିଜ ନିଜ ଝିଅ ବୋହୂ ବେଳ କଥାକୁ ହେଜୁଥିଲେ । କଥା ପ୍ରସଙ୍ଗରେ ପୁରୁଣା ଦିନର ସ୍ମୃତି କଥାର ତୂଳୀରେ କ୍ରମଶଃ ସଂଜୀବିତ ହେଇ ଉଠୁଥିଲା ପୂନେଇଁର ସକାଳଟା । ସ୍ମୃତି ତ କେବେ ଭୁଲିବାର ନୁହେଁ" ନିନ୍ଦା, ଅପମାନ, ମାନ, ଅଭିମାନ ଅଥବା ଘୃଣା ଅବହେଳାର ଓଦାହାତ ତାକୁ କେବେ ପୋଛି ଦେଇ ପାରେନା, ବରଂ ଏମିତିକା ବିଶେଷ ଦିନ ମାନେ ସ୍ମୃତିଚାରଣ ପାଇଁ ଅବକାଶ ଯୋଗେଇ ଦେଇଥାନ୍ତି । ସେଇ ଅବସରରେ ରାଣୀ ଆଈ, ନିଶାମଣି ହେରିକା ନିଜ ନିଜ ଭିତରେ ଆଲୋଚନା କରୁଥିଲେ । ରାତି ପାହିଲେ ମହାକାର୍ତ୍ତିକ । ଘରେ ଥିଲାବେଳେ ତାର ଚେହେରା ଅବଶ୍ୟ ଅଲଗା ଥିଲା, ଆଉ ପ୍ରକାରେ । ପ୍ରାତଃସ୍ନାନ, ଦେବଦର୍ଶନ, ରାଈ ଦାମୋଦର ପୂଜାର ଭିନ୍ନ ଆନନ୍ଦ ସିଏ ।

"ସିଏ ତ ଗଲା ଜନ୍ମର କଥା' -କହିଲା ନିଶାମଣି । ଓଦା ମନ, ଓଦା ଆଖି ଆଉ ଦୀର୍ଘଶ୍ୱାସ ଭିତରେ ନକାରାତ୍ମକ ଜୀବନର ଅବସୋସମାନେ ଉତୁରି ଆସୁଥିଲେ । ବୁଝି ହେଉଥିଲା, ବୁଝେଇବା ପାଇଁ ଭାଷାର ଆବଶ୍ୟକତା ନଥିଲା । ଇଚ୍ଛାମାନେ ଛାଟିତଲେ ଗୁମୁରି ଉଠୁଥିଲେ ।

"ତଥାପି.... ରାଣୀ ଆଈ ସାହସ କରି କହିଲେ, ଏଇତ ପାଖରେ ମନ୍ଦିର । ପାହାନ୍ତି ଗାଧୁଆ ନ ହେଲା, ଦିଅଁ ଦର୍ଶନ ତ କରିପାରିବା ବାସି ପାଇଟି ପାଇଁ ହେମଲତା ନିଜକୁ ପ୍ରସ୍ତୁତ କରୁ କରୁ ମୁହୂର୍ତ୍ତେ ଠିଆ ହେଇ କଥା ଶୁଣିଲା, କହିଲା, "ଖାଲି ମନ କଲେ ତ ହେବନି, ଶରୀର ସାଥି ଦେବା ଦରକାର, ବୟସ ନଇଁଲାଣି ସମସ୍ତଙ୍କର ।"

"କିଛି ନହେଲେ ଚଉରା ପୂଜା ସହିତ ଆକାଶ ଦୀପ ତ ଜଳିବ ନିଶ୍ଚେ, "ମୁଁ ସଜାଡ଼ି ଦେବି ଚଉରାମୂଳକୁ ସାଂଗେ ସାଂଗେ । ଅଲେଖକୁ କହିଲେ ସେ କିଣି ଆଣିବ ନୂଆ ସରଞ୍ଜାମ ସବୁ । ବ୍ୟବସ୍ଥା କରିଦେବ ଆକାଶଦୀପର କହିଲା ହେମଲତା । ତମେ ସବୁ ବ୍ୟସ୍ତ ହୁଅନା - ହେମ କାମ ସାରିବ ବୋଲି ତରତର ହେଇ ଯିବାକୁ ବସିଲା ।

ହଠାତ୍ ନିଶାନାନୀର ମନେ ପଡ଼ିଗଲା ଲକ୍ଷ୍ମୀ କଥା । ପଛରୁ ହେମ ଉଦ୍ଦେଶ୍ୟରେ କହିଲା, "ଆଲୋ ଲକ୍ଷ୍ମୀଟା କୁଆଡ଼େ ଗଲା ? ଉଠିଲାଣି କି ନାହିଁ ? ସିଏ ତ ଗୋଟିଏ ବୋଲି କୁଆଁରୀ ଝିଅ ଆମ ଆଶ୍ରମର । କେଡ଼େ ସରାଗରେ ତ ରାତିରେ ପୂନେଇଁ ଭୋଜି କରି ଖାଇବ ବୋଲି ସମସ୍ତେ ମନ କରିଛ, ହେଲେ ତା' ସାଂଗକୁ, ଝିଅଟା ଖଇ ଆଞ୍ଜୁଳି ଟେକି ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦିଅନ୍ତାନି ?

"ସତେତ, ମନେ ନଥିଲା ସେକଥା, ରାଣୀ ଆଈ କହିଲେ କିଏ ଜାଣେ ଆର ବର୍ଷକୁ ସେ ଏଠି ଥିବ କି କାହା ଘରେ ଭାତ ରାନ୍ଧୁଥିବ ଝିଅ ପରା । ଡାକ ତାକୁ, ମନ ବଳିଛି ଯେତେବେଳେ, ଇଚ୍ଛା ପୂରଣ ହେଇଯାଉ । "ମେଣ୍ଟିଯାଉ ଆମ ଓରିମାନ" । ହେମ ଚମକି ଉଠିଲା ନିଜ ଭିତରେ ଭାଗ୍ୟ କାହିଁ ତାର..... ସତେ ଲକ୍ଷ୍ମୀର ଏଇ ସୌଭାଗ୍ୟ ହେବ ପୂନେଇଁର ଅର୍ଘ୍ୟ ଦେବାକୁ! ମନକଥା ମନରେ ରଖି ହେମ ସଙ୍କୁଚିତ ହେଇ କହିଲା, ମୁଁ ତ କେବେ ଶିଖେଇନି ତାକୁ ଏସବୁ ନାନୀ, ଆମର ତ ସମର୍ଥ ନଥିଲା ସେସବୁ ବଡ଼ ବଡ଼ କଥା ପାଇଁ, ମନ ବି ନ ଥିଲା....ସେ ସବୁ ବଡ଼ ଲୋକଙ୍କ ବିଧି ବିଧାନ ।' "ଏବେ ତ ଅଛି । ସବୁଦିନେ ସବୁକଥା ଥାଏ କି ? ସମୟ ବଦଳେ, ପରିସ୍ଥିତି ପରିବେଶ ବଦଳେ । ନ ଥିବା କଥା ହୁଏ । ହେବା କଥା ଯାହା ହୁଏନି ବି । ତାକୁ ଧରିବସିଲେ ଜୀବନ ଆଗେଇବନି ଲୋ ହେମ । ଡାକୁ ତାକ, ସକାଳ ସୂର୍ଯ୍ୟ ବନ୍ଦାପନା ଆଉ ରାତିରେ ଚାନ୍ଦ ବନ୍ଦାପନା କରି 'କୁମାର ପୂର୍ଣ୍ଣମୀ'କୁ ପୂର୍ଣ୍ଣ କରିବ । ଆମେ ତାକୁ ଶିଖେଇ ଦବୁ ଯା' ଡାକିଆଣ ତାକୁ । ଅଲେଖକୁ କହି ନିର୍ଦ୍ଦେଶ ଦେଲେ ରାଣୀଆଈ "କହିବୁ ମୁଁ ଡାକୁଛି ବୋଲି ଆସିବ ନିଶ୍ଚେ ।

ସମସ୍ତେ ଏକାସ୍ୱରରେ କହିଲେ ହଁ ହଁ ସେଇୟା ହେବ । ଗାଧେଇ ପାଧୋଇ ନୂଆଁ ଖଣ୍ଡେ ପିନ୍ଧିଲେ ହେଲା । କାଲି ତ ଅଭୟା ପଠେଇଛି ତା' ପାଇଁ ଶାଢ଼ୀ - କହିଲା ସାବିତ୍ରୀ ଦେଈ ।

କ୍ରମଶଃ ଦିନ ବଢୁଥିଲା ଆଗକୁ ଆଗକୁ, କଅଁଳ ବାଛୁରୀ ଭଳି ଫୁକୁରୁ ଫୁକୁରୁ ଡେଇଁ ଡେଇଁ । ସେଇ କ୍ରମରେ ଆଶ୍ରମ ଅନ୍ତେବାସୀଙ୍କ ମନର ଉତ୍ସାହ ବି । ସତେ ଯେମିତି ଆଜି ଗୋଟାଏ ବିଶିଷ୍ଟ ଦିନ ତାଙ୍କ ପାଇଁ । ସଭିଙ୍କର ଅପେକ୍ଷା ରାତିର ଉତ୍ସବକୁ । ଉତ୍ସବ ଆଉ କ'ଣ କି, ରୂପାଥାଳିଆ ଜହ୍ନ ଉଇଁଲେ ସିଏ ଆଉ ପ୍ରକାରେ ଅନୁଭବ ଆଣିଦେବ । ସମସ୍ତେ ମିଳିମିଶି ହୋ ହାଲ୍ଲା କରିବାକୁ ଯଦିଓ ବୟସ ଆଉ ନାହିଁ, ତଥାପି ମନର ସତେଜତା କିଛି କମ୍ ନ ଥିଲା । ବୟସ ଭାରରେ ନଇଁ ଯାଇଥିବା ଜୀବନମାନେ ହଠାତ୍ ପଛେଇ ପଛେଇ ଯାଇ ପହଞ୍ଚି ଯାଇଥିଲେ ନିଜ ନିଜ ଗାଁ ଦାଣ୍ଡରେ କୁମାର କୁମାରୀଙ୍କ ମେଳରେ ।

କୋଉଠି ତାସପାଲି ପଡ଼ିଥିଲା ତ କୋଉଠି ଚେସ୍‌ବୋର୍ଡ୍ କୋଉଠି ବାଘଛେଳି ଖେଳ ଚାଲିଥିଲା ତ କୋଉଠି କଥା କାରିଗରି ଭିତରେ ଡୁ ଡୁ ଖେଳର ବାହାଦୂରି କୋଉଠି କଥାର ଅଗଣାରେ ପୁଚିଖେଳ ସହିତ କୁଆଁର ପୂନେଇଁ ଜହ୍ନ ଲୋ ଫୁଲ ବଉଳବେଣୀର ଘାଗଡ଼ା ଗଳାର ସଂଗୀତ । ସତେ ଯେମିତି ଜୀବନଟା ଷୋଡ଼ଶୀ ପାଲଟି ଯାଇଛି - ଦିହଦୁଃଖ କି ଶାରୀରିକ ଅବସନ୍ନତା କଥା ଭୁଲି ହୋଇଯାଇଥିଲା ମନ ଭିତରର ପ୍ରସନ୍ନତା ଫୁଟି ଉଠୁଥିଲା ପ୍ରତ୍ୟେକ ଛୋଟ ବଡ଼ କାମରେ । କିଏ ଅଟା ଦଳୁଥିଲା ତ କିଏ ପିଠା ଛାଣୁଥିଲା, କିଏ ପରିବା କାଟୁଥିଲା ତ କିଏ କ୍ଷୀରିହାଣ୍ଡି ଘାଣ୍ଟୁଥିଲା । ସମସ୍ତଙ୍କ ମନରେ ଅପୂର୍ବ ଉତ୍ସାହ ।

ଏତେ ଉତ୍ସାହ ଉଦ୍ଦୀପନାର ଅନ୍ତରାଳରେ କିନ୍ତୁ ଲୁଚିଥିଲା ଅଭିମାନ ବେଦନାଭରା ଢଳିଲା ଦିନ ସବୁ ଦିଶି ନଦିଶି ହେଇ ଧରା ପଡ଼ିଯାଉଥିଲେ କଥାର ଝଲକ ଭିତରେ ।

ରୁପାଥାଳିଆ - ଜହ୍ନ ଆଲୁଅର ଅଗଣା ଭିତରେ ସତେ ଯେମିତି ଆଈମା କାହାଣୀର କଥା ପେଡ଼ି ଖୋଲି ହେଇ ଯାଇଥିଲା ତୁଣ୍ଡରୁ ତୁଣ୍ଡ ହେଇ । କେତେ କାହାଣୀ, କେତେ କଥା, କେତେ ଘଟଣା, କେତେ ସ୍ୱପ୍ନ - ସତେ ଯେମିତି ଶେଷ ନାହିଁ । ସମସ୍ତେ ହିଁ ଝୁରି ହେଉଥିଲେ ବିଗତ ଦିନକୁ ମନେ ପକାଉଥିଲେ ଆଦରର ପୁଅଝିଅ, ନାତିନାତୁଣୀମାନଙ୍କୁ । ମଝିରେ ମଝିରେ କିଛି ଦେବାକୁ ନେବାକୁ ଗଲାବେଳେ ଲକ୍ଷ୍ମୀ କାନରେ ପଡୁଥିଲା ଏଇ ମାଇଁ ଆଈ, ମାଉସୀମାନଙ୍କ କଥା । ସେ ଅନୁଭବ କରୁଥିଲା, ଏଥିରେ ଆନନ୍ଦ ଅପେକ୍ଷା ନିଃସଙ୍ଗତା,. ଅସହାୟବୋଧ ଅନେକ ବେଶୀ । ଯୋଉମାନଙ୍କ ସମଗ୍ର ଜୀବନ ନିଜ ପରିବାର, ସନ୍ତାନ ଆଉ ଘର ପାଇଁ ହିଁ କଟିଗଲା ସେମାନେ କିମିତି ଭୁଲିପାରିବେ ଅତୀତକୁ । କେମିତି ଖୁସି ହେଇପାରିବେ । ଆପଣା ମଣିଷମାନଙ୍କ ପାଇଁ ସେମାନେ ଯେ ଆଜି ବୋଝ ହୋଇଗଲେ, ଅଦରକାରୀ ହୋଇଗଲେ ଏବେ ନିଜ ବୋଝ ନିଜେ ବୋହିବା ପାଇଁ ନିଜକୁ ପ୍ରସ୍ତୁତି କରି ଚାଲିଛନ୍ତି ଯାହା । ଏ କଥା ଭାବିଲା ବେଳକୁ ସେମାନଙ୍କ ଭିତରେ ଯେଉଁ ଯନ୍ତ୍ରଣା ସୃଷ୍ଟି ହେଉଥିବ ରକ୍ତକ୍ଷରଣ ହେଉଥିବ - ସେକଥା ଅନୁଭବୀ ହିଁ ବୁଝିପାରିବ । ଏଇ ମୁହୂର୍ତ୍ତକର ଆନନ୍ଦ ଗୋଟାଏ ବାହାନା ସିନା । ରୁଟିନ୍ ବନ୍ଧା ଘୋଷରା ନିଷ୍ପ୍ରାଣ ଜୀବନକୁ ଚହଲେଇ ଦେବା ପାଇଁ ଝାଙ୍କଟିଏ ମାତ୍ର । ଏଇ ଝାଙ୍କରେ ଜୀବନ ଚକ ଆଉ କିଛି ପାଦ ଆଗେଇ ଯିବ ବୋଲି ଭାବିଲା ବେଳକୁ ଲକ୍ଷ୍ମୀର ଛାତି ଭିତରଟା ଏକ ଅବ୍ୟକ୍ତ ବେଦନାରେ ଭରିଗଲା । ଭାବୁକ କରିଦେଲା ତାକୁ । ଆହାପଣରେ ସେ ତରଳି ଯାଉଥିଲା । ପରିବାର ଆତ୍ମୀୟସ୍ୱଜନଙ୍କ ମେଳରେ ଥିଲେ ଏମିତି ବିକଳ ହେଇ ଖୋଜନ୍ତେ ନାହିଁ ପଛନ୍ତି ଦିନମାନଙ୍କୁ କେବେ ।

ତଥାପି ନିଜ ମନର ଭାବଭାବନାକୁ ଆଡୁଆଳରେ ରଖି ଲକ୍ଷ୍ମୀ ସେମାନଙ୍କ ସହିତ

କାମରେ ହାତ ମିଶାଉଥିଲା, ଖୁସି ହେଉଥିଲା ଜବରାପଣ ଦେଖାଉଥିଲା ଯେମିତି କୋଉଠି କିଛି ହେଇନି । ସବୁ ଘା' ଶୁଖିଯାଇଛି, ଚିହ୍ନ ବି ଲୁଚି ଯାଇଛି । ଜୀବନ ଧାଉଁଛି ସ୍ୱାଭାବିକ ବାଟରେ । ଏଠି ସବୁଅଛି, କିଛିର ଅଭାବ ନାହିଁ । କଥା ଛଳରେ ଜଣେଇ ଦେଉଥିଲା, ତମେମାନେ କେବେ ଅଦରକାରୀ, ଅଲୋଡ଼ା ହୋଇନପାର । କାହା ପାଇଁ ନା କାହାପାଇଁ ତମେ ଆଉ ତମ ସ୍ଥିତି ଅମୂଲ୍ୟ, ଦୁର୍ଲଭ । ଏଇ ଯେମିତି ମୁଁ ..... ମୋ ପାଇଁ ତମେ ମାନେ ଯେ ଅପରିହାର୍ଯ୍ୟ ! ନ ହେଲେ ମୁଁ କେମିତି ଆଶା ବାନ୍ଧିଥାନ୍ତି ସୁନାର ସକାଳ - ପାଇଁ ? ? ହେମଲତାକୁ ତ ନାକ ପୋଛିବାକୁ ତର ନ ଥିଲା । ସଂଜ ହେବା ପୂର୍ବରୁ କେମିତି ସବୁକାମ ଟକ ସାରିବ - ତାର ସେଇ ଚିନ୍ତା । ସଂଜ ହେଲେ ସମସ୍ତେ ଆସିବେ, ମିଳିମିଶି ଘଡ଼ିଏ ପହରେ ଗପସପ କରିବ । ଅନ୍ୟଦିନ ମାନଙ୍କରେ ତ କେବେ ସମୟ ମିଳେନି । ଦୈନନ୍ଦିନ କାମ ଆଗରୁ ସାରିବା ପାଇଁ ଅଲେଖ ସୁକାନ୍ତ ଓ ସୁଲତାକୁ ସେ ତାଗିଦ୍ କରି ଦେଇଛି ସେଥିପାଇଁ ।

ଲକ୍ଷ୍ମୀ ଦୂରରୁ ଲକ୍ଷ୍ୟ କରୁଥିଲା ବୋଉକୁ ତାର । ଏଡ଼େ ଖୁସି କେବେ ଦେଖିନଥିଲା ବୋଉ ମୁହଁରେ । ସକାଳେ ସାବିତ୍ରୀଖୁଡ଼ୀ, ନିଶାନାନୀ ହେରିକା ତାକୁ ନେଇଁ ଚଉଁରାମୂଳେ ବନ୍ଦାପନା ଆଉ ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେଉଥିବା ଦେଖି ଆଖି ତାର ଛଳଛଳେଇ ଉଠୁଥିଲା । ବାପାଙ୍କୁ ବି ସେ ବାହାର ବାରଣ୍ଡାକୁ ନେଇ ଆସିଥିଲା ହାତଧରି । ବାପାଙ୍କ ମୁହଁରେ ବି ପ୍ରସନ୍ନତା ଫୁଟି ଉଠୁଥିବା ସେ ଲକ୍ଷ୍ୟ କରିଛି । କେମିତି ନ ହେବ, ତାଙ୍କ ତିନି ଜଣିଆ ଝଡ଼ ବିକ୍ଷୁବ୍ଧ ପରିବାର ପାଇଁ ଇଏ ତ ଗୋଟିଏ ବିଶିଷ୍ଟ ଘଟଣା । ସେ କିଏ, କଣ ତାର ସ୍ଥିତି ଥିଲା ? ସେଇ ଲକ୍ଷ୍ମୀ, ଦିନେ ଯାହାର ବର୍ତ୍ତମାନଟା ହିଁ ସ୍ଥିତିହୀନ ଥିଲା, ଆଜି ସେ ଗୋଟାଏ ସୁନେଲି ଭବିଷ୍ୟତ କାମନା ନେଇଁ ଏଠି ଠିଆ ହେଇଛି ପାଞ୍ଚଜଣଙ୍କ ଭିତରେ । ଜଣେ ଭଦ୍ର ସଂପନ୍ନ ଘରର ଝିଅ ଭଳି । ଅଭାବିତ, ଅବିଶ୍ୱସନୀୟ । ଭାବିଲା ବେଳକୁ ରୋମାଞ୍ଚିତ ହୋଇ ଉଠୁଥିଲା ନିଜ ଭିତରେ । ସେଇ ରୋମାଞ୍ଚ ଭିତରେ ସେ ଏକାନଥିଲା, ଆଉ ଜଣକର ସ୍ନିଗ୍ଧ ଉପସ୍ଥିତିକୁ ବି ସେ ଅନୁଭବ କରୁଥିଲା । ନା, ସେ ଏକା ନୁହଁ ଆଉ ଜଣେ ବି ଅଛି ତା' ସହିତ ।

ତା' ମଖମଲି ଭାବନାରେ ପୂର୍ଣ୍ଣଚ୍ଛେଦ ଟାଣି ତଳୁ ସୁଲତା ମାଉସୀ ଡାକ ଶୁଭିଲା । "ଟିକିଏ ଶୀଘ୍ର ତଳକୁ ଆସିବୁ ଲକ୍ଷ୍ମୀ, ରାଣୀ ଆଇ କହିଛନ୍ତି ସଂଜ ହେବାକୁ ବେଶୀ ଡେରି ନାହିଁ ।"

ଅଗତ୍ୟା ଲକ୍ଷ୍ମୀ ଖଟ ଉପରୁ ଉଠିଲା । ସୂର୍ଯ୍ୟ ମାଁ କୋଳକୁ ଯିବା ପାଇଁ ପ୍ରସ୍ତୁତି ହେଲେଣି । ହଠାତ୍ ମନେ ପଡ଼ିଲା ସରମାଁ କଥା ଔଷଧ ଖୁଆଇ ଶୁଆଇ ଦେଇ ଆସିଥିଲା ଦି'ପହରେ । ନିଦ ଭାଙ୍ଗିବଣି । କପେ ଚା' ଖାଇବେ ସେ ଏତିକିବେଳେ ।

ଚା' କରିବାକୁ ଉଠୁ ଉଠୁ, ଭାବିଲା ସଭିଙ୍କ ମେଳ ଭିତରକୁ ସେ ଆଜି ସରମାଁଙ୍କୁ ନେବ । ହୁଏତ, ଖୁସି ଲାଗିବ ତାଙ୍କୁ । ମନେ ପଡ଼ିପାରେ ପୁରୁଣା କଥା । ହଁ, ସେଇୟା କରିବ ।

ସରମାଁ ଚା' ଖାଉ ଖାଉ, ଲକ୍ଷ୍ମୀ ଆଲ୍‌ମାରି ଭିତରୁ ଡା. ସାମନ୍ତଙ୍କ ଉପହାର-ଶାଢ଼ୀକୁ କାଢ଼ି ଆଣି କହିଲା, ଆଜି ତମେ ଏଇ ଶାଢ଼ୀକୁ ନିଶ୍ଚୟ ପିନ୍ଧିବ । ଏଇ ଶାଢ଼ୀରେ ତମକୁ ଦେଖିଲେ ଡାକ୍ତରବାବୁଙ୍କୁ କେତେ ଖୁସି ଲାଗିବ କହିଲ.... ।

ସରମା' ହସିଲେ ଆଉ କହିଲେ, "ମୁଁ କ'ଣ ଝିଅ ହେଇଛି ଯେ ପିନ୍ଧିବି ? ତୁ ପିନ୍ଧ. ତୁ ପିନ୍ଧିଲେ ବି ସେ ଖୁସି ହେବ ଯେ..., ହେଲେ ଗୋଟିଏ କଥା ମନେ ପଡ଼ିଲା.... । ଟିକିଏ ରହିଗଲେ, କ'ଣ କହିବେ ବୋଲି ।"

କୋଉ କଥା ଯେ... ?"

"କଥା କ'ଣ କି, ମୁଁ ତ ଭୃଗୁ ପାଇଁ ନୂଆ ଜାମା ଖଣ୍ଡେ କିଣିଲିନି, ସେ କ'ଣ ପିନ୍ଧିବ ?'"

ଲକ୍ଷ୍ମୀ ଅଡୁଆରେ ପଡ଼ିଲା, କ'ଣ ବୁଝେଇବ ତାଙ୍କୁ .... ହଠାତ୍ କହି ପକେଇଲା, "କାଲିପରା ସେ କିଣି ଆଣିଛନ୍ତି ତମେ କହିଲ ବୋଲି, ମନେପଡୁନି ?"

"ନାହିଁ ମନେ ପଡୁନି ତ.... କିଣିଛି ତାହେଲେ ? ଭଲ ହେଲା । ସିଏ ମୋର ସୁନାପୁଅ - ମନକଥା ବୁଝିପାରେ ।" ସଂଜ ଆସିବ ଆସିବ ହେଉଥିଲା ।

ଲକ୍ଷ୍ମୀ ସରମାଙ୍କୁ ପ୍ରସ୍ତୁତ କରି ନୂଆ ଲୁଗା ପିନ୍ଧେଇ ଦେଲା କହିଲା, "ତମେ ଟିକିଏ ବିଶ୍ରାମ ନେଉଥାଅ କି, ମୁଁ ଆସି ନେଇଯିବି ସାଂଗରେ । ଏଇ ତ ମୁଁ ଆସୁଛି," କହି ଲକ୍ଷ୍ମୀ ନିଜ ରୁମ୍‌କୁ ଯାଇ ପ୍ରସ୍ତୁତ ହେଲା ନିଜେ ।

ରୂପାଥାଳି - ଜହ୍ନ ଉଠିଲା ବେଳକୁ ସମସ୍ତେ ପ୍ରାୟ ଜମି ଯାଇଥିଲେ ଚଉଁରାମୂଳେ । ମୁରୁଜ ପକେଇ ଦେଇଥିଲା ସୁଲତା । ଭୋଗଡାଲା ସଜାଡ଼ି ଦେଇଥିଲେ ନିଶାମଣି । ଘିଅଦୀପ ଜଳିଲା - ହୁଳହୁଳି ପଡ଼ିଲାବେଳକୁ ପହଞ୍ଚିଗଲେ ଅଭୟା । ଅଭୟାଙ୍କୁ ଦେଖୁ ଦେଖୁ ରାଣୀ ଆଈ କହିଲେ "ମନ ଚାହିଁ ଫଳ, ଆସିଗଲ ମା' ଭଲ କଲ । ଏବେ ଝିଅ ହାତରେ ଖଇ ଆଞ୍ଜୁଳି ଦେଇ ଚନ୍ଦ୍ର ବନ୍ଦାପନା କରାଅ ଶୁଭ ମନାସି ।

ରାଣୀ ଆଈ କହିଲା, ପ୍ରକାରେ ଅଭୟା ଗୋଟି ଗୋଟି କରି ବିଧି ପାଳନ କଲେ । ମନେ ମନେ କେତେ କଥା ଭାବି ଯାଉଥାନ୍ତି....

ହେମ ଅବାକ୍ ହେଇ ଚାହିଁଥିଲା । ଭାବୁଥିଲା, ଏଇ ତାର ଝିଅ, ସେ ଜନ୍ମ ଦେଇଥିଲା ସତ, ହେଲେ ଆଜି, ତାର ବୋଲି ସେ ଦାବୀ କିରପାରିବନି ଆଉ । ଜହ୍ନ ମା' କୋଳରୁ ଖସି ଯାଇ ସହସ୍ର ତାରା ମେଳରେ ଥିଲା ଭଳି, କେତେ ମା' ତାକୁ ଘେରି

ରହି କଲ୍ୟାଣ ଅଡ଼ାଡ଼ି ଦେଉଛନ୍ତି - କେତେ ମନର ଜନ୍ମ ସେ । ଏଭଯା ହେବ ବୋଲି ସେ କଣ ସ୍ୱପ୍ନରେ ବି ଭାବିଥିଲା ? କେଶବାକୁ ଚାହିଁଲା, ସେଇ ଏକା କଥା, ନିଷ୍ପଲକ ଆଖିରେ ଚାହିଁଛି ଝିଅକୁ । ହୁଏତ ଭାବୁଥିବ ତାରି ଭଳି ।

ମାଧୁରୀ ମାଉସୀ ହୁଳହୁଳି ଦେଇ କହିଲେ, "ମନେ ମନେ ଚନ୍ଦ୍ର ଉଦିଆ ରଜାପୁଅକୁ ମନାସି ନେ ଲକ୍ଷ୍ମୀ । ମାଗିନେ ଠାକୁରଙ୍କୁ, ସବୁଝିଅ ଏମିତି ମାଗନ୍ତି ।

ସମସ୍ତଙ୍କ ମୁହଁରେ ସମର୍ଥନ ଜନିତ ପ୍ରସନ୍ନତା ଫୁଟି ଉଠିଲା । ଲକ୍ଷ୍ମୀ ମୁହଁରେ ବି ସମର୍ଥନ ଜନିତ ପ୍ରସନ୍ନତା ଫୁ୍ଟି ଉଠିଲା । ଲକ୍ଷ୍ମୀ ମୁହଁରେ ହଠାତ୍ ଯେମିତି ଫଗୁ ମୁଠେ ଛାଟି ଦେଲା କୋଉ ରଜାପୁଅ ଲୁଚି ଲୁଚି । ମନର ଭାବନାକୁ ଚାପି ରଖି କହିଲା, "ଓହୋ ମୁଁ କ'ଣ କୁନିଝିଅ ହେଇଛି ଏ ସବୁ ବିଧି ବିଧାନ ପାଳିବାକୁ । ତମେମାନେ ଖୁସି ହେବ ବୋଲି ସିନା ମନା ନକରି ସବୁକଥା ମାନିଗଲି ।" ଭାବିଲା ମନେ ମନେ "ଏବେ ମୋତେ ଅଡୁଆରେ ପକେଇଲଣି । ଠିକ୍ ଅଛି ଆଈ, ଏଥର ଏତିକି ଥାଉ ।" -କହି ଲକ୍ଷ୍ମୀ ଉଠିଲା । ସୁଲତା କହିଲା, ନା ସରିନି । ବଡ଼ମାନଙ୍କୁ ପ୍ରଣାମ ତ କରିନୁ... ଲକ୍ଷ୍ମୀ କଣ ଭାବି ମୁହୂର୍ତ୍ତେ ଚାହିଁଲା ଓ ସରମାଁଙ୍କୁ ପ୍ରଥମେ ପ୍ରଣାମ କରି ଅଭୟାଙ୍କୁ ପ୍ରଣାମ କଲା ପରେ ଅନ୍ୟମାନଙ୍କ ପାଦ ଛୁଇଁଲା । ସବାଶେଷରେ ତା' ବାପା ବୋଉକୁ ।

ଏଇ ବନ୍ଦାପନା ପର୍ବ ସରୁ ସରୁ ସଂଜ ବଢ଼ି ଯାଇଥିଲା । କ୍ରମଶଃ ଜନ୍ମର ବୟସ ବି ବଢୁଥିଲା । ସଭିଏଁ ଭୋଗ ଖାଇ ଯେଝା ବାଟରେ ବସି ଗପପେଡ଼ି ଖୋଲି ଦେଲେ କିଛି ସମୟ ପାଇଁ । ହେଲେ ସରସ୍ୱତୀଙ୍କ ଆଖି ଖୋଜି ବୁଲୁଥିଲା ଏପାଖ ସେପାଖ ହେଇ କାହାକୁ ଯେମିତି । ଲକ୍ଷ୍ମୀ ଆଖିରେ ପଡ଼ିଲା ସରମାଁଙ୍କ ଅନ୍ୟମନସ୍କତା । କଣ କିଛି ଅସୁବିଧା ହେଲା କି ଆଉ, ପଚାରି ବୁଝିବାକୁ ତାଙ୍କ ପାଖକୁ ଗଲା, ପଚାରିଲା କିଛି ଦରକାର ସରମାଁ, ଭଲ ଲାଗୁନି ? ଘର ଭିତରକୁ ଯିବା ? ସରମାଁ ତା ମୁହଁକୁ ବଲବଲ ହୋଇ ଚାହିଁଲେ ।

କାହାକୁ ଖୋଜୁଛ ?

ହଁ..... ଖୋଜୁଛି ତ... ।

କାହାକୁ ?

ମୋ ପୁଅକୁ ...... କାହିଁ ସେ ? ତାକୁ ତ ଦେଖୁନି ।

ଲକ୍ଷ୍ମୀ ବୁଝିପାରିଲା । କହିଲା ଡାକ୍ତରବାବୁଙ୍କୁ ?

ସେ ଆସିଛନ୍ତି ଯେ, ବାହାରେ ବସି ରାଘବସାର୍‌ଙ୍କ ସହିତ ଗପୁଛନ୍ତି ମୁଁ ଡକେଇ ଦେଉଛି ଏଠିକି :

"ନା, ଏଠିକି ନୁହେଁ, ମୋ' ଘର ଭିତରକୁ ମୋତେ ନେଇ ଚାଲ ଝିଅ ସେଇଠି ଘଡ଼ିଏ ବସି କଥା ହେବି ତା'ସହିତ ।"

"ଠିକ୍ ଅଛି ଚାଲ" । ଅଲେଖକୁ ଡାକି ପଠେଇଲା ଡା. ସାମନ୍ତଙ୍କୁ ଖବର ଦେବାକୁ ଯେ, ସରମା, ତାଙ୍କ ପୁଅକୁ ଖୋଜୁଛନ୍ତି ।'

ଡା. ସାମନ୍ତ ମାଁଙ୍କୁ ପ୍ରଣାମ କରି ପଚାରିଲେ- "କିମିତି ଅଛ ମାଁ ?" "....ତୁ ତ ମୋ କଥା ଭୁଲିଗଲୁଣି । କେତେଦିନ ହେଲା ତୁ ଆସିନୁ କହିଲୁ । ମୁଁ କେତେ ଖୋଜିଛି ତୋତେ..." ଅଭିମାନର ପାହାଡ଼ ଭାଙ୍ଗିପଡ଼ିଲା ସରସ୍ୱତୀଙ୍କ କଥାରେ ।

"ଏଇ ତ ଆସିଥିଲି ଚାରିଟା ଦିନ ହେଇନି । ଅବଶ୍ୟ କାମରେ ବ୍ୟସ୍ତ ଥିଲି ଟିକିଏ । ତା' ଛଡ଼ା ତମ ଖବର ତ ମୁଁ ବରାବର ପାଉଛି । କିଛି ଅସୁବିଧା ହେଲା କି ?"

"ନାହିଁ ଯେ.... ତୁ ମୋତେ ଘରକୁ ନେଇଯିବୁ କହିଥିଲୁ । ମୋତେ ଏଠି ଆଉ ଭଲ ଲାଗୁନି ।" ବଡ଼ ଅଡୁଆରେ ପଡ଼ିଲେ ଭୃଗୁ ସାମନ୍ତ । ପୁଣି ସେଇ ପୁରୁଣା ଅଳି କହିଲେ, ନେଇଯାଇଥାନ୍ତି ଯେ, ଏ ସପ୍ତାହରେ ମୋର କିଛିଦିନ ପାଇଁ ବାହାରକୁ ଯିବାର ଅଛି । ତମେ ଏକୁଟିଆ ରହିପାରିବନି ତ ସେଠି । ମୁଁ ଫେରିଆସିଲେ ଯିବା..... ବାହାନାର ସାହାଯ୍ୟ ନେଲେ ଡା. ସାମନ୍ତ ।

ଠିକ୍ ଏତିକିବେଳକୁ ଅଭୟା ମା'ଙ୍କୁ ନେଇ ଲକ୍ଷ୍ମୀ ଆସିଲା । ସାଂଗରେ ଆଉ ଦି'ଜଣ ମହିଳା । ସରସ୍ୱତୀଙ୍କ ସହିତ ଦେଖା କରିନଥିଲେ ଅଭୟା । ତାଙ୍କୁ ଦେଖି ଖୁସି ହେଇଗଲେ ସରସ୍ୱତୀ । ଲକ୍ଷ୍ମୀ ଫେରି ଯାଉଥିଲା..... ଏଇ ମଉକାରେ ଡା. ସାମନ୍ତ ସରମାଙ୍କୁ ଏଇ ଆସୁଛି ମାଁ – କହି ଉଠି ଆସିଲେ ବାହାରକୁ । ଦେଖିଲେ ତରତର ହେଇ ଲକ୍ଷ୍ମୀ, ତଳକୁ ଚାଲିଯାଉଛି । ପଛରୁ ଶୁଭକାମନାଟିଏ ଜଣେଇ ଲକ୍ଷ୍ମୀକୁ ମୁହୂର୍ତ୍ତକ ପାଇଁ ଅଟକେଇ ଦେଲେ । "ମୋ' ପାଇଁ ଦଶ ମିନିଟ୍ ସମୟ ଦେଇପାରିବ ଲକ୍ଷ୍ମୀ ?" ନିଜ ଆଡୁ ଅନୁରୋଧ କଲେ ଡା. ସାମନ୍ତ ।

ଲକ୍ଷ୍ମୀ ଚମକି ଉଠିଲା ନିଜ ଭିତରେ । ଏମିତିକା ଅନୁରୋଧ ତ କେବେ କରନ୍ତିନି ଡା. ସାମନ୍ତ, ଆଜି କାହିଁକି..... ସେ ଠିଆ ହୋଇଗଲା ଏବଂ ଅବୁଝା ଆଖିରେ ଚାହିଁଲା ତାଙ୍କ ମୁହଁକୁ "ଖୋଲା ଛାତ ଉପରକୁ ଚାଲ ଯିବା । ଅନେକ ଦିନ ହେଲା ଜହ୍ନ ଆଉ ଜହ୍ନରାତି ସହିତ ମୋର ଭେଟ ହେଇନି । ଆଜି ସୁଯୋଗ ମିଳିଛି, ମନ ବି ହେଉଛି... ଯଦି ତମର ଆପତ୍ତି ନ ଥାଏ.... ମୋତେ ସାଥୀ ଦେଇପାରିବ... ରଜାପୁଅ ଜହ୍ନର ଅଭିସାର ଦେଖୁ ଦେଖୁ ଚାନ୍ଦିନୀରେ ଗାଧେଇବା ।"

ଲକ୍ଷ୍ମୀ ଲାଜେଇଗଲା । କୋରକିତ ସ୍ୱପ୍ନମାନେ ହଠାତ୍ ନୀଳକଇଁ ହେଇ ଫୁଟିଗଲେ ନିଭୃତ ମନର ଜଳବେଣୀରେ । କେମିତି ନୂଆଁ ନୂଆଁ ଲାଗିଲା । ଭୃଗୁସାମନ୍ତଙ୍କ କଥାଗୁଡ଼ାକ ବେଶ୍ ରୋମାଣ୍ଟିକ୍ ଲାଗୁଥିଲା ତାକୁ । ଦୁହେଁ ଯାଇ ଖୋଲା ଛାତରେ ବସିଲେ କିଛି

ମୁହୂର୍ତ୍ତ । ଆକାଶ ସ୍ୱଚ୍ଛ ଥିଲା । ଜହ୍ନ ଧାଉଁଥିଲା ମେଘର ପାଲିଙ୍କି ଚଢ଼ି । ପବନରେ ସବୁଜାୟିତ ସୁଗନ୍ଧର ସମ୍ମୋହକ ଭାବ । ଜହ୍ନ ଅଜାଡ଼ି ଦେଉଥିଲା ଅମାୟ ଜ୍ୟୋସ୍ନାର ଧାରା ବସୁଧା ଉପରେ । ଦୁହେଁ ଚୁପ୍‌ଚାପ୍ । ସ୍ୱପ୍ନ ବଉଳୁ ଥିଲା । ବୋଝ ବୋଝ ଉଲ୍ଲାସର କାଶତଣ୍ଡୀ ମଧୁଚନ୍ଦ୍ରିକାର ଚାମର ଢାଳୁଥିଲେ ।

ପ୍ରଥମେ ନିରବତା ଭାଙ୍ଗିଲେ ଭୃଗୁ ସାମନ୍ତ, "କି ଚମତ୍କାର ଏଇ ଜହ୍ନରାତି ସତରେ । କର୍ମ ଜଂଜାଳ ଭିତରେ କେବେ ସୁଯୋଗ ହିଁ ମିଳେନା ଏମିତିକା ଜହ୍ନରାତିକୁ ଉପଭୋଗ କରିବାକୁ କଥାରେ କବିପଣ ଉଛୁଳି ଉଠୁଥିଲା ।"

ଲକ୍ଷ୍ମୀ ଉଚ୍ଚକିତ ହେଲା । ନିଭୃତ ମନର ଚଉଁରାମୂଳେ ସ୍ୱପ୍ନର ମୁରୁଜରେ ଲେଖି ହେଇ ଯାଉଥିଲା ଅନେକ ଅକୁହା କଥା । ରୋମାଞ୍ଚିତ କଦମ୍ବମାନେ ହାତଧରାଧରି ହେଇ ସତେ ଯେମିତି ଖୋଲା ଜ୍ୟୋସ୍ନାୟିତ ରଜନୀକୁ ସଜେଇ ଦେଉଥିଲେ ଅଭିନବ ନୀପକୁଂଜରେ ।

ସନ୍ତର୍ପଣରେ ଲକ୍ଷ୍ମୀ କେମିତି କଣ କହିବ ବୋଲି ଭାବୁ ଭାବୁ କହି ପକେଇଲା, "ସତରେ ଏଇ ଜହ୍ନରାତିକୁ ଉପଭୋଗ କରିବା ପାଇଁ ସେମିତିକା ଜ୍ୟୋସ୍ନାୟିତ ମନଟିଏ ଦରକାର । ଜହ୍ନ ଆଉ ଜହ୍ନରାତି ତ ସବୁବେଳେ ଅଛି । ହେଲେ ସମୟ ପରିବେଶ, ପରିସ୍ଥିତିର ସହୃଦୟ ସଂଯୋଗ ନ ଘଟିଲେ ଜହ୍ନରାତି ଜହ୍ନରାତି ଭଳି ଲାଗେନା ।"

ମୁଗ୍ଧ ଆଖିରେ ଲକ୍ଷ୍ମୀକୁ ଚାହିଁ ଭୃଗୁସାମନ୍ତ କହିଲେ- ମୁଁ ଯଦି ସେଇ ସହୃଦୟ ମନଟିଏ ହେଇଯାଏ, ତା'ହେଲେ ତମେ କଣ ମୋତେ ସୁଯୋଗ ଦେବ ଏଇ ଜହ୍ନରାତିକୁ ଦୀର୍ଘାୟିତ କରିବା ପାଇଁ ? ଜୀବନର ଯେତେସବୁ ଅପୂର୍ଣ୍ଣତାକୁ ପଛରେ ପକାଇ ପୂର୍ଣ୍ଣତାର ଗୀତ ଗାଇବା ପାଇଁ..... ଦେବ ସୁଯୋଗ ? କୁହ ଲକ୍ଷ୍ମୀ । ଅନେକ ଦିନରୁ ଏଇ କଥା କହିବି କହିବି ବୋଲି ସୁଯୋଗ ମିଳୁ ନଥିଲା କି ସାହସ ବି ହେଉନଥିଲା । ସତ କହିବାକୁ ଗଲେ ଆଜି ସୁଯୋଗ ମିଳିଲା । ଛୋଟ ନିଃଶ୍ୱାସଟିଏ ନେଇଁ ମୁହୂର୍ତ୍ତେ ଅପେକ୍ଷା କଲେ ଭୃଗୁ ସାମନ୍ତ । ପୁଣି କହିଲେ, ତମ ନୀରବତାକୁ ମୁଁ କଣ ବୋଲି ଗ୍ରହଣ କରିବି ? କିଛି କୁହ ନା, ତୁମ ଇଚ୍ଛା ବିରୁଦ୍ଧରେ ମୁଁ କିଛି ବି ତ ଚାହିଁବିନି ।

ଅନେକ ସମୟ ପରେ..... ସ୍ୱପ୍ନରୁ ଉଠିଲା ଭଳି, ଦୂର ଆକାଶକୁ ଚାହିଁ ପାଟି ଖୋଲିଲା ଲକ୍ଷ୍ମୀ "କ'ଣ କହିବି, ମୋ' ନିଜ ଉପରେ ଯେ ମୋର ବିଶ୍ୱାସ ନାହିଁ । ମୋର କଣ ସ୍ୱପ୍ନ ଦେଖିବାର ସାମର୍ଥ୍ୟ ଅଛି ନା ଅଧିକାର ଅଛି..... ମୁଁ ଜାଣେନା । ରାସ୍ତାକଡ଼ର ଦୂବଘାସ ମୁଁ..... ଆକାଶକୁ ହାତ ବଢ଼େଇବି..... କଥା ପୂର୍ଣ୍ଣ ନ କରି ଭୃଗୁ ସାମନ୍ତଙ୍କ ମୁହଁକୁ ଚାହିଁଲା ଲକ୍ଷ୍ମୀ ସଂଶୟ ବୋଳା ଆଖିରେ । ଭୟ ଲାଗୁଛି । ଭୟ ? ? କାହାକୁ, ନିଜ ଉପରେ ବିଶ୍ୱାସ ରଖ ଲକ୍ଷ୍ମୀ । ମୁଁ ବି କେବେ ସ୍ୱପ୍ନ ଦେଖିବା କଥା ଚିନ୍ତା

କରି ନଥିଲି । ହେଲେ ତମକୁ ଦେଖିବା ଦିନୁ ମୁଁ ସ୍ୱପ୍ନ ଦେଖିଛି, ଗୋଟାଏ ସମୃଦ୍ଧ ଭବିଷ୍ୟତର । ମୋ ସ୍ୱପ୍ନରେ କେବଳ ତମେ ଅଛ ଲକ୍ଷ୍ମୀ । ତମକୁ ବାଦ୍ ଦେଇ ମୁଁ ସ୍ୱପ୍ନ ଦେଖି ପାରେନା । ମୁଁ ଆକାଶ ନୁହେଁ ଯେ ତମ ହାତ ପାଇବନି । ମୁଁ ମାଟି, ଠିକ୍ ତମରି ଭଳି । ଆଉ ତମେ ସେଇ ମାଟିର ସବୁଜିମା ଯା' ଭିତରେ ଲୁଚି ରହିଛି ସୃଷ୍ଟିର ଅନନ୍ତ ଆଶ୍ୱାସନା, ଆଗାମୀ ପୃଥିବୀ ପାଇଁ ସବୁଜ ବାର୍ତ୍ତା । ହାତ ବଢ଼େଇ ମୋତେ ଛୁଇଁ ଦେଖ ଥରେ..... ହାତ ବଢ଼େଇ ଦେଲେ ଭୃଗୁ ସାମନ୍ତ ଗୋଟାଏ ଉଲ୍ଲାସରେ ଲକ୍ଷ୍ମୀର ହାତ ଧରିବାକୁ । ତାଙ୍କ ପାପୁଲି ଭିତରେ ବନ୍ଦୀହେଲା ଲକ୍ଷ୍ମୀର ନରମ ପାପୁଲି - ହାତ ତାର କମ୍ପୁଥିଲା - ନିର୍ବାକ୍ ହେଇ କିଛି ସମୟ ସେ ଅନୁଭବ କଲେ । ଲାଜର ପାହାଡ଼ ଲଦି ହେଇଗଲା ଲକ୍ଷ୍ମୀ ଉପରେ । କିମିତି କହିବ ସେ ତା ମନର କଥାକୁ ଯେ... ହେ ଭଗବାନ ! ଏଥର ଜହ୍ନ ଓହ୍ଲେଇଲା ନୀଳକଇଁର ହାତ ଧରିବାକୁ, ହାତରେ ତାର ଜହ୍ନରାତିର ଭେଟି । ମୁଗ୍ଧା ନାୟିକା ଭଳି ନୀଳକଇଁ ଚୁପ୍‌ଚାପ୍ କରି ପାଖୁଡ଼ା ମେଲି ତଲ୍ଲୀନ ହେଉଥିଲା ଜହ୍ନ ଭାବନାରେ । ଅନୁଚ୍ଚାରିତ ଶବ୍ଦମାନଙ୍କ ଭିଡ଼ରେ ପାଖୁଡ଼ାମାନେ ଥରି ଉଠୁଥିଲେ । ଚୁପ୍‌କରି ଲକ୍ଷ୍ମୀ କାନରେ ଭୃଗୁ ସାମନ୍ତ କହିଲେ, "ଆସ ଲକ୍ଷ୍ମୀ ସବୁ ସ୍ୱପ୍ନ, ସବୁ ଅନୁଭୂତିକୁ ଗର୍ଭସ୍ଥ କରି ଆମେ ନୂଆ ଏକ ପୃଥିବୀର ସ୍ୱପ୍ନ ଦେଖିବା । ମୁଁ ସାଥୀଟିଏ ଚାହେଁ ଲକ୍ଷ୍ମୀ..... ଏକ ସାର୍ଥକ ସକାଳକୁ ଜନ୍ମ ଦେଇପାରିବାନି ଆମେ....."

କ୍ରମଶଃ ଲକ୍ଷ୍ମୀ ରୋମାଂଚିତ ହେଉଥିଲା । ଭୃଗୁ ସାମନ୍ତ ପକେଟ୍‌ରୁ ଉପହାରଟିଏ କାଢ଼ି ପଚାରିଲେ, ଅନୁମତି ଦେଲେ ମୁଁ ଏହାର ସଦ୍‌ବ୍ୟବହାର କରିବି । ଏହା ମୋର ଶ୍ରଦ୍ଧା, ସମ୍ମାନ ଆଉ ପ୍ରତିଶ୍ରୁତିର ଚିହ୍ନ ତୁମ ପାଇଁ । ଅଭିଜ୍ଞାନ ବୋଲି କହିପାର ।

ଲକ୍ଷ୍ମୀ ଦେଖିଲା, ଭୃଗୁସାମନ୍ତଙ୍କ ହାତରେ ନାଲି ପଥର ବସା ମୁଦିଟିଏ, ଖୁସିରେ ନିଜ ବାଁ ହାତ ବଢ଼େଇ ଦେଉ ଦେଉ ଅଟକି ଗଲା ହଠାତ୍ କଣ ଭାବି । କ'ଣ ହେଲା ଯେ ? ତାର ଭାବାନ୍ତରକୁ ଲକ୍ଷ୍ୟ କରି ପ୍ରଶ୍ନ କଲେ ଭୃଗୁ ସାମନ୍ତ । "ଏମିତି ଲୁଚି ଲୁଚି ପିନ୍ଧିଲେ ଯେ ଆମ ଭଲପାଇବାର ଅସମ୍ମାନ ହେବ । ମୋତେ କ୍ଷମା କରନ୍ତୁ ଆଜି ମୁଁ ଚାହୁଁନି ସେକଥା, ହବାରେ ପ୍ରଶ୍ନର ଧାର କ୍ଷତାକ୍ତ କରିଦେଉ ଆମ ପ୍ରେମକୁ । ମୁଁ କିନ୍ତୁ - ଗ୍ରହଣ କରୁଛି ଶ୍ରଦ୍ଧାରେ । "ଏତେ ଭୟ ସମାଜକୁ ? ନା ମୋ ପ୍ରତି ଅବିଶ୍ୱାସ ?" ଭୃଗୁ ସାମନ୍ତଙ୍କ କଣ୍ଠ ସ୍ୱରରେ ଦରଦମିଶା ପ୍ରଶ୍ନ ।

"ନା, ସେଭଳି କିଛି ନୁହେଁ । ତଥାପି ଅପେକ୍ଷା..... ସମୟକୁ, ସେଇ ସୂର୍ଯ୍ୟୋଦୟର ନୂଆ ସକାଳକୁ । ଯିଏ ଆମ ପାଇଁ ତା' ଆଶୀର୍ବାଦ ଢାଳି ଦେବ ସହସ୍ରଧାରାରେ - ସେଦିନ ନିଜେ ପିନ୍ଧେଇଦେବେ ।" ଭୃଗୁଙ୍କର କିଛି କହିବାର ନ ଥିଲା । ଅନେକ କିଛି ସମୟ ହେଇଯାଇଥିଲା । ତଳୁ କାହାର ପାଟି ଶୁଭୁଥିଲା ବି । ଲକ୍ଷ୍ମୀ କାହିଁ ? କୁଆଡ଼େ ଗଲା ?

ଲକ୍ଷ୍ମୀ ସଚେତନ ହେଲା, କହିଲା, 'ଚାଲନ୍ତୁ ତଳକୁ ଯିବା ଏଥର'। ଲକ୍ଷ୍ମୀ ନିଜେ ଆଗେଇଗଲା ତଳକୁ ଯିବା ପାଇଁ । କିଛି ସମୟ ପାଇଁ ଡା. ସାମନ୍ତ ଚୁପ୍‌ଚାପ୍ ଠିଆ ହୋଇ ଜହ୍ନ ରାତିର ଅମିୟ ସୌନ୍ଦର୍ଯ୍ୟକୁ ମନ ଭରି ଉପଭୋଗ କଲେ । ଏଇ ଜହ୍ନ ନିରୋଳା ଏଇ ରାତି ତାଙ୍କ ଜୀବନ ପାଇଁ ସ୍ମରଣୀୟ ହୋଇ ରହିବ । ଏଇ ଜହ୍ନରାତି ଯେ ତାଙ୍କୁ ସର୍ବଶ୍ରେଷ୍ଠ ଉପହାର ଦେଇଛି । ସେ ଖୁବ୍ ଖୁସି । ହେଲେ ଏଇ ଖୁସିରେ ଭାଗ ନେବା ପାଇଁ ତାଙ୍କ ପାଖରେ ଆପଣାର କେହି ନାହିଁ ଲକ୍ଷ୍ମୀ ବ୍ୟତୀତ । ଦୂର ଦିଗନ୍ତକୁ ଚାହିଁ ଆହୁରି କିଛି ସମୟ ସେମିତି ବସି ରହିଥିଲେ ସେ, ତଳୁ ନିଜେ ରାଘବବାବୁ ଆସି ଡାକିନେଲା ଯାଏ । ଖିଆପିଆ ସାରି ଜଣ ଜଣ କରି ନିମନ୍ତ୍ରିତ ବଂଧୁ ବିଦାୟ ନେଲେ ।

ଖିଆପିଆ ସରିଲା ବେଳକୁ ରାତି ବଢ଼ିଯାଇଥିଲା । ସଭିଏଁ ଖୁସିଥିଲେ । ଅନେକ ଦିନ ପରେ ଏମିତିକା ହଇଚଇ ଟିକିଏ ପରିଣତି ବୟସର ମଣିଷମାନଙ୍କୁ ବେଶ୍ ସତେଜ କରି ତୋଳିଥିଲା । ହେଲେ ଅଭୟା ମନେ ମନେ ସୁଯୋଗଟିଏ ଖୋଜୁଥିଲେ । ନିରୋଳାରେ ହେମ ସହିତ କଥା ଦି'ପଦ ହେବେ ବୋଲି । ଆଜି ଶୁଭ ଅବସର ମିଳିଛି । ମନର ଭାବନାକୁ ସେ ଆଉ ସାଇତି ସଂପାଦି ନିଜ ଭିତରେ ରଖି ପାରୁନାହାନ୍ତି । ଡେରି ହୋଇଗଲେ ହଜେଇ ଦେବାର ଭୟ ତାଙ୍କୁ ଅସ୍ଥିର କରି ପକାଉଛି । ନା, ସେ ଆଉ ଡେରି କରିବେନି । ଏଇ ଶୁଭବେଳା । ମଉକା ମିଳିଛି ଯେତେବେଳେ ସଦ୍ ବ୍ୟବହାର କରିବା ହିଁ ଉଚିତ୍ ହେବ । ଭାବୁ ଭାବୁ ସେ ହଠାତ୍ କାର୍ଯ୍ୟବ୍ୟସ୍ତ ଥିବା ହେମଲତାର ହାତକୁ ଧରି ଟାଣି ଟାଣି ନେଇଁଗଲେ ରୋଷେଇ ଘର ଆଡ଼କୁ । ଏଇ ଆପାତତଃ ନିରୋଳା ସ୍ଥାନ । "ଆସିଲୁ ହେମ ତୋ ସାଂଗରେ ମୋର କଥାଟିଏ ଅଛି, ଆ'......"

ଆଶ୍ଚର୍ଯ୍ୟ ଲାଗିଲା ହେମକୁ ଅଭୟା ମା'ଙ୍କ ଅଦ୍ଭୁତ ବ୍ୟବହାର । କି କଥା ଅଛି, କଣ କହିବେ । ହେ ଭଗବାନ । କଣ କିଛି ଭୁଲ୍‌ଭଟକା ହୋଇଗଲା କି ତା' ବ୍ୟବହାର କି ପରିଚର୍ଯ୍ୟାରେ । ଅଡୁଆ କଥା । ପଚାରିଲା ବିକଳ ବିବ୍ରତ ହୋଇ ।

ନାହିଁ ଲୋ ହେମ, ତୋର କାହିଁକି ଭୁଲ୍ ହେବ ଯେ, ମୋର ତୋତେ କିଛି ମାଗିବାର ଥିଲା - ସଭିଙ୍କ ଆଗରେ ତ ମାଗିପାରିବିନି । କହିଲୁ, ମୁଁ ଯାହା ମାଗିବି, ତୁ ମନା କରିବୁନି ତ ? ତା' ମୁହଁକୁ ଚାହିଁଲେ ଅଭୟା ।

ଏ ମା' କି କଥା କହୁଛ, ହେମ ଢଡ଼ସଡ଼ ହୋଇ କହିଲା ତମେ ମାଗିବ ମୁଁ ମନା କରିବି - ଏକଥା ହୋଇଛି କେବେ । ହେଲେ କଣ ମାଗିବ, କ'ଣ ଅଛି ମୋ ପାଖରେ । ମୁଁ ତ କାଙ୍ଗାଳୁଣୀ । ତମମାନଙ୍କ ଆଶ୍ରମରେ ଏ' ଜୀବନ ପ୍ରତିପାଳିତ । ଜନମ ଦୁଃଖୀ ମୁଁ । ମୋ ଦୁଃଖର ଅନ୍ତ ନାହିଁ, ତମେ ତ ଜାଣିଛ- କ'ଣ ଅଛି ମୋର.....

"କ'ଣ ନାହିଁ ତୋର ହେମ, ତୁ ତ ରତ୍ନଗର୍ଭା । ସ୍ଥିର ଆଖିରେ ତା' ଆଖିକୁ ଚାହିଁ ପଚାରିଲେ ଅଭୟା, କହ ଦେବୁ ତ ?

"ମୋ ପାଖରେ ଅଛି ଯଦି ନିଶ୍ଚୟ ଦେବି ମା" ।

ସେଇମିତି ସ୍ଥିର ଦୃଷ୍ଟିରେ ଚାହିଁ ଛୋଟ ନିଃଶ୍ୱାସଟିଏ ନେଇ ଅଭୟା କହିଲେ, "ତୋ ପାଖରେ ଲକ୍ଷ୍ମୀ ଅଛି, ତାକୁ ମୋତେ ଦେ' ମୋ ଆର୍ଯ୍ୟ ପାଇଁ । ମୁଁ ଆଉ କିଛି ଚାହେଁନା ମନା କରିବୁନି କଥା ଦେ' ।"

ସତକୁ ସତ ହେମ ଆକାଶରୁ ଖସି ପଡ଼ିଲା ଯିମିତି 'ନିଜ ଆଖି କାନ ଦେହମୁହଁକୁ ଅଣ୍ଡାଳି ପକାଇ କହିଲା, "ମୁଁ କ'ଣ ଶୁଣିଲି ?" ଠିକ୍ ଶୁଣିଲି ନା ସ୍ୱପ୍ନ ଦେଖିଲି ?

"ତୁ ଠିକ୍ ଶୁଣିଛୁ ।"

ଆମେ ତମ ସମତୁଲ ନୁହଁ ମାଁ । ତମେ ଭୁଲ୍ କରୁଛ । ଲୋକେ ହସିବେ ଶୁଣିଲେ । ଅନେକ କଷ୍ଟରେ ଅନେକ ବର୍ଷ ପରେ ମୁଠେ ଖାଇ ଦଣ୍ଡେ ନିଃଶ୍ୱାସ ନେଉଛୁ ନିଶ୍ଚିନ୍ତରେ । ଏବେ ପିଲାଟା ମଣିଷ ହେଇଗଲେ ଶାନ୍ତିରେ ମରିବୁ ବାପ ମା' । ଏତିକିବେଳକୁ ତମେ ମୋତେ ଆଉ ଲୋକହସା କରନା ମାଁ - ଦୟା କର ଏଇ ଗରିବ ଉପରେ । ତମେ କେଡ଼େ ମଣିଷ, କେତେ ଉପରେ କହୁ କହୁ କାନ୍ଦି ପକେଇଲା ହେମ । ଭୟରେ କି ଅବିଶ୍ୱାସରେ କେଜାଣି ସେ କାନ୍ଦିବାକୁ ଲାଗିଲା । ଇଏ କି ଅଘଟଣ କଥା ।

"ଅଭୟା ଅଭୟ ଦେଲେ । ତୁ ବ୍ୟସ୍ତ ନ ହୋଇ ନିଜକୁ ସମ୍ଭାଳେ । ମୁଁ କ'ଣ ଏଇଲେ ମାଗି ନେଉଛି । ସମୟ ଆସିଲେ ହିଁ ନେବି ଲକ୍ଷ୍ମୀକୁ ମୁଁ ସବୁକଥା ସବୁ ଦିଗରୁ ଭାବି ଦେଖିଛି । କିଛି ଲୋକହସାର କଥା ନୁହେଁ । ତୁ ଅସ୍ଥିର ନ ହେଇ ଧୀରେ ସୁସ୍ଥେ ଚିନ୍ତା କରିବୁ । ଏବେ କିନ୍ତୁ କାହାକୁ କଥାଟା ନକହି ନିଜ ମନରେ ରଖିଥା, ଏମିତିକି କେଶବାକୁ ବି ନୁହେଁ । ମୋ'ରାଣ ଅଛି ହେମ ବ୍ୟସ୍ତ ନ ହୋଇ ମୁହଁ ପୋଛି ପକା । ଚାଲ ଯିବା ଏଥର । ବେଶି ଡେରି ହେଲେ କିଏ କ'ଣ ସଂଦେହ କରିବ ।" ଅଭୟା ପୁଣି ସହଜ ସ୍ୱାଭାବିକ ଢଙ୍ଗରେ ହେମଲତାର ହାତଧରି ସଭିଙ୍କ ଭିତରେ ମିଶିଗଲେ । ଯିମିତି କିଛି ଘଟିନି । ହେମଲତା କିନ୍ତୁ ଆବାକାବା, ତା' ହାତଗୋଡ଼ରେ ଯିମିତି ପ୍ରାଣ ନାହିଁ । କ'ଣ କରିବାକୁ ଯାଇ କ'ଣ କରି ପକଉଥିଲା - ଅସ୍ଥିର ଅଥୟ ଲାଗୁଥିଲା ତାକୁ । କେବଳ ଭାବି ଚାଲିଥିଲା ନିଜ ଭିତରେ ଗୋଟିଏ କଥା ଆହୁରି ଭାଗ୍ୟର ଖେଳ ସରିନି ତା ପାଇଁ ?

ସମସ୍ତେ ଯାଇସାରିଲେ । ହେମଲତା ତା' କାମ ସାରି ଗଲା କେଶବାର ପରିଚର୍ଯ୍ୟା କରିବ ବୋଲି । ଅଭୟା ଯଦିଓ କାହାକୁ କିଛି ନ କହିବାକୁ ପରାମର୍ଶ ଦେଇଥିଲେ, ସେ କିନ୍ତୁ ଚାହିଁଲାନି । ଏତେଦିନର ଜୀବନ...... ଦୁହେଁ ଦୁହିଁଙ୍କ ସୁଖଦୁଃଖକୁ ବାଣ୍ଟି ନେଇଛନ୍ତି

ନିଜ ଭିତରେ  ସାଂଗ ହୋଇ । କେଶବାକୁ ଛାଡ଼ିଦେଲେ କିଏ ତାର ଅଛି ଆପଣାର ଯେ ? ସେ କହିବ, ନିଶ୍ଚୟ କହିବ ।

ତା'ର ଅନ୍ୟମନସ୍କତାକୁ ଲକ୍ଷ୍ୟ କରି କେଶବା କହିଲା- ବେଶୀ ଖଟଣି ପଡ଼ିଲା ଆଜି କ୍ଳାନ୍ତ ଦିଶୁଛୁ । ବିଶ୍ରାମ ନେଇ ଯା, ଯାହା କାମ ବାକି ପଡ଼ିଛି, ଥାଉ ସକାଳ ପାଇଁ । ଶୋଇପଡ଼ ଏଥର । ତଥାପି ହେମ କିଛି ପ୍ରତ୍ୟୁତ୍ତର ନ ଦେଇ ଏକା ଲୟରେ କଣ କିମିତି କଥାଟା କହିବ, ଭାବି ଚାଲିଥାଏ ।

"କ'ଣ ଏତେ ଭାବୁଛୁ ଯେ, କିଏ କ'ଣ କହିଲା କି ?" ମନରେ ସଂଶୟ ରଖି ପଚାରିଲା କେଶବା ।" କିଛି ଅଘଟଣ ଘଟିଲା କି ?"

"ହଁ ଅଘଟଣ ନ ହେଲେ ବି ସେଇଭଳି କିଛି.... ।"

ଚମକି ଉଠିଲା କେଶବା "କ'ଣ ହେଲା ପୁଣି..... ।" ଜୀବନରେ ଏତେ ଘଟଣା ଅଘଟଣାକୁ ସେ ସାମ୍ନା କରିଛି ଯେ, ଭଲରେ ଭଲରେ କଟୁଥିବା ଦିନ ଭିତରେ ଖଟ୍ କରି ଶବ୍ଦଟିଏ ହେଲେ ବି ଭୟ ମାଡ଼ିବସୁଛି କ'ଣ କିଛି ଘଟିଲା କି ?

ହେମଲତା ବୁଝିପାରିଲା । କହିଲା, "ନାହିଁ ଏତେ ଅଥୟ ହୁଅନା, କହୁଛି.... ଥୟଧର ଟିକିଏ । ହେମଲତା କହିଲା ଟିକିନିଖି କରି, ଯାହା ଅଭୟା ମା' ଆଉ ତା' ଭିତରର କଥା ହୋଇଥିଲା । ଏବେ ଆମେ କ'ଣ କରିବା ?" କେଶବା ପଥର ପାଲଟିଗଲା । କଥାଟା ଯେ ସତ ଏକଥା ବିଶ୍ୱାସ କରିବାକୁ ତାକୁ ଅନେକ ସମୟ ଲାଗିଲା ।

ପହିଲୁ ପହିଲୁ ଜୀବନରେ ଏମିତି ଅନେକ ଅଘଟଣ, ଦୁର୍ଘଟଣା ଘଟଣା ଘଟିଛି । ତାକୁ ସେମାନେ ଅସହାୟ ଭାବେ ସାମ୍ନା କରିବାକୁ ଯାଇ ବିନିଦ୍ର ରାତି କଟେଇଛନ୍ତି ଛଟପଟ ହେଇ । ରାତି ପାହିଲେ କ'ଣ ଘଟିବ – କିମିତି ହେବର ଚିନ୍ତାରେ ।

ଆଉ ଆଜି ବି.....ସେଇ ଝଡ଼ବତାସର କାଳିଅଂଧାର ରାତି ସିନା ନାହିଁ ହେଲେ ସଫା ଆଲୁଅ ଫିଟିନି ପୁଣି ସମସ୍ୟା ଆସି ଦୁଆର ମୁହଁରେ ଠିଆ । ଯାର ସମାଧାନ ଠାକୁରେ କଣ ରଖିଛନ୍ତି କିମିତି କରି କିଏ କହିବ!!

ଦୁହେଁ ଏକାକଥା ଭାବି ହେଉଥିଲେ ବିଛଣାରେ ପଡ଼ି । ଆଖିକୁ ନିଦ ଆସୁନଥିଲା ଛଟପଟ ହେଉଥିଲେ । ରାତିର ଅଂଧାର ହାଇ ମାରୁଥିଲା ଘରଟା ଭିତରେ । ଆଗପଛ ହେଇ ଦୀର୍ଘଶ୍ୱାସର ସନ୍ତର୍ପଣ ଶବ୍ଦକୁ ଦୁହେଁ ଗଣି ଚାଲିଥିଲେ ଏକ ଦୁଇ ତିନ୍ କରି ।

ଆଶ୍ରମରୁ ଘରକୁ ଫେରିବା ବାଟରେ ଅଭୟା ବେଶ୍ ଖୁସି ଥିଲେ । ରାଘବ ବାବୁଙ୍କ ସହିତ କୌଣସି ବିଷୟରେ କିଛି କଥା ହେଉନଥିଲା । କହିବାକୁ ଗଲେ ଖୁସିରେ ଖୁସିରେ ହିଁ ରାତି ପାହିଥିଲା ।

ସକାଳର ନିତ୍ୟକର୍ମ ସରିଲା ପରେ ଆରମ୍ଭ ହେଲା ଚା'ପର୍ବ । ଚାରିକଥା ପଡ଼ିଲା । କଥା ପ୍ରସଙ୍ଗରେ ଲକ୍ଷ୍ମୀ କଥା ମଧ ଆଲୋଚନା ହେଲା । ପ୍ରଶଂସାରେ ଅଭୟା ଲକ୍ଷ୍ମୀ ପାଇଁ ଶତମୁଖ ହୋଇ ଉଠିଥିଲେ ।

ରାଘବବାବୁ ଯଦିଓ ଜାଣନ୍ତି ଅଭୟା ଲକ୍ଷ୍ମୀକୁ ନିଜ ଝିଅ ଭଳି ଦେଖନ୍ତି ସେ ନିଜେ ବି ଖୁବ୍ ଭଲପା'ନ୍ତି ଲକ୍ଷ୍ମୀକୁ । ତାର ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ତାଙ୍କର ପ୍ରଚେଷ୍ଟା କିଛି କମ୍ ନୁହେଁ । ଅନେକ ଆଶା ତାଙ୍କର ଲକ୍ଷ୍ମୀ ପାଇଁ । ତା ସତ୍ତ୍ୱେ ଅଭୟାଙ୍କ ଖୁସି ଏବଂ ପ୍ରଶଂସା ଟିକେ ବେଶିମାତ୍ରାରେ ଉଛୁଳି ଉଠୁଥିଲା । ସେଇକଥାକୁ ସେ ଖୋଲାଖୋଲି ଭାବେ ପଚାରିଦେଲେ ବି ଅଭୟାଙ୍କୁ "କଥା କ'ଣ ଅଭୟା, ଏତେ ଖୁସି ତ ତମକୁ ମୁଁ କେବେ ଦେଖିନି ?"

ଅଭୟା ବେଶି ସମୟ ନିଜ ମନୋଭାବକୁ ଚାପି ରଖିପାରିନଥିଲେ । ଗଲା ରାତିର ଘଟଣା ଏବଂ ହେମଲତା ସହିତ ତାଙ୍କର କଥାବାର୍ତ୍ତାକୁ ସଂକ୍ଷିପ୍ତରେ କହି ପକେଇଲେ । "ଅବଶ୍ୟ ମୁଁ ତମକୁ ଏ ବିଷୟରେ କିଛି କହିନି । ମୋର କିନ୍ତୁ ଅନେକ ଦିନରୁ ଇଚ୍ଛା, ଲକ୍ଷ୍ମୀକୁ ଆଣିବି ଏ ଘରକୁ ବୋହୂ କରି । ଭୁଲ୍ କରିଛି କି ?"

ରାଘବବାବୁ ତଟସ୍ଥ ହୋଇ ଶୁଣିଲେ ସବୁକଥା । ମନେ ମନେ ଭାବିଲେ ତମେ ନିଶ୍ଚୟ ଭୁଲ୍ କଲ । ଏକଥା କହିବା ପୂର୍ବରୁ ଥରେ ବି ମୋ ସହିତ ଆଲୋଚନା କରିବା ଉଚିତ୍ ବୋଲି ଭାବିଲନି ଅଭୟା..... ଲକ୍ଷ୍ମୀକୁ ଆଣିବା ପାଇଁ ମୋର ସିନା ଆପତ୍ତି ନାହିଁ । ହେଲେ.....

ତାଙ୍କୁ ଚିନ୍ତିତ ହେବା ଦେଖି ଅଭୟା ବ୍ୟସ୍ତ ହେଇ ପୁଣି ପ୍ରଶ୍ନ କଲେ- "କ'ଣ ହେଲା କିଛି କହୁନ ଯେ, ଦେଖ, ମୁଁ କେବେ ନିଜ ପାଇଁ କିଛି ମାଗିନି ତମକୁ । ତମ ନିଷ୍ପତ୍ତିକୁ ବିନା ଦ୍ୱିଧାରେ ସମର୍ଥନ କରିଆସିଛି - ହେଲେ ମୋର ଏଇ ଇଚ୍ଛାକୁ ତମେ ଭାଙ୍ଗି ଦିଅନି ।"

ନୀରବତା ଭାଙ୍ଗି ମୁହଁ ଖୋଲିଲେ ରାଘବବାବୁ । ଦୀର୍ଘଶ୍ୱାସ ନେଇଁ କହିଲେ "ମୋର ହେଉ କି ତମର, ଇଚ୍ଛା ଅନିଚ୍ଛା ଏ କଥା ଶେଷ ହେଇଯାଉନି ଅଭୟା - ଯା ସହିତ ଅନେକ କଥା ଜଡ଼ିତ ହେଇଅଛି । ପ୍ରଥମ କଥା ପିଲାଏ ବଡ଼ ହେଲେଣି ତାଙ୍କର ନିଜ ଇଚ୍ଛା ନିଜ ମନ ବୋଲି କିଛି ଅଛି । ସେମାନଙ୍କର ଭବିଷ୍ୟତର ଦାୟିତ୍ୱ ସେମାନଙ୍କର ସେଇ ସ୍ୱାଧୀନତା ଆମେ ତାଙ୍କୁ ଦେଇଛେ । ବଶେଷ କରି ଲକ୍ଷ୍ମୀ - ସେ ତ ନିଜେ ନିଜକୁ ଗଢ଼ିଛି । ତେଣୁ ନିଷ୍ପତ୍ତି ନେବାର ଅଧିକାର ସେମାନଙ୍କର, ଏକଥା ଆମେ ଅସ୍ୱୀକାର କରିପାରିବାନି ନା । ସମୟ ବଦଳିଛି ଅଭୟା ଏଇ ଦୃଷ୍ଟିରୁ ହିଁ ମୁଁ କହୁଛି, ତମେ ତରତର ହେଇ କିଛି ଠିକ୍ କଲନି । ତେବେ ଯା'ହଉ ଯେତେବେଳେ ପାଟିରୁ କଥା ବାହାରି

ଯାଇଛି, ପ୍ରଶ୍ନ ତ ଉଠୁନି ଫେରେଇ ଆଣିବା । କେବଳ ଅପେକ୍ଷା କରିବା ସମୟକୁ ସେ କେମିତି ସମାଧାନ କରୁଛି ଦେଖାଯାଉ । ଦୀର୍ଘଶ୍ୱାସ ଛାଡ଼ିଲେ ରାଘବବାବୁ ।

ଅଭୟାଙ୍କ କୁମୁଦିତ ମନ ହଠାତ୍ ମଉଳିଗଲା, କହିଲେ- "ତମେ କ'ଣ ଭାବୁଛ ଆର୍ଯ୍ୟ ଆମ କଥାରୁ ବାହାରିଯିବ ?

"ସେ କଥା କିଏ କହିବ ? ଆମେ ତାକୁ ନ ପଚାରି ଯେକୌଣସି ନିଷ୍ପତ୍ତିକୁ ଲଦି ଦେଇ ପାରିବାନି ତା' ଉପରେ । ଇଏ କଣ୍ଢେଇ ଖେଳ ନୁହେଁ ଅଭୟା ।" ମନେମନେ ଭାବିଲେ, ଆର୍ଯ୍ୟର ମତିଗତି ସେଭଳି ଅନୁକୂଳ ଥିଲା ଭଳି ତାଙ୍କୁ ଲାଗୁନଥିଲା । ତାକୁ ତ ପ୍ରଶ୍ନ କିଛି କରି ହେବନି ସେ ବୟସକୁ ସେମାନେ ଅତିକ୍ରାନ୍ତ କରି ସାରିଛନ୍ତି । ମା'ର ଅନ୍ଧ ମମତା ନେଇ ସିନା ଅଭୟା ଆଶା ବାନ୍ଧିଛନ୍ତି, ନହେଲେ..... । ଯାହାହେଉ ସେ ଆଗ ପଢ଼ାସାରି ଆସୁ । ଏଇ ମାର୍ଚ୍ଚ ଏପ୍ରିଲ୍‌ରେ ତ ସରିବ ତାର ପାଠପଢ଼ା । ଲକ୍ଷ୍ମୀର ବି ପରୀକ୍ଷା ଏଇଥର ସରିବ - ତା'ପରେ ଦେଖାଯିବ । ଘଟଣା କୁଆଡ଼ିକି ଯାଉଛି ।

ବାହାରେ କିଏ ଡାକିଲା, ଆଲୋଚନାକୁ ସେଇଠି ରଖି ଉଠିଲେ ରାଘବବାବୁ ।

॥ ୮ ॥

ସମୟ ଗଡ଼ିଚାଲେ ନିଜ ଛନ୍ଦରେ । କାହା ମନର ଭାବ-ଭାବନା, ସୁଖ-ଦୁଃଖକୁ ଭୃକ୍ଷେପ ନ କରି । ହେଲେ ରକ୍ତମାଂସର ମଣିଷ ସମୟର ଘାତ ପ୍ରତିଘାତ, ଦିଆନିଆକୁ ଆଡ଼େଇ ନିଜ ମନ ମତରେ ଚାଲି ପାରେନା । ସମୟର ଦାସ ପାଲଟି ଯିବାକୁ ସେ ବାଧ୍ୟ । ଏ ଭିତରେ ଅନେକ ଦିନ ଗତ ହୋଇଗଲାଣି । ଶୀତ ଯାଇ ବସନ୍ତ ଆସିଲାଣି । ପୁଣି କୃଷ୍ଣଚୂଡ଼ାର ଶାଖାରେ ଶାଖାରେ ଫୁଲ ଫୁଟିବାର ପ୍ରସ୍ତୁତିପର୍ବ ଆରମ୍ଭ ହେଲାଣି ।

ଚାହିଁଥିଲା ଲକ୍ଷ୍ମୀ ଝରକା ପାଖରେ ଠିଆ ହୋଇ । ସରିଆସୁଛି ସୂର୍ଯ୍ୟଙ୍କ ତେଜ । ସଂଜ ଆସିବ ଆଉ ଟିକିଏ ପରେ । ଏଇ ସନ୍ଧିକ୍ଷଣଟାରେ ହିଁ ତାକୁ ଟିକିଏ ସମୟ ମିଳେ । ନ ହେଲେ ସେ ଏବେ ପଢ଼ାଟେବୁଲ୍ ପାଖରୁ ଉଠେନି । ଆଜିକାଲି ଆଶ୍ରମ କାମରେ ତାକୁ ଟିକିଏ ରିହାତି ମିଳିଛି । ଅଲେଖ, ସୁକାନ୍ତ ମିଶି ସବୁ କାମ ଦେଖୁଛନ୍ତି - ବୋଉ ତ ଅଛି, ସୁଲତା ସାହାଯ୍ୟ କରୁଛି ତାକୁ । କେବଳ ସରମାଁଙ୍କ ପାଇଁ ତାକୁ କିଛି ସମୟ ଦେବାକୁ ପଡ଼େ । ସମସ୍ତେ ଚାହାଁନ୍ତି, ପରୀକ୍ଷା ପାଇଁ ତାର ପ୍ରସ୍ତୁତିରେ ଯେମିତି କୌଣସି ତ୍ରୁଟି ନରହେ । ରାଘବସାର୍ ପ୍ରତ୍ୟେକ ମୁହୂର୍ତ୍ତରେ ତାକୁ ମନେପକେଇ ଦିଅନ୍ତି ଏକଥା ।

ଆଉ ଡା. ସାମନ୍ତ, ସେ ତ ଏଇ ମାସେ ଦି'ମାସ ହେବ ଫୋନ୍ ବି କରୁନାହାନ୍ତି- ଯଦି ବି କରନ୍ତି ଖୁବ୍ କମ୍ ସମୟ ପାଇଁ । ନହେଲେ ନିତି ଫୋନ୍ କରୁଥିଲେ ରାତିରେ । ସେଇଥିପାଇଁ ତ ସେ ଏଇ ସେଲ୍ ଫୋନ୍‌ଟିକୁ ଉପହାର ଦେଇଛନ୍ତି । "ସବୁଦିନ ଅଫିସ୍

ଫୋନ୍‌କୁ ବ୍ୟକ୍ତିଗତ କାମରେ ଲଗେଇବା ଉଚିତ୍ ହେବନି ଲକ୍ଷ୍ମୀ । ଏଇଟା ତମ ପାଖେ ରହିବ । ମୋ ସୁବିଧା ଦେଖି ମୁଁ ତମ ସାଂଗେ କଥା କହିବି ଖୋଲା ମନରେ ।

ସିଏ ବି ମନା କରିପାରିନଥିଲା । ଠିକ୍ କଥା । ଅନ୍ୟମାନଙ୍କ ଆଗରେ ଫୋନ୍ କରିବାକୁ ତାକୁ ଭଲ ଲାଗେନି । ସୁନ୍ଦର ବି ଦିଶିବନି । ବୋଉ ପଚାରିଥିଲା -ଉତ୍ତରରେ ସେ କେବଳ ସରମାଁଙ୍କ କଥା କହିଥିଲା । ସରମାଁ ବେଳେବେଳେ ପୁଅ ଭୃଗୁ ସହିତ କଥା କହିବାକୁ ଚାହାଁନ୍ତି ତ । ପୁଣି ଡା. ସାମନ୍ତ ଦି' ମାସ ହେବ ବାହାରେ ଅଛନ୍ତି ।

ହଠାତ୍ ସେଲ୍‌ଫୋନ୍‌ଟା ବାଜି ଉଠିଲା ତୁହାଇ ତୁହାଇ । ଏତିକି ବେଳକୁ କିଏ ଡାକିଲା ଯେ... ।

ସ୍କ୍ରିନ୍‌ରେ ଡା. ସାମନ୍ତଙ୍କ ନମ୍ବର । ହଠାତ୍ ଅସମୟରେ ସେ ଡାକିଲେ କାହିଁକି ! 'ହାଲୋ.....'

"ମୁଁ ଜାଣେ ତମେ ଟିକିଏ ବ୍ୟସ୍ତ ହେଇପଡ଼ିବ, ମୋର ଏଇ ଅସମୟ କଲ୍‌ରେ । ତେବେ ମୁଁ କ'ଣ କରିବି । ମନ କ'ଣ ମୋ' ଆୟତ୍ତରେ ଅଛି ? ଭାବିଲି, ତମେ ବର୍ତ୍ତମାନ ଝରକା ପାଖରେ ଠିଆ ହେଇ ତୁରନ୍ତ ସୂର୍ଯ୍ୟଙ୍କୁ ଚାହିଁଥିବ କିମ୍ବା କୃଷ୍ଣଚୂଡ଼ାର ଶାଖାରେ ହଳଦୀବସନ୍ତକୁ ଖୋଜୁଥିବ ନିଶ୍ଚୟ ? ତମ ମୁହଁରେ ସୂର୍ଯ୍ୟଙ୍କର ଗୋଲାପୀ ଆଭା ବୋଳି ହେଇଯାଇଥିବ - ସୁନ୍ଦର ଦିଶୁଥିବ, ଭାବି ହେଉଥିବ ଅନାବନା ଅନେକ କଥା..... ଅନାବନା ସେଇ କଥା ଭିତରେ କିନ୍ତୁ ମୁଁ ତ ନିଶ୍ଚେ ନଥିବି... ସରମାଁ ଥିବେ, ରାଣୀ ଆଈ ଥିବେ, ଏଇ ଗଲା ସପ୍ତାହରେ ଦୁନିଆ ଛାଡ଼ି ଚାଲିଯାଇଥିବା ତମ ମିନିମାଉସୀ ଥିବ.... ସତ କହୁଛି ନା ମୁଁ.... ?" ଲମ୍ବା କଥନିକା ପରେ ଡା. ସାମନ୍ତ ନିଃଶ୍ୱାସ ନେବାକୁ ଟିକିଏ ଲଘୁ ଟିପ୍ପଣୀ କଲେ ।

'ନିଶ୍ଚୟ', ଲକ୍ଷ୍ମୀ ଉତ୍ତର ଦେଲା । ମନଜ୍ଞ ଡାକ୍ତର ମନର କଥା ନବୁଝିବ ତ କିଏ ବୁଝିବ । ହେଲେ, ନିଜ ମନକୁ କିମିତି ଆୟତ୍ତ କରାଯାଏ, ସେକଥା କାହିଁକି ଜାଣିପାରୁନାହାଁନ୍ତି - ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ଡାକ୍ତର ସାହେବଙ୍କ ପାଟିରେ କବିତ୍ୱ ବି ଚମତ୍କାର ଶୁଭୁଛି । ତେବେ, ଏକଥା ସତ ଯେ, ଏଇ ସମୟରେ ହିଁ ମୁଁ ସେମାନଙ୍କ କଥା ଭାବେ । ଏଇ ସପ୍ତାହେ ହେବ ଆଉ ଜଣେ ନୂଆ ଅତିଥି ଆସି ଆମ ସଂଗତ ସାମିଲ୍ ହେଇଛନ୍ତି । ଭଦ୍ରଲୋକ, ଜଣେ ସାଧୁ । ମୁଁ ଅବଶ୍ୟ ଏତେଟା ସମୟ ଦେଇପାରୁନି ନିଜ ପଢ଼ାରେ ବ୍ୟସ୍ତ ରହି । ସରମାଁ ଯେମିତି ଥିଲେ ସେମିତି ଅଛନ୍ତି । ଆପଣଙ୍କୁ ତ ଖୋଜୁଛନ୍ତି ପ୍ରତି ମୁହୂର୍ତ୍ତରେ । ଦି'ଦିନ ତଳେ ବିଜୁ ଆସିଥିଲା । ତାକୁ ଦେଖି ମାଁ ବ୍ୟସ୍ତ କଲେ ଘରକୁ ମୋତେ ନେଇଚାଲ ବୋଲି ।

ଆଉ ଗୋଟେ ଅଧେ ଛୋଟମୋଟ କଥା ପଚାରି, ଫୋନ୍ ରଖିଲେ ଡା. ସାମନ୍ତ ଶୁଭ ସନ୍ଧ୍ୟା ଜଣେଇ ।

ମନ ହାଲୁକା ହେଇଗଲା ଲକ୍ଷ୍ମୀର । ଏଥର ପଢ଼ା ଟେବୁଲ୍‌କୁ ଯିବ । କର୍ତ୍ତବ୍ୟରେ ସେ କେବେ ଅବହେଳା କରେନି, ପିଲାଟି ଦିନରୁ ତା'ର ଏଇ ଅଭ୍ୟାସ ଅଛି ।

ଏଣେ ଅଭୟାଙ୍କର ମନ ଭଲ ଲାଗୁନଥିଲା । କୌଣସି କାମକୁ ସେ ନିଷ୍ଠାର ସହିତ କରିପାରୁନଥିଲେ । ଏମିତି ହୁଏ ସଚରାଚର । ସ୍ୱପ୍ନ ଭାଙ୍ଗିଗଲେ ମନ ଭାଙ୍ଗିଯାଏ । ତୁଚ୍ଛ ଲାଗେ ସବୁ । ମିଛ ଲାଗେ ସଂସାରଟା ।

ଆଜିଯାଏ ତାଙ୍କ ପାଦ ପବନରେ ଥିଲା । ଅନେକ ଆଶା ବାନ୍ଧିଥିଲେ । ମନେମନେ ଲକ୍ଷ୍ମୀକୁ କେତେଥର ବୋହୂ କରି ଆଣି ସାରିଥିଲେ ସେ । ସଂସାର ଯାକର କୌଣସି ଝିଅ ତାଙ୍କ ମନକୁ ପାଉ ନଥିଲା । ଖୋଜି ଖୋଜି ଲକ୍ଷ୍ମୀ ପାଖରେ ଆସି ଅଟକୁ ଥିଲେ । ଅନେକ ଦିନ ଲାଗିଥିଲା, ଲକ୍ଷ୍ମୀକୁ ଆଣିବା ପାଇଁ, ନିଜକୁ ନିଜ ମନକୁ ନିଜ ସଂସ୍କାର, ବିଚାରକୁ ଶୋଧ କରିବାକୁ । ଜାତି, ବର୍ଣ୍ଣ, ଶ୍ରେଣୀଭେଦର ଉର୍ଦ୍ଧ୍ୱକୁ ଯାଇ ଭାବିଥିଲେ, ତାଙ୍କର କେବଳ ଝିଅଟିଏ ଦରକାର ଆର୍ଯ୍ୟ ଯିମିତି ସୁଖୀ ହେବ । ସେ ନିଶ୍ଚିନ୍ତ ହେବେ ।

ହେଲେ କାହିଁ ? ସବୁ ସ୍ୱପ୍ନ ମୁହୂର୍ତ୍ତକରେ ଚୂରମାର୍ ହେଇଗଲା । ଏବେ ତ ଖାଲି ଶୂନ୍ୟ ଶୂନ୍ୟ ଲାଗୁଛି । ସେ କଳ୍ପନାରେ ବି ଭାବିନଥିଲେ ଯେ, ଆର୍ଯ୍ୟ ଆଉ ଛୋଟପିଲା ହେଇନାହିଁ, ବଡ଼ ହେଇଗଲାଣି । ତା'ର ବି ଗୋଟାଏ ସ୍ୱତନ୍ତ୍ର ମନ, ଇଚ୍ଛା, ବିଚାରବୋଧ ଥିବ । ଭାବନାର ବିଳାସ ଭିତରୁ ଟାଣି ଆଣି ତାଙ୍କୁ ମାଟି ଉପରେ ଠିଆ କରେଇ ଦେଇ ସ୍ୱାମୀ ରାଘବବାବୁ କହିଥିଲେ "ଚାହିଁଲ ତମ ଆର୍ଯ୍ୟକୁ..... ।"

ସେତେବେଳକୁ ସମୟ ବଡ଼ ବଡ଼ ପାହୁଣ୍ଡ ପକେଇ ଆର୍ଯ୍ୟର ହାତଧରି ଆଗକୁ ଆଗକୁ ଧାଉଁଥିଲା ତାଙ୍କ ଡାକ ଆଉ ଶୁଭିବନି ତାକୁ । ସମୟ କଣ କାହାକୁ କେବେ ଭୂକ୍ଷେପ କରେ ?

ଏଇ ଗଲା ମାସେ ଦି'ମାସ ଭିତରେ ସେ ଯେତେବେଳେ ବି ଆର୍ଯ୍ୟକୁ ଖୋଜିଛନ୍ତି, ଭଲମନ୍ଦ ଦି'ପଦ ପଚାରିବେ ବୋଲି, ତାକୁ ପାଇନାହାନ୍ତି । ପାଇଲେ ବି ଆର୍ଯ୍ୟ ସମୟ ଦେଇନି ଖାପଛଡ଼ା ବ୍ୟବହାର କରିଛି । ତାଙ୍କୁ ଦୁଃଖ ଲାଗିଛି ।

ରାଘବବାବୁ ବୁଝେଇଛନ୍ତି- "ଏଇଟା ତ ଦୁନିଆର ନିୟମ । ଡେଣା ଲାଗିଲେ ପକ୍ଷୀଶାବକ ଉଡ଼ିଯାଏ- ସେମିତି ସଭିଏଁ ଉଡ଼ିଯିବେ ନିଜ ବାଟରେ । ମଣିଷର ତ ନିଜ ବିଚାର ଅଛି । ଜୀବନଟା ଗୋଟାପଣରେ ତାର, ବାପା-ମା' କେବଳ ଜନ୍ମ ଦିଅନ୍ତି । ଡେଣା ଲାଗିବା ଯାଏ ତାଙ୍କର ଯାହା ଦାୟିତ୍ୱ । ଦୁଃଖ କାହିଁକି କରୁଛ ?"

ସତ କଥା । ନା, ଆଉ ଭାବିବେନି ସେ ଆର୍ଯ୍ୟ କଥା । ପେଜ ଉତୁରି ଚୁଲିରେ ପଶିଲା, ଗରମ ବାମ୍ଫରେ ଭାବନା ଚହଲିଗଲା । ଫେରିଆସିଲେ ଅଭୟା ନିଜ ସ୍ଥିତିକୁ ।

ଅନେକ ଦିନ ହେଲା ସେ ଜରାଶ୍ରମ ଆଡ଼େ ଯାଇନାହାଁନ୍ତି । ମନ ବି ଡାକୁନି ଯିବା ପାଇଁ । ହେମଲତାକୁ କିମିତି ମୁହଁ ଦେଖେଇବେ । ଆର୍ଯ୍ୟ ଯଦି ତାଙ୍କୁ ଆଡ଼େଇ ଯାଏ, ତା'ହେଲେ କି ଉତ୍ତର ଦେବେ ସେ କାହାକୁ ? ଏକଥା ଭାବିଲା ବେଳକୁ ଛାଟିପିଟି ଲାଗେ । ନିଜ ପାଖରେ ନିଜେ ବାହାନା କରନ୍ତି । ସେ କ'ଣ କରିପାରିବେ ପିଲାଏ କଥା ନ ଶୁଣିଲେ । ତଥାପି ଆଶା ହରାନ୍ତିନି । ବିଶ୍ୱାସ ରଖନ୍ତି ଅଭୟା ପୁଅ ଉପରେ ।

ଆଉ ହେମଲତା, ଆଶ୍ରମର କାମରୁ ତାକୁ ଅବ୍ୟାହତ କେବେ ମିଳେନା । ବୁଢ଼ାବୁଢ଼ୀଙ୍କ ସେବା ଶୁଶ୍ରୂଷା କରୁ କରୁ ସମୟ କୁଆଡ଼େ ଧାଏଁ । କେଶବାର ସ୍ୱାସ୍ଥ୍ୟ, ଏଇ ଶୀତଦିନ ପରଠୁ ଆହୁରି ଖରାପ ହେଇଯାଉଛି । ଏଇ ଗଲା ମାଘରେ ତାକୁ ଡାକ୍ତରଖାନାରେ କିଛିଦିନ ରଖିବାକୁ ପଡ଼ିଥିଲା ।

ଏତେ ଭିତରେ ବି ହେମଲତାର ମନେ ପଡ଼ିଯାଏ, ଅଭୟାଙ୍କ କଥା ମଝିରେ ମଝିରେ ଝିଅ ମୁହଁକୁ ଚାହେଁ - ଭାବେ କହିବ ବି ଲକ୍ଷ୍ମୀକୁ ? ଦେଖେ, ଲକ୍ଷ୍ମୀ ମୁହଁରେ ପ୍ରସନ୍ନତାର ଆଭା ଛିଟିକି ପଡୁଛି । ଝିଅଟା ଖୁସି ଅଛି । ପରୀକ୍ଷାରେ ବସିବ ବୋଲି ଦିନରାତିକୁ ଏକ କରି ଦେଇଛି । ଏଇ ସମୟରେ ତାକୁ କିଛି ନକିହବା ଭଲ, କେଶବା ଥରକୁ ଥର ମନେ ପକେଇ ଦେଉଛି । "ସମୟ ଆସୁ", ଈଶ୍ୱରଙ୍କ ଇଚ୍ଛା ନ ଥିଲେ ପରା ଗଛରୁ ପତ୍ରଟିଏ ବି ହଲିବନି । ଅପେକ୍ଷା କର ।

ପ୍ରତ୍ୟେକ ନିଜ ନିଜ ଭାବନା ଭିତରେ ମଗ୍ନ ଥାଇ ସ୍ୱପ୍ନ ଦେଖନ୍ତି, ସମୟ ଧାଉଁଥାଏ । ତାକୁ ଧରି ହୁଏନା । ସେ ଧରା ଦିଏନା । ଅସହାୟ ଭାବେ ମଣିଷ ତାକୁ ହିଁ ଅପେକ୍ଷା କରେ । ସେ ଦୁର୍ବଳ ହେଉ କି ସବଳ । ହାତ ଟେକି ଦେଇଥାଏ 'କାଳ' ଆଗରେ ନିରୁପାୟ ହେଇ ଏବଂ ସ୍ୱପ୍ନର ଭଙ୍ଗାଗଢ଼ା ଖେଳ ଚାଲିଥାଏ ନିରବଧି । ଚାହୁଁ ଚାହୁଁ ଲକ୍ଷ୍ମୀର ପରୀକ୍ଷା ପାଖେଇ ଆସୁଛି । ଆଉ ମାତ୍ର ଦେଡ଼ମାସ । ତର ନାହିଁ ତାକୁ ନାକ ପୋଛିବାକୁ । ଦିନରାତି ଏକ କରି ଦେଇଛି । ପଢ଼ା ଟେବୁଲ୍ ପାଖରେ ବସିଚି ମୁହଁମାଡ଼ି । ତା'ର ପ୍ରସ୍ତୁତିରେ ଯେମିତି ତ୍ରୁଟି ନ ରହେ ସେଥିପାଇଁ କୌଣସି ବାହାନାକୁ କ୍ଷମା ଦିଆଯାଇ ପାରିବନି - ରାଘବ ସାର୍‌ଙ୍କ ତାଗିଦ୍ । ସମସ୍ତେ ଚାହାଁନ୍ତି ତାର ସଫଳତା । ଅନେକ ସହୃଦ୍, ବଂଧୁଙ୍କ ଶୁଭକାମନା ବିଛେଇ ହେଇପଡ଼ିଛି ତା'ଟେବୁଲ୍ ଉପରେ - "ତମେ ଆକାଶ ଛୁଅଁ - ସଫଳତାର ଶୀର୍ଷ ଛୁଅଁ ।" ଅଥଚ ତା'ର ସ୍ୱପ୍ନ ସହିତ ଯୋଡ଼ି ହୋଇ ରହିଛି ଅନେକଙ୍କ ସ୍ୱପ୍ନ । ସେ କାହାକୁ ହତାଶ କରିବନି । ତେଣୁ ସେ ଦିନରାତି ଲାଗିପଡ଼ିଛି ।

ଦୀର୍ଘ ଦୁଇମାସର ରହଣୀ ପରେ ଡ.ସାମନ୍ତ ବିଦେଶଗସ୍ତରୁ ଫେରିଆସିଛନ୍ତି । ରଜନୀଗଂଧାର ଫୁଲତୋଡ଼ା ଦେଇ ସିଏ ବି ଶୁଭକାମନା ଜଣେଇ ଯାଇଛନ୍ତି । ନିୟମିତ

ସରମାଁଙ୍କ ପାଖକୁ ଆସି ଦେଖାଶୁଣା କରି ଯାଉଛନ୍ତି ବି – ଲକ୍ଷ୍ମୀର ଦାୟିତ୍ୱକୁ ସଭିଏଁ ଭାଗ କରି ତୁଲେଇ ନେଉଛନ୍ତି । ଲକ୍ଷ୍ମୀର ସମୟ ନଷ୍ଟ ନକରି କେବଳ ଦିନେ ଦିନେ ଆସି ସୁବିଧା ଅସୁବିଧା ବୁଝି ନିଅନ୍ତି ଏବଂ ସ୍ୱପ୍ନକୁ ଦେଖି ଶୁଭକାମନା କରି ଚାଲି ଯାଉଛନ୍ତି । ତାଙ୍କ ନିଜ ଆଶା ବି ଦାନା ବାନ୍ଧୁଛି ଲକ୍ଷ୍ମୀର ଆଶା ସହିତ । ଲକ୍ଷ୍ମୀ ତ ତାଙ୍କର, ବ୍ୟସ୍ତ ହେବା କ'ଣ ଦରକାର । ମନ ଆଖି ତ ସବୁବେଳେ ଦେଖୁଛି ଲକ୍ଷ୍ମୀକୁ ।

ଏଇ ଦି' ଦିନ ତଳେ କିନ୍ତୁ ସରମା ତାଙ୍କୁ ନିହାତି ବ୍ୟସ୍ତ କଲେ, ଜିଦ୍ ଧରି ବସିଲେ ସେ ଆଜି ନିଶ୍ଚେ ଘରକୁ ଯିବେ । ଅଗତ୍ୟା ରାଘବବାବୁ ଆଶ୍ରମର ଅନ୍ୟ ସଭ୍ୟମାନଙ୍କ ସହିତ ପରାମର୍ଶ କରି କିଛି ସମୟ ପାଇଁ ଡା. ସାମନ୍ତଙ୍କ ସହିତ ତାଙ୍କ ଘରକୁ ଯିବା ପାଇଁ ଅନୁମତି ଦେଲେ । ସେଦିନ ସରମାଁଙ୍କ ଖୁସି କହିଲେ ନସରେ । ସନ୍ଧ୍ୟା ହେବା ପୂର୍ବରୁ ପୁଣି ତାଙ୍କୁ ଜରାଶ୍ରମକୁ ଫେରେଇ ଆଣିବା ପାଇଁ ବ୍ୟବସ୍ଥା କରୁଥିବା ଦେଖି ସେ ଜିଦ୍ ଧରି ବସିଲେ ଯେ, ଆଉ ଫେରିବେନି । ବଡ଼ ଅଡୁଆରେ ପଡ଼ିଲେ ଭୃଗୁ । ବୁଝେଇଲେ ବି ଅନେକ । ନା, ହେଲାନି ବିଜୁ ସାହସ ଦେଲା । ମୁଁ ତ ଅଛି ଆଖିରେ-ଆଖିରେ ରଖିବି । ଅସୁବିଧା ହେଲେ ପଛକେ ଫେରେଇନେବା । ମନ ଭାଙ୍ଗିଦେଲେ ଆଘାତ ପାଇବେ । ସେ ରହିଲେ କିନ୍ତୁ ଜଣେ ପରିଚାରିକା ନିହାତି ଆବଶ୍ୟକ । ଭୃଗୁ ଚାହୁଁଥିଲେ, ଜଣେ ପରିଚାରିକା ଥିଲେ ସୁବିଧା ହୁଅନ୍ତା । ସୁଲତାକୁ ସେଥିପାଇଁ ବାଧହୋଇ ସକାଳୁ ଆଣନ୍ତି ଏବଂ ପୁଣି ଛାଡ଼ି ଆସନ୍ତି ଆଶ୍ରମରେ । ତାଙ୍କୁ ଦିନରାତି ଜଗି ରହିବାକୁ ହୁଏ ବିଜୁକୁ । ଖୁସିଲାଗେ ବି ତାକୁ ।

ଲକ୍ଷ୍ମୀ ସୁଲତା ମାଉସୀଠୁ ସରମାଁଙ୍କ ଖବର ପାଏ । ସରମାଁଙ୍କ ଦାୟିତ୍ୱ ନେବା ତାର କର୍ତ୍ତବ୍ୟ କେବଳ ନଥିଲା, ଅଭ୍ୟାସରେ ପଡ଼ିଯାଇଥିଲା, ତେଣୁ ମଝିରେ ମଝିରେ ମନେ ପଡ଼ନ୍ତି ସରମାଁ ।

ନିତିଦିନ ଭଳି ସେଦିନ, ଲକ୍ଷ୍ମୀ ସକାଳୁ ଉଠି ଝରକା ପାଖରେ ଠିଆ ହୋଇ ନୂଆ ସୂର୍ଯ୍ୟଙ୍କୁ ପ୍ରଣାମ ଜଣଉଛି, ନୂଆ ଦୃଶ୍ୟଟିଏ ଆଖିରେ ପଡ଼ିଲା । ମୁହୂର୍ତ୍ତେ ଠିଆ ହେଇଗଲା । ଜଣେ ସଫେଦ୍ ବସ୍ତ୍ର ପରିହିତ ଲଣ୍ଡିତ ମସ୍ତକ ସାଧୁଙ୍କୁ ଘେରି, ରାଜୁମାମୁ ଶଙ୍କର ଅଜା, ଶିବ ମଉସା, ନାରଣ ଅଜା, ମାଗୁଣି ଅଜା ମନଧ୍ୟାନ ଲଗେଇ ସାଧୁବାବା କଣସବୁ କହି ଚାଲିଛନ୍ତି । ସମସ୍ତେ ବସି ଶୁଣୁଛନ୍ତି ଆଶ୍ରମ ରାସ୍ତାରେ ପ୍ରାତଃଭ୍ରମଣରେ ବାହାରିଥିବା ଦି'ତିନିଜଣ ବାଟୋଇ ମଧ କୌତୂହଳ ସମ୍ଭାଳି ନପାରି ଭିତରକୁ ପଶି ଆସି ବସିଗଲେ ଅନ୍ୟମାନଙ୍କ ମେଳରେ- ସାଧୁବାବାଙ୍କ କଥା ଶୁଣିବାକୁ ।

ଭଲ ଲାଗୁଥିଲା ଲକ୍ଷ୍ମୀକୁ ଦୃଶ୍ୟଟି । ମନେହେଉଥିଲା ବୁଦ୍ଧଙ୍କୁ ତାଙ୍କ ଶିଷ୍ୟମାନେ ଘେରି ବସିଛନ୍ତି ସତେକି ! ଅନ୍ୟଦିନ ହେଇଥିଲେ, ସେ ବି ଯାଇ ଶୁଣିଥାନ୍ତା ବାବାଙ୍କ

ପ୍ରବଚନ । ଆଜି ସମୟ ନାହିଁ । ଦାନ୍ତରେ ବ୍ରସ୍ ଚଲଉ ଚଲଉ ଭାବିଲା, ବାବା କ'ଣ ପ୍ରବଚନ ଦେଉଥିବେ ଯେ - ଏଇ ବୋଧେ ଆଶ୍ରମର ନୂଆଁ ଅତିଥି । ସେ ଏ'ଯାଏ ଦେଖିନଥିଲା । ବୟସ୍କ ଦିଶୁ ନାହାନ୍ତି ଯଦିଓ, ରୁଗ୍ଣ ମନେ ହେଉଛନ୍ତି । ଅବଶ୍ୟ ଦିନେ ରାତିରେ ଖାଇଲାବେଳେ ବୋଉ ପାଖରୁ ଶୁଣିଥିଲା ସାଧୁବାବାଙ୍କ କଥା । ବାପାଙ୍କୁ କହୁଥାଏ ବୋଉ - ସେ ଅନ୍ୟମନସ୍କ ଥିଲା କିଛି କିଛି କାନରେ ପଡ଼ିଛି ଯାହା ।

ସେ ବିହାରର 'ଶାନ୍ତିଧାମ' ଆଶ୍ରମରୁ ଆସିଛନ୍ତି । ଓଡ଼ିଶାର ବାସିନ୍ଦା । ମଧ୍ୟବିତ୍ତ ପରିବାର । ବାପା ମାଁ, ଭାଇ ଭଉଣୀ ହେଇ ସାତପ୍ରାଣୀ ସଂସାର । ଛୋଟମୋଟର ବ୍ୟବସାୟ କରନ୍ତି । ବିବାହିତ । ଝିଅଟିଏ ବି ଅଛି । ସ୍ତ୍ରୀ କିନ୍ତୁ ଦୁଷ୍ଟ ପ୍ରକୃତିର । ସ୍ୱାର୍ଥୀ । ଜିଦ୍ ଧରିଲା କୋଠ ପରିବାର ଭିତରେ ସେ ଚଳିପାରିବନି । ଘର ଅଲଗା ହେବ, ଭାଗ ହେବ । ଅନ୍ତଃସତ୍ତ୍ୱା ସ୍ତ୍ରୀ ବାପଘରକୁ ଯାଇଥିଲା ସର୍ତ୍ତ ରଖି । ଅଲଗା ଘରକୁ ହିଁ ସେ ଫେରିବ ନ ହେଲେ ନାହିଁ । ସାଧୁବାବାଙ୍କ ପାଇଁ ତାହା ସମ୍ଭବ ନ ଥିଲା । ସେ ବି ଫେରିଲାନି । ମାନସିକ ଅଶାନ୍ତି, ମନାନ୍ତର ବଢ଼ିଲା । ଏଇ ସାଧୁବାବା ଟାଟା କି ଖଡ଼ଗପୁରରେ ବ୍ୟବସାୟ କରୁଥିଲେ । ଥରେ ବିହାର ଶାନ୍ତିଧାମରୁ ସନ୍ନ୍ୟାସୀ ମହାରାଜ ପ୍ରବଚନ ଦେବାକୁ ଆସି ଶିବିର ପକାଇଥିଲେ । ନିତି ତାଙ୍କର ପ୍ରବଚନ ଶୁଣିବା ପାଇଁ ଏଇ ସାଧୁ ମହାଶୟ ଯାଆନ୍ତି । ଦିନେ କ'ଣ ମନେକରି କେଜାଣି ହଠାତ୍ ସନ୍ନ୍ୟାସୀଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ସବୁ ଛାଡ଼ିଛୁଡ଼ି ସେମାନଙ୍କ ସହିତ ଚାଲିଗଲେ, ବିତୃଷ୍ଣାଭରା ଜୀବନରୁ ମୁକ୍ତି ପାଇବା ପାଇଁ । ସମସ୍ତେ ଜାଣିଲେ ସେ ଗୃହତ୍ୟାଗୀ ସନ୍ନ୍ୟାସୀ ହେଇଗଲେ ।

ଦୀର୍ଘ ତିରିଶବର୍ଷ ପରେ ସେଇଭଳି ଏକ ପ୍ରାବଚନିକ ପରିବେଶରେ ସାଧୁଙ୍କର ଭେଟ ହୁଏ ଆତ୍ମୀୟ ସ୍ୱଜନଙ୍କ ସହିତ ଶ୍ରୀକ୍ଷେତ୍ରରେ । ଚିହ୍ନା ପରିଚୟ ହୁଏ - ଘର କଥା ପଚାରି ବୁଝନ୍ତି - ଏଇ ପାଖରେ ଭାଇ, ଭାଇଙ୍କ ପିଲାଏ ରହୁଛନ୍ତି ଶୁଣି , ମନ କରନ୍ତି ପୁଣି ଘରକୁ ଲେଉଟିବା ପାଇଁ । କାରଣ ସେତେବେଳକୁ ସେ ରୁଗ୍ଣ, କାମଦାମ, କରିବାରେ ଅକ୍ଷମ । 'ଶାନ୍ତିଧାମ'ରେ ସେଇ ପ୍ରକାର ସେବା ସାହାଯ୍ୟର କିଛି ବି ସୁଯୋଗ ମିଳିଲା ନାହିଁ । ସେ ତ ସନ୍ନ୍ୟାସ ନେଇନଥିଲେ ସତ କହିବାକୁ ଗଲେ ନିଜକୁ ନିଜ ଦୁଃଖକୁ ଭୁଲେଇବା ପାଇଁ କିଛି ଗୋଟେ ବାହାନା ଖୋଜିଥିଲେ ନିଶ୍ଚୟ । ତା' ସହିତ ଜୀବନ ବଂଚେଇବାର ଉପାୟ । ଶାନ୍ତିଧାମ ସେଇ ସୁଯୋଗ ଯୋଗେଇଥିଲା, ବୟସ ଥିଲା ତ ଚଳିଗଲା ଏତେ ବର୍ଷ । ଏବେ ରୋଗ ଗ୍ରାସିଲା ଶରୀରକୁ । ମନେ ପଡ଼ିଲା ପରିବାର । ଆସିଲେ ଓଡ଼ିଶା । ପରିବାରର ଖୋଜ ବି ନେଲେ । ପହଞ୍ଚିଗଲେ ଘରେ । ତାଙ୍କୁ ଦେଖି ସମସ୍ତେ ଅବାକ୍ । ସମସ୍ତଙ୍କର ନିଜନିଜର ଜଂଜାଳ ଅଛି । କିଏ ନେବ

ତାଙ୍କ ଦାୟିତ୍ୱ । ଭାଇ କହିଲା ମାସକୁ ମାସ କିଛି ଟଙ୍କା ଦେଇପାରିବି କିନ୍ତୁ ସେବା କରିବା ସମ୍ଭବ ନୁହେଁ । ଭାଇ ନିଜେ ରୁଗ୍ଣ, ସ୍ତ୍ରୀର ଅନେକ ବର୍ଷ ହେଲା ଦେହାନ୍ତ ହୋଇଯାଇଛି, ବାଧ ହୋଇ ଆସିଛନ୍ତି ଆମ ଜରାଶ୍ରମକୁ ।

ମୁହୂର୍ତ୍ତକରେ ଭାବନା ରାଇଜ ବୁଲି ଫେରିଆସିଲା ଲକ୍ଷ୍ମୀ । ଭାବିଲା ବୋଉ ସେଦିନ ଠିକ୍ କହୁଥିଲା ଜୀବନ ଅଛି ତ ସମସ୍ୟା ଅଛି ତାକୁ ଡରିଲେ ହିଁ ସେ ଡରେଇବ । ସହଜରେ କେବେ କାହାକୁ ସୁଖ ମିଳେନା । ସୁଖ ବୋଲି ମଣିଷ ଯାହା ଭାବେ, ସତ ସୁଖ ସେ ନୁହେଁ । ଆଖିକୁ ଦିଶେ କେବଳ । ସୁଖ ନାଁରେ ଦୁଃଖର ସମୁଦ୍ର ଭିତରକୁ ଟାଣିନିଏ ହାତଧରି । ଅକାତ କାତ ପାଣି ଭିତରେ ଅଣନିଃଶ୍ୱାସୀ ହୋଇ ମରୁଥା' ତମେ, ତା'ର କିଛି ଯାଏ ଆସେନା ତମେ ରାଜେନ୍ଦ୍ର ହୁଅ କି ସନ୍ନ୍ୟାସ - ତାକୁ ସାମ୍ନା ନକରି ବାଟ ନାହିଁ ।

ଏଇ ଦୁଃଖର କାରଣ ଖୋଜିବାକୁ ଯାଇ ରଜାପୁଅ ସିଦ୍ଧାର୍ଥ ସବୁ ସୁଖ ସଂପଦ, ପ୍ରତିପତ୍ତି, ସିଂହାସନ ପୁଅ ପତ୍ନୀ ତ୍ୟାଗ କରି ସନ୍ନ୍ୟାସ ନେବେ ବୋଲି ଚାଲିଗଲେ ନିରଂଜନା ତଟକୁ । ତପସ୍ୟା ବି କଲେ..... ଗଛ ମୂଳେ । ଦୁଃଖର କାରଣ ବି ଖୋଜି ପାଇଲେ ମୁକ୍ତିର ବାଟ ବି ଖୋଜି ଧରେଇ ଦେଲେ ସଂସାରକୁ । ତେବେ ବି କ'ଣ ସଂସାରରୁ ଦୁଃଖ ହଟିଲା ନା ମଣିଷ ଭିତରୁ ଦୁଃଖ ଲୋପ ପାଇଲା ନା, ପାଇବ ? ଏଏ କେବଳ ଆଶ୍ୱାସନା ।" ଭାବୁ ଭାବୁ ଲକ୍ଷ୍ମୀ ହସିଲା ମନେ ମନେ । ଓଦା ମୁହଁ ପୋଛୁ ପୋଛୁ ଭାବିଲା ବୋଉଟା ଏମିତି ମଝିରେ ମଝିରେ ତା' ଜ୍ଞାନର ମାପରେ ଦାର୍ଶନିକ ଭଳି ଗୋଟାଏ ଗୋଟାଏ କଥା କୁହେ । ମିଛ ଲାଗେନି ।

ତେବେ ସାଧୁବାବା କ'ଣ ଶୁଣଉଥିବେ ତାଙ୍କ ପ୍ରବଚନରେ, ନିଜର ଅସଫଳ, ଅପୂର୍ଣ୍ଣ ଜୀବନର କାହାଣୀ, କହୁଥିବେ, ଭାଇ ଜୀବନଟା ବଡ଼ ଜଟିଳ । ସୁଖଲୋଭୀ ମଣିଷ ସୁଖ ଖୋଜି ହତାଶ ହେଲେ ଈଶ୍ୱରଙ୍କୁ ଖୋଜେ । ସୁଖ ତ ମିଳେନା, ଜୀବନ ସରେନା, ଈଶ୍ୱର ବି ପ୍ରାପ୍ତ ହୁଅନ୍ତିନି । ଏଇକଥା ଶୁଣାଉଥିବେ ତ..... ତାଙ୍କ ଚାରିପଟେ କିନ୍ତୁ ଛୋଟ ଗହଳିଟିଏ ଲାଗିଛି ।

ଭାବନାକୁ ଆଡ଼େଇ ଲକ୍ଷ୍ମୀ ଗାଧୁଆଘରେ ପଶିଲା । ବୋଉ ଜଳଖିଆ ନେଇ ଆସିବା ପୂର୍ବରୁ ସେ ନିତ୍ୟକର୍ମ ସାରି ଦେଇଥିବ ।

ସମୟ ଧାଉଁଥାଏ ଛାତି ଫୁଲେଇ ବର୍ଷାଦିନିଆ ନଦୀ ଭଳି । ପରୀକ୍ଷା ବି ପାଖେଇ ଆସେ । ଶେଷ ମୁହୂର୍ତ୍ତର ପଢ଼ା, ଲକ୍ଷ୍ମୀ ପଢ଼ାଟେବୁଲ୍ ଛାଡ଼ି ସେ କୁଆଡ଼େ ଯାଏନା । ଦିନେ ଦିନେ ପଢୁ ପଢୁ ଏମିତି ମଗ୍ନ ହୋଇପଡ଼େ ଯେ, ଖାଇବା ଭୁଲିଯାଇଥାଏ ।

ହେମ ଆସି ସକାଳୁ ଦେଖେ, ଖାଇବା ସେମିତି ଥୁଆ ହେଇଛି, ବ୍ୟସ୍ତ ହୁଏ, ମୃଦୁ ଭର୍ତ୍ସନା ବି କରେ ।" ଏମିତି ନିଜ ଶରୀର ପ୍ରତି ଅବହେଳା କଲେ, ମନର ଟାଣ ରହିବ ନା, ପାଠ ମନେ ରହିବ ଅସୁସ୍ଥ ହେଇ ପଡ଼ିଲେ ତ କଥା ସରିଲା ନା... ଆଗରୁ କଣ ପରୀକ୍ଷାରେ ବସୁନଥିଲୁ, କାହିଁ ଏମିତି ତ ମୁଁ ଦେଖିନି ।

ଲକ୍ଷ୍ମୀ ହସେ, ବୋଉ ସେ ସବୁ ପରୀକ୍ଷା ସହିତ ତୁଳନା କରନା । କେତେଜଣଙ୍କର ଭରସା ଅଛି ମୋ ଉପରେ କହିଲୁ । ସେମାନଙ୍କ ଭରସାର ମାନ ତ ମୋତେ ରଖିବାକୁ ହେବ । ଅଧ୍ୟବସାୟ ନକଲେ ହେବ ? ଆଉ କେଇଟା ଦିନ ଯେ.... ଏଇ ତ ଦି' ସପ୍ତାହର କଥା । ତା'ଛଡ଼ା "ମୋ ବାପା ବୋଉଙ୍କ ଆଶୀର୍ବାଦ ଥିଲେ, ଯମ ବି ମୋତେ ଛୁଇଁପାରିବନି ବୋଉ । ବେକରେ ଝୁଲି ପଡ଼େ ଲକ୍ଷ୍ମୀ ଆଦର ଖାଇବାକୁ ।" ହେମ ଛାତି କୁଣ୍ଢେମୋଟ ହେଇଯାଏ ଝିଅର କଥାଶୁଣି । ପାଖରେ ବସି ନିଜେ ଖୁଆଇ ଦିଏ ।

ସେ'ଦିନ ଠାକୁରଙ୍କ ପାଖରେ ସଂଜ ଦେବାକୁ ଆସି ହେମଲତା ଦେଖିଲା, ଲକ୍ଷ୍ମୀ ଶୂନ୍ୟଦୃଷ୍ଟିରେ ଝରକା ବାଟେ ବାହାରକୁ ଚାହିଁଛି । କ'ଣ ଭାବୁଛି, ଚିନ୍ତାର୍ଥୀ ଦିଶୁଛି । ହେମ ଠିଆ ହୋଇ ଚାହିଁଲା ମୁହୂର୍ତ୍ତେ ତା' ଆଡ଼ିକି ନିଘା ବି ନାହିଁ । କଣ ଭାବୁଛି ମଜା କଥା ? କେଜାଣି । ଝିଅଟା ଏଇ କିଛିଦିନ ହେଲା ନିଜକୁ ବି ଭୁଲିସାରିଲାଣି । ମା' ମନ ତାର ଆହା' କଲା, "ଲକ୍ଷ୍ମୀ... କ'ଣ ଏତେ ଭାବୁଛୁ କି ମା'....ଏ ଲକ୍ଷ୍ମୀ...." ହଠାତ୍ ଲକ୍ଷ୍ମୀର ନିଦ ଭାଙ୍ଗିଲା ସତେକି । ଚାହିଁ ଦେଖେତ ବୋଉ ଠିଆ ହେଇଛି ପାଖରେ । "ତୁ କେତେବେଳେ ଆସିଲୁ ବୋଉ ?"

ଆସିଲିଣି ଟିକିଏ ଆଗରୁ । ଆସି ଦେଖୁଛି, ତୁ ଭାବନା ଭିତରେ ହଜିଯାଇଛୁ । ଚିନ୍ତା କରୁଛୁ ? କ'ଣ ଚିନ୍ତା ତୋର ? "ଏଇ ପରୀକ୍ଷା କଥା ଭାବୁଥିଲି, ନିକଟେଇ ଆସିଲାଣି ତ... ମନ ଦକଦକ କରୁଛି.... ବୋଉ ପାରିବି ନା ? ସମସ୍ତଙ୍କର ଆଶା ଭରସା ମୋ ଉପରେ.... ଭାବିଲେ ବେଳେବେଳେ ସାହସ କୁଳୋଉନି.... ।"

"ତୁ ପାରିବୁ ନିଶ୍ଚେ । ପରୀକ୍ଷା ଆସିଲେ ତୁ ଏମିତି ଛଟପଟ ହେଉ ମୁଁ ଜାଣେ । ଗୋଟାଏ କଥା କର, ଦିନେ ମନ୍ଦିର ଯାଇ ଠାକୁରଙ୍କ ପାଖରେ ଦୀପ ବସେଇ ତାଙ୍କ ଆଶିଷ ମାଗି ଆସିବୁ । ଆମ ପାଇଁ ତାଙ୍କ ବ୍ୟତୀତ କିଏ ଅଛି ଗୁହାରି ଶୁଣିବାକୁ । ଯେତେ ପରିଶ୍ରମ କର..... ତାଙ୍କରି କରୁଣା ନ ଥିଲେ ମଣିଷ କିଛି କିଛି କରିପାରିବନି । ତା'ଛଡ଼ା, ଅନେକ ଦିନ ହେଲା ଅଭୟା ମା' ଆସିନାହାନ୍ତି – ତାଙ୍କୁ ବି ପ୍ରଣାମ କରିଆସିବୁ । ଯାଇ ପାରିବୁନି ? ଅବଶ୍ୟ ସମୟ ନଷ୍ଟ ହେବ ଟିକିଏ..... ତଥାପି ତୋର ଯିବା ଉଚିତ୍.... ସେଇ ତ ତୋତେ ବାଟ ଦେଖାଇଛନ୍ତି ବୋଲି ଏଯାଏ ତୁ ଆସିପାରିଛୁ ନା ।"

ଯିବି ବୋଉ ନିଶ୍ଚେ ଯିବି । ସରମାଁଙ୍କୁ ବି ପ୍ରଣାମ କରି ଆସିବାକୁ ମନ ଡାକୁଛି ।

ହେଲେ.... ମୋ ସାଂଗରେ କିଏ..... "ହେଲେ ଆଉ କ'ଣ, ମୁଁ ନେଇଯିବି ତୁମକୁ ସାଂଗରେ ସମୟ ମୋଟେ ନଷ୍ଟ ହେବନି..... ଅବଶ୍ୟ ତୁମର ଯଦି ଆପତ୍ତି ନଥାଏ" । କହୁ କହୁ ଦୁଆରର ପରଦା ଆଡ଼େଇ ମୁହଁ ଦେଖେଇଲେ ଭୃଗୁ ସାମନ୍ତ ।

ଭୃଗୁ ସାମନ୍ତ ଏମିତି ଆସନ୍ତି ମଝିରେ ମଝିରେ । ଲକ୍ଷ୍ମୀର ଧ୍ୟାନ ବହି ଭିତରେ ଥାଏ । ବାହାରୁ ଠିଆହୋଇ କିଛି ସମୟ ଚାହିଁଦେଇ ଚୁପ୍‌ଚାପ୍ ଫେରିଯାନ୍ତି । ଲକ୍ଷ୍ମୀର ନିବିଷ୍ଟତା ଭାଙ୍ଗିବାକୁ ଚାହାଁନ୍ତିନି, ଯଦି କେବେ ଲକ୍ଷ୍ମୀ ଆଖିରେ ପଡ଼ିଯାଏ, ତ ଦି' ଚାରିପଦ ଭଲମନ୍ଦ, କଥା, ଚେନାଏ ମିଠାହସ ବିଞ୍ଚି ଦେଇ ଫେରିଯା'ନ୍ତି ସେଇ ଟୁକୁରା ସମୟ ଭିତରେ । ସେଇ ଦି'ପଦର ଆନ୍ତରିକତା ଭିତରେ ମିଶି ରହିଥାଏ ଏକାନ୍ତ ନିଜସ୍ୱ କିଛି ଅନ୍ତରଙ୍ଗ ଅନୁଭବର ଉଷ୍ମତା । ମୁହୂର୍ତ୍ତକର ସାକ୍ଷାତ୍ ଦୁହିଁଙ୍କୁ କ୍ରମଶଃ ନିକଟରୁ ନିକଟତର କରେ । ଦୁହେଁ ବୁଝିପାରନ୍ତି ଦୁହିଁଙ୍କର ଅପରିହାର୍ଯ୍ୟତା ପରସ୍ପର ପାଇଁ । ସମୟ ଦୁହିଁଙ୍କୁ ହାତଧରି ଟାଣିନିଏ ଏକାଠି । ଆଜି ବି ସେଇକଥା କରୁଥିଲେ ଭୃଗୁ ସାମନ୍ତ । ହେଲେ ପରଦା ସେ ପାଖେ ଥାଇ ମା' ଝିଅଙ୍କ କଥା କାନରେ ପଡ଼ିଗଲା । ଫେରିଯାଉଥିଲେ, ପଶି ଆସିଲେ ପରଦା ଆଡ଼େଇ ।

ହଠାତ୍ ଡାକ୍ତରବାବୁଙ୍କୁ ଦେଖି ସଂକୁଚିତ ହେଇ ଆଡ଼େଇ ହେଇଗଲା ହେମ । ଲକ୍ଷ୍ମୀ ହସିଦେଇ ପ୍ରଣାମ କରୁ କରୁ ପ୍ରତ୍ୟୁତ୍ତର ଫେରେଇଲା, "ନା, ନା, ଆପଣ କାହିଁକି ମୋ ପାଇଁ କଷ୍ଟ କରିବେ । ମୁଁ ନିଜେ ଚାଲିଯିବି ଯେ.... ।"

"କିଛି କଷ୍ଟ ନୁହେଁ ଟିକିଏ ଲାଘବ କରିଦେବି ତୁମ କଷ୍ଟ..... ବଞ୍ଚେଇ ଦେବି ତୁମ ସମୟ ବରଂ ଏଇଟା ମୋର ପ୍ଲେଜର୍ କହି ପାର ।" ହେମ କଥା ଯୋଡ଼ିଲା, ଯାଉନୁ ମା' ଡାକ୍ତରବାବୁଙ୍କ ସହିତ ସରମାଁଙ୍କୁ ଦେଖିଆସିବୁ, କହୁଥିଲୁ ତ ଏବେ ।' ଡାକ୍ତରବାବୁଙ୍କୁ ଉଦ୍ଦେଶ୍ୟ କରି ପଚାରିଲା ହେମ । ମା' କିମିତି ଅଛନ୍ତି, କିଛି ଅସୁବିଧା ହେଉନି ତ ?

"ନା, ବର୍ତ୍ତମାନ ଯାଏ ସବୁ ଠିକ୍ ଚାଲିଛି । ଆଗକୁ କଣ ଘଟିବ କହିପାରୁନି ତେବେ ଭଲ ଅଛନ୍ତି । ଲକ୍ଷ୍ମୀକୁ ଚାହିଁ କହିଲେ ମୁଁ ତା ହେଲେ ଆସେ, କାଲି ସକାଳେ ପ୍ରସ୍ତୁତ ହେଇଥିବ, ମୁଁ କ୍ଲିନିକ ଯିବା ପୂର୍ବରୁ ଆସି ନେଇଯିବି ।" ଶୁଭସନ୍ଧ୍ୟା ଜଣେଇ ବିଦାୟ ନେଲେ ଭୃଗୁ ସାମନ୍ତ ।

କିଛି ସମୟ ପାଇଁ ଲକ୍ଷ୍ମୀ ଭିତରେ ଯୋଉ ମୃଦୁ ଉଚ୍ଚାଟନ ସୃଷ୍ଟି ହେଲା ତାହା ହେମଲତା ଆଖିରେ ନପଡ଼ିଲେ ବି, ଝିଅ ମୁହଁ ସରସତା ଦେଖି ତାକୁ ଟିକିଏ ଆଶ୍ୱସ୍ତ ଲାଗିଲା ନିଶ୍ଚୟ ।

ତା' ପରଦିନ ସକାଳେ ଭୃଗୁ ସାମନ୍ତଙ୍କ ଗାଡ଼ି ଢରାଶ୍ରମ ସାମ୍ନାରେ ଆସି ଠିଆ ହେଲା । ଲକ୍ଷ୍ମୀ ପ୍ରସ୍ତୁତ ହୋଇ ଅପେକ୍ଷା କରିଥିଲା ଗେଟ୍ ପାଖରେ । ଗାଡ଼ିରୁ ଓହ୍ଲାଇ ନିଜେ ଡୋର୍ ଖୋଲି ଦେଇ ଲକ୍ଷ୍ମୀକୁ ସ୍ୱାଗତ କଲେ ଭୃଗୁ ସାମନ୍ତ 'ଆସ' ।

ଲକ୍ଷ୍ମୀ ପାଦ ବଢ଼େଇଲା ଗାଡ଼ି ଭିତରକୁ ।

ଗାଡ଼ି ଭିତରଟା ମିଠା ମିଠା ବାସ୍ନାରେ ମହକୁ ଥିଲା । ଏଇ ତାର ପ୍ରଥମ ଗାଡ଼ିରେ ବସିବା, ପୁଣି ତାର ପ୍ରିୟ ମଣିଷ ସହିତ ନୂଆଁ ଅନୁଭବ । ସଂକୁଚିତ ଲାଗୁଥିଲା ତାକୁ ଭୃଗୁ ସାମନ୍ତଙ୍କ ପାଖରେ ବସିଲା ବେଳକୁ । ମନର ମୁକୁଳା ଆକାଶରେ, ଭାବନାର କେତେ ତାରାଫୁଲ ଚୁପ୍‌ଚାପ୍ ହୋଇ ଫୁଟିଯାଉଥିଲେ । ଅକୁହା ପୁଲକର ବଂଶୀ ବାଜି ଉଠୁଥିଲା ରହି ରହି । ଅବ୍ୟକ୍ତ ଶିହରଣ ତା' ଦେହମନକୁ ବିଭୋର କରି ତୋଳୁଥିଲା ।

ଗାଡ଼ି ଡ୍ରାଇଭ୍ କରୁ କରୁ ଭୃଗୁ ମଝିରେ ମଝିରେ ଲକ୍ଷ୍ୟ କରୁଥିଲେ ବ୍ରୀଡ଼ାବତୀ ପ୍ରିୟତମାକୁ । ମନେ ମନେ ଉପଭୋଗ କରୁଥିଲେ ସେଇ ଆନନ୍ଦମୟ ମୁହୂର୍ତ୍ତଗୁଡ଼ାକୁ ।

ସେ ଦେଖୁଥିଲେ, ଲକ୍ଷ୍ମୀ ଏକ ଦୃଷ୍ଟିରେ ଆଗକୁ ଚାହିଁଛି- ବସିଛି ଚୁପ୍‌ଚାପ୍ । ପଦୁଟିଏ ବି କହୁନି । ଲଜ୍ଜା ? ସଙ୍କୋଚ ? କେଜାଣି, ସହଜ ହୋଇପାରୁନି ହୁଏତ । ଏଇ ନୀରବତା କିନ୍ତୁ ଅସହ୍ୟ ଲାଗୁଛି - ନିଜେ ସେ ଆରମ୍ଭ କରିବେ କି କଥା ? ପ୍ରିୟତମାର କପାଳରେ ଟିପ୍ ଟିପ୍ ହୋଇ ଝାଳ ଢକେଇ ଆସୁଛି..... ଉତ୍ତେଜନାରୁ ନିଶ୍ଚୟ । ଲକ୍ଷ୍ମୀର ଝାଳମଖା ମୁହଁ ବି ଖୁବ୍ ସୁନ୍ଦର ଦିଶୁଥିଲା ତାଙ୍କୁ । ତଥାପି ଗାଡ଼ି ଭିତର ଫ୍ୟାନ୍‌ଟାକୁ ହଠାତ୍ ଅନ୍ କରିଦେଇ ଭୃଗୁ ସାମନ୍ତ କହିଲେ ଗରମ ଲାଗୁଛି ନା ଲକ୍ଷ୍ମୀ, ସହଜ ହୋଇ ବସନା ଏତେ ଷ୍ଟିଫ୍ ହେବା ଦରକାର ନାହିଁ ତ....ମୁଁ ହିଁ ଅଛି ତମ ପାଖରେ ଆଉ ତ କେହି ନାହିଁ । ଲକ୍ଷ୍ମୀ ଚାହିଁଲା ଭୀରୁ ଆନତ ଆଖିରେ.... ଡା. ସାମନ୍ତଙ୍କ ମୁହଁରେ ଟେନାଏ ହସ ଲାଗି ରହିଥିଲା । ରୋମାଣ୍ଟିକ୍ ରୋମାଣ୍ଟିକ୍ ଲାଗୁଥିଲା ସବୁ କିଛି ।

ଭୃଗୁ ସାମନ୍ତ ପଚାରିଲେ, "ଆଗ ମନ୍ଦିର ଯିବା ତ, ଆଗରେ ମନ୍ଦିର ? ମୁଣ୍ଡ ହଲେଇଲା ଲକ୍ଷ୍ମୀ 'ହଁ' । କଥା ନ କହି ବି ଅନେକ କଥା କହିଯାଉଥିଲା ସେ ଯିମିତି । ଭୃଗୁ ସାମନ୍ତ ଠିକ୍ ବୁଝିପାରୁଥିଲେ । ତମେ ମୋ ସହିତ କଥା କହିବନି ବୋଲି ରାଣ ଖାଇଛ ? -ପଚାରିଲେ । "ନା, ନା, ସେମିତି କିଛି ନୁହେଁ" ବ୍ୟସ୍ତ ହୋଇ କହି ପକେଇଲା ଲକ୍ଷ୍ମୀ- "ଠିକ୍ ଅଛି, ନ କୁହ" - ଭୃଗୁ ଗାଡ଼ିରେ ବ୍ରେକ୍ ଦେଲେ, ମନ୍ଦିର ଆସି ଯାଇଥିଲା । ଭୃଗୁ ଓହ୍ଲାଇ ଆରପାଖ ଡୋର ନିଜେ ଖୋଲିଦେଲେ । ଲକ୍ଷ୍ମୀ ଓହ୍ଲାଇ ଟିକିଏ ଠିଆହୋଇ ଚାରିଆଡ଼କୁ ଚାହିଁଲା, ଉଦ୍ଦେଶ୍ୟ, ଧୂପ ଦୀପ କିଣିନେବା ପାଇଁ । ଭୃଗୁ ବୁଝିପାରି ନିଜେ କିଣି ଆଣିଲେ ଏବଂ ଭୋଗଡାଲା ଧରି ଦୁହେଁ ମନ୍ଦିର ଭିତରକୁ ପଶିଲେ । ଲକ୍ଷ୍ମୀ ଚୁପ୍‌ଚାପ୍ କେବଳ ଭୃଗୁ ସାମନ୍ତଙ୍କୁ ଅନୁସରଣ କଲା ।

ପୂଜକ ଆସି ଭୃଗୁଙ୍କ ହାତରୁ ପୂଜାଡାଲା ନେଇଗଲା । ଦୁହେଁ ହାତଯୋଡ଼ିଲେ ନିଜ ନିଜ ମନକଥା ଜଣେଇବାକୁ । ହେଲେ ଭୃଗୁଙ୍କ ପାଇଁ ଏସବୁ ନୂଆଁ ଥିଲା । ତାଙ୍କର ମନେ ପଡୁନଥିଲା ସେ କେବେ କୌଣସି ମନ୍ଦିର ଅଥବା ଦେବଦର୍ଶନ ପାଇଁ ଯାଇଛନ୍ତି ବୋଲି । 'ଈଶ୍ୱର ବିଶ୍ୱାସକୁ ନେଇ ସେ ଅନେକଥର ବଂଧୁମାନଙ୍କ ଗହଣରେ ତର୍କ କରିଛନ୍ତି ଏ କଥା ମନେ ଅଛି । ଜୀବନର ଉଠାପକା, ରାସ୍ତାରେ ଗତି କଲାବେଳେ, ଈଶ୍ୱରଙ୍କ ଅପେକ୍ଷା ନିଜ ଉପରେ ନିଜ ଆତ୍ମବିଶ୍ୱାସ ଉପରେ ତାଙ୍କର ଢେର ବେଶୀ ଭରସା । କେବେ ହୁଏତ ସେଭଳି ପରିସ୍ଥିତି ଉପୁଜିନି, ଉପୁଜିଥିଲେ ବି, କେହି ସେଭଳି ଆତ୍ମୀୟ ତାଙ୍କୁ ଈଶ୍ୱରଙ୍କ ଦୁଆର ଆଡ଼କୁ ଆଙ୍ଗୁଠି ଦେଖେଇ ନାହାନ୍ତି ନିଶ୍ଚୟ । ଅତଏବ ସେ ନିଜେ ନିଜ ହାତଧରି ବାଟ ଚାଲିଛନ୍ତି ଏବଂ ନିଜେ ନିଜ ରାସ୍ତାରୁ କଣ୍ଟା ସଫାକରି ବାଟ ଚାଲିଆସିଛନ୍ତି ଏ ଯାଏ ।

ଆଜି କିନ୍ତୁ ଲକ୍ଷ୍ମୀ ତାଙ୍କୁ ଈଶ୍ୱରଙ୍କ ଦୁଆରେ ଆଣି ଠିଆ କରେଇଛି । ଏ ସଂପର୍କରେ କୌଣସି ପ୍ରଶ୍ନ ଉଠିନି ତାଙ୍କ ମନରେ । ସେ ନିଜ ଅଜାଣତରେ ଫୁଲ, ସିନ୍ଦୂର, ଚନ୍ଦନାଦି ଅଳଂକାରରେ ଭୂଷିତା ଏଇ (ସର୍ବଜନଙ୍କ ବିଶ୍ୱାସ) – ଶକ୍ତି ଆଗରେ ଠିଆ ହୋଇଛନ୍ତି ନିରୀହ ଶିଶୁଟିଏ ଭଳି କିଛି ମାଗିବେ ବୋଲି ।

ହେଲେ କ'ଣ ମାଗିବେ ? କେମିତି ମଗାଯାଏ ? କୌଣସି ମନ୍ତ୍ର କୌଣସି ପ୍ରାର୍ଥନା ସେ ଜାଣି ନାହାନ୍ତି । କ'ଣ ମାଗିବେ ? ନିଜ ପାଇଁ ତ ସେ ଆସିନାହାନ୍ତି – ଏଇ ମୁହୂର୍ତ୍ତରେ ଲକ୍ଷ୍ମୀର ସଫଳତା ଭିନ୍ନ ଆଉ କିଛି ତାଙ୍କର କାମ୍ୟ ନୁହେଁ, କି ହେଇ ନପାରେ ମଧ । ତେବେ ?? ଗୋଟାଏ ସ୍ଥିର ବିନ୍ଦୁରେ ପହଞ୍ଚି, ଭୃଗୁ ଆଖିବୁଜି ହାତ ଯୋଡ଼ି ମାଗିବାକୁ ଯାଉଛନ୍ତି, ହଠାତ୍ ଭାବନା ତାଙ୍କର ହାତଧରି ବାଟ ଓଗାଳିଲା । ଆଉ ଲକ୍ଷ୍ମୀ ? ? ଲକ୍ଷ୍ମୀ ତମର କାମ୍ୟ ନୁହେଁ ?? ଚମକି ପଡ଼ିଲେ ଭୃଗୁ, ସତେତ, ଲକ୍ଷ୍ମୀ ହିଁ ତାଙ୍କର କାମ୍ୟ । ସେ ଯାହା ହେଇଥାଉ, ଯେମିତି ହେଇଥାଉ । ମନ, ପ୍ରାଣ, ହୃଦୟ ଦେଇ ସେ ଲକ୍ଷ୍ମୀକୁ ହିଁ ଚାହାଁନ୍ତି – ସେଇ ତାଙ୍କର ପ୍ରିୟ ଆପଣାର ଆଜି ତାଙ୍କର ଆଉ କିଛି କାମନା ନାହିଁ । ବାସ୍ । ଲକ୍ଷ୍ମୀକୁ ହିଁ ଦିଅ ଏବଂ ତା'ର ସମସ୍ତ ଅଭିଳାଷକୁ ପୂର୍ଣ୍ଣକର ମାଁ – ଭୃଗୁ ଆଖିବୁଜିଲେ ଧ୍ୟାନସ୍ଥ ହେବା ପାଇଁ ।

ହଠାତ୍ ପୂଜକଙ୍କ ଡାକରେ ତାଙ୍କର ଧ୍ୟାନ ଭାଙ୍ଗିଲା । ପୂଜା ଡାଲା ଲକ୍ଷ୍ମୀ ହାତକୁ ବଢ଼େଇ ଦେଇ, ପୂଜକ କହିଲେ ସୀମନ୍ତ କାହିଁକି ଖାଲି ରଖିଛୁ ମାଁ, ସଧବାର ସୀମନ୍ତ କେବେ ଖାଲି ରହେନି, କହୁ କହୁ ନିଜେ ଭୃଗୁଙ୍କ ହାତକୁ ସିନ୍ଦୂର ବଢ଼େଇ କହିଲେ, ପିନ୍ଧେଇ ଦିଅନ୍ତୁ ମା'ଙ୍କୁ..... ଇଏ ମା'ଙ୍କ ଆଶୀର୍ବାଦ । ଭୃଗୁ ହାତ ବଢ଼େଇବା ପୂର୍ବରୁ ନିଜେ ଲକ୍ଷ୍ମୀ ସିନ୍ଦୂର ନେଇ ମୁଣ୍ଡରେ ମାରିଲା ଓ ପ୍ରଣାମ କଲା । 'ଦୁହେଁ ସୁଖୀ ହୁଅ' – କଲ୍ୟାଣ କଲେ ପୂଜକ । ଭୃଗୁ ଚାହିଁଥିଲେ ପ୍ରତ୍ୟୁତ୍ପନ୍ନମତି, ଲଜ୍ଜାବତୀ ପ୍ରିୟତମାର ରକ୍ତିମ

ମୁଖମଣ୍ଡଳକୁ । ଚାହିଁପାରୁନି ଆଖିକୁ ଆଖି ମିଶେଇ । ଅପ୍ରସ୍ତୁତ ହେଇଯାଉଛି । ଭୃଗୁଙ୍କୁ କୌତୁକ ଲାଗୁଥିଲା ଦେଖିଲା ବେଳକୁ । ମନେମନେ ଉଲ୍ଲସିତ ହେଉଥିଲେ ସେ । ଭାବିଲେ, ସେ ସତରେ ଭାଗ୍ୟବାନ । ଲକ୍ଷ୍ମୀ ଭଳି ସୁଶୀଳା, ବୁଦ୍ଧିମତୀ, ଝିଅକୁ ଆପଣାର କରି ପାଇଛନ୍ତି । ସେ ସୁଖୀ । ତା' ଭଳି ଜୀବନ ସାଥୀ ପାଇ ଈଶ୍ୱରଙ୍କୁ କିଛି ନ ମାଗୁଣୁ, ସେ ତାଙ୍କ ଅଭିଳାଷ ପୂର୍ଣ୍ଣ କରିଛନ୍ତି । ପ୍ରଣାମ ଜଣେଇଲେ ଦୁହେଁ ମାଁଙ୍କୁ ।

ଆଶ୍ରମକୁ ଫେରିଲାବେଳେ ଖୁବ୍ ଖୁସିଥିଲା ଲକ୍ଷ୍ମୀ । ହେମଲତା ଲକ୍ଷ୍ୟ କରିଥିଲା । ତାକୁ ଆଶ୍ୱସ୍ତ ଲାଗିଲା, ଯାହାହେଉ ଝିଅର ଚିନ୍ତା ଦୂର ହେଇଛି । ଗୁରୁଜନଙ୍କ କଲ୍ୟାଣ ଏବଂ ଦେବଦେବୀଙ୍କ ଆଶୀର୍ବାଦର ପ୍ରଭାବ ଅଛି ନିଶ୍ଚୟ । ସଭିଙ୍କ କଲ୍ୟାଣ ତା'ର ଆତ୍ମବିଶ୍ୱାସକୁ ଟାଣ କରିବ । ଏଣିକି ଈଶ୍ୱରଙ୍କ ଇଚ୍ଛା । ମଣିଷର ହାତକଥା କିଛି ନୁହେଁ କେବଳ କର୍ତ୍ତବ୍ୟ କରିଯିବା କଥା ।

ଲୁଗାପଟା ବଦଳେଇ ଲକ୍ଷ୍ମୀ ଖାଇବାକୁ ଆସିଲା- ମନେମନେ ଚିହ୍ନାଗୀତର ସ୍ୱରଟିଏ ଗୁଣୁଗୁଣାଉ ଥିଲା ଖୁସିରେ । ଖାଇବାକୁ ବାଢୁ ବାଢୁ ହେମଲତା ଝିଅକୁ ପଚାରିଲା, ସରମା କିମିତି ଅଛନ୍ତି ଝିଅ, ଚଳିବାରେ କିଛି ଅସୁବିଧା ହେଉନି ତ ?

"ଅସୁବିଧା କାହିଁକି ହେବ ବୋଉ, ପାଖରେ ଡାକ୍ତର । ବିଜୁ ତ ଆଖିରେ ଆଖିରେ ରଖିଛି ତାଙ୍କୁ । ନିଜେ ଯେହେତୁ ମେଣ୍ଟାଲ୍ ହସ୍‌ପିଟାଲ୍‌ରେ ଥିଲା, ସେଇ ପ୍ରକାର ରୋଗୀମାନଙ୍କ ସହିତ କିଭଳି ବ୍ୟବହାର କରିବାକୁ ହୁଏ, ତାର ଅଭିଜ୍ଞତା ଅଛି ତା'ପାଖରେ । ପୁଣି ସୁଲତା ମାଉସୀ ବି ଯାଉଛି ପ୍ରାୟ । ସେ ଖୁସି ଅଛନ୍ତି ଘରେ ଅଛନ୍ତି ବୋଲି ମୋତେ ଦେଖି ଖୁସି ହେଇଗଲେ । ହାତଧରି ଅନେକ ସମୟ ଅଟକେଇ ରଖିଲେ । ବିଜୁକୁ ବରାଦ ଦେଲେ ଝିଅକୁ ମୋର ଖାଇବାକୁ ବାଢ଼ । ଡା. ସାମନ୍ତ ହିଁ ବୁଝେଇଲେ, ସେ ପରା ପରୀକ୍ଷା ଦେବାକୁ ଯିବ ବୋଲି, ତମକୁ ଆଶୀର୍ବାଦ ମାଗିବାକୁ ଆସିଛି, ତମ ଆଶୀର୍ବାଦ ନେଲେ, ସେ ଯିବ ପରୀକ୍ଷାକୁ । କଲ୍ୟାଣ କର ତମେ ତାକୁ । ପରୀକ୍ଷା ସରିଲେ ଆସିବ । ବୁଝିଗଲେ ସତ ହେଲେ ପଛ କଥା ଏବେବି ମନେ ପକେଇ ପାରୁନାହାନ୍ତି । ତୋ କଥା ବି ପଚାରିଲେ, ମୋତେ ଛାଡ଼ିବାକୁ ତାଙ୍କର ମୋଟେ ଇଚ୍ଛା ନଥିଲା ।

"ଆଉ ଅଭୟା ମା', ଅନେକ ଦିନ ହେଲା, ସେ କାହିଁକି ଆମ ଆଶ୍ରମ ଆଡ଼େ ଆସି ନାହାନ୍ତି । ରାଘବବାବୁ ଯଦିଓ ନିତି ଆସନ୍ତି ତାଙ୍କୁ ସିଧାସଳଖ କିଛି ପଚାରିବାକୁ ମୋତେ ସଂକୋଚ ଲାଗେ । ମା'ଙ୍କ ଦେହ ଭଲ ଅଛି ତ ?"

ଲକ୍ଷ୍ମୀ ମୁହଁ ହଠାତ୍ କାହିଁକି ମଉଳିଗଲା । କହିଲା, କ'ଣ କିମିତି କରି ତୋତେ ବୁଝେଇବି ବୋଉ, ଆଗରୁ ଯିମିତି ମା'ଙ୍କର ଖୋଲାମେଲା ବ୍ୟବହାର ଥିଲା, ସେଭଳି

କାହିଁକି ଆଜି ଦେଖିପାରିଲିନି । ମୋତେ ଦେଖିଲେ ତାଙ୍କ ପାଦ ତଳେ ଲାଗେନି । ମୁଁ କ'ଣ ଖାଇବି, ସେ କ'ଣ ଖୁଆଇବେ ବୋଲି ବ୍ୟସ୍ତ ହେଇ ପଡ଼ନ୍ତି । ସାର୍‌ଙ୍କୁ ହଜାରେ ବରାଦ କରିଥାନ୍ତି ଅଥଚ ଆଜି ବଡ଼ ଶିଥିଳ ମନେ ହେଲା – ଖାଇବାକୁ କହିଲେ ସତ କିନ୍ତୁ ମୁଁ ଜାଣିପାରିଲି, ସେମିତି କିଛି ସ୍ପୃହା ନ ଥିଲା ତାଙ୍କର । କିମିତି କାନ୍ଦୁଣୁ ମାନ୍ଦୁଣୁ ଜଣା ପଡୁଥିଲେ । ମନରେ ସୁଖ ନାହିଁ ନିଶ୍ଚୟ ।

ମୁଁ ଜାଣିବାକୁ ଚାହିଁଲି, ଆର୍ଯ୍ୟଭାଇଙ୍କ କଥା ବି ପଚାରିଲି ସେ କଥା ବୁଲେଇଦେଇ ମୋ ପଢ଼ା ପ୍ରସ୍ତୁତି କଥା ପଚାରିଲେ । ସିଧା ଉତ୍ତର ନ ଦେଇ କହିଲେ, ପିଲାଏ ବଡ ହେଲେ, ସ୍ୱାଧୀନ ହେଲେ, ବାପା ମାଁ ଆଉ ମନେ ପଡ଼ନ୍ତିନି – ନିଜ ଚାକିରି ନିଜ ଜୀବନ କଥା ଭାବୁ ଭାବୁ ତାଙ୍କୁ ବେଳ ହୁଏନି । ସବୁବେଳେ ତ ସେ କାମରେ ବ୍ୟସ୍ତ । ଫୋନ୍‌ଟିଏ ବି କରେନି । ପରୀକ୍ଷା ତ ସରିଛି । ଏବେ କୁଆଡ଼େ ନୂଆ ଚାକିରିରେ ଯୋଗ ଦେବ । ତା' ବାପାଙ୍କ ପାଖକୁ କିଛିଦିନ ତଳେ ଫୋନ୍ କରିଥିଲା ।

ମୁଁ ଆଉ ବେଶି କିଛି ପଚାରି ତାଙ୍କୁ ଅପ୍ରସ୍ତୁତ କରିବାକୁ ଚାହିଁଲିନି । ପ୍ରଣାମ କରି ଚାଲି ଆସିଲି । ତେବେ ମୋତେ ଲାଗିଲା, କିଛି ଗୋଟାଏ ହେଇଛି, ସେ ମୋତେ ଲୁଚେଇଲେ ।

ଲକ୍ଷ୍ମୀ ଖାଇସାରି ଉଠିଲା ମୁହଁ ହାତ ଧୋଇବାକୁ । ହାତ ଧୋଉ ଧୋଉ କହିଲା, "ମୋ' ପରୀକ୍ଷା ସରୁ, ତାଙ୍କ କଥା ବୁଝିବି । ମୋତେ ସେ ନ କହି ରହି ପାରିବେନି ।"

ହେମଲତା ନିଜ ଭିତରେ କାଠ ହେଇଯାଇଥିଲା । କେତେ ପ୍ରକାର ଭାବନାର ଜାଲ ବୁଣିଯାଉଥିଲା ମନ ଭିତରେ । ବୋଉ ପଣତରେ ମୁହଁ ପୋଛି ଲକ୍ଷ୍ମୀ ଚାଲିଲା ନିଜ ପଢ଼ାଘରକୁ – ଛାଡ଼ିଥିବା ଗୀତର ସ୍ୱରକୁ ଗୁଣୁଗୁଣେଇ । ସତରେ ତାକୁ ଆଜି ଖୁବ୍ ହାଲୁକା ଲାଗୁଥିଲା ।

ଶେଷରେ,

ସେଇ ଈପ୍‌ସିତ ସମୟ ଆସିଲା । କାଲି ସକାଳୁ ଲକ୍ଷ୍ମୀ ଦିଲ୍ଲୀ ପାଇଁ ଟ୍ରେନ୍ ଧରିବ । ହାତରେ ଆଉ ଚାରିଦିନ, ତା'ର ପରୀକ୍ଷା ଆରମ୍ଭ ହେବାକୁ ସେଥିପାଇଁ ତାର ସମସ୍ତ ଶୁଭଚିନ୍ତକ ଓ ପ୍ରିୟଜନ ଭିତରେ ସାଧାରଣ ଭାବେ କିଛିଟା ଉଦ୍‌ବେଗ ସୃଷ୍ଟି ହେବା ସ୍ୱାଭାବିକ ଥିଲା । ସେମାନଙ୍କର ଅନେକ ଆଶା ଆଉ ସ୍ୱପ୍ନ ହେଲା 'ଲକ୍ଷ୍ମୀର ସଫଳତା' । ସତେ ଯେମିତି ଲକ୍ଷ୍ମୀର ସଫଳତା ଏ ସମସ୍ତଙ୍କ ପାଇଁ ଗୋଟାଏ ଆହ୍ୱାନ । ସମସ୍ତେ ତା'ର ଶୁଭକାମନା କରିଥିଲେ ନିଜନିଜ ବାଗରେ । ହେଲେ ସବୁଠାରୁ ଆଶ୍ଚର୍ଯ୍ୟ କଥା ଥିଲା, ମନସ୍ତତ୍ତ୍ୱବିତ୍ ଡା. ଭୃଗୁ ସାମନ୍ତଙ୍କ ଆଖିରେ ନିଦ ନଥିଲା । ସେ ଅସ୍ଥିରତା ଅନୁଭବ କରୁଥିଲେ ନିଜ ଭିତରେ । ସେ ଏତେ ଚାପ ଅନୁଭବ କରୁଥିଲେ ଯେ, ନିଜେ ପରୀକ୍ଷାର୍ଥୀ

ଲକ୍ଷ୍ମୀ ବି ସେତିକି ଟେନ୍‌ସନ୍ ଅନୁଭବ କରୁନଥିବ । ଏ କିମିତି କଥା ? ନିଜକୁ ନିଜେ ପ୍ରଶ୍ନ କରୁଥିଲେ ଭୃଗୁ । ଅବଶ୍ୟ ଉତ୍ତର ବି ତାଙ୍କ ପାଖରେ ଥିଲା 'ଲକ୍ଷ୍ମୀ' ।

ଲକ୍ଷ୍ମୀ ତାଙ୍କର ମନର ପ୍ରତିମା । ତାଙ୍କ ଚିନ୍ତା ଚେତନା, ମନପ୍ରାଣ ହୃଦୟକୁ ସେ ସଂପୂର୍ଣ୍ଣ ଭାବେ ଆବୋରି ରଖିଛି । ଏମିତିକି ଅବଚେତନରେ ବି ତାରି ଛବି - ସେ ଅଛି ମନର ପ୍ରତିମା ହୋଇ ।

ଭୃଗୁ ନିଜକୁ ତର୍ଜମା କରିବାକୁ ଯାଇ ଭାବିଲେ, ଆଜି ସେ କେବଳ ଜଣେ ଡାକ୍ତର କି ଶିକ୍ଷକ ନୁହଁନ୍ତି - ଜଣେ ପ୍ରେମିକ ମଧ୍ୟ । ତାଙ୍କର ଜଣେ ପ୍ରେମିକା ଅଛି । ଯିଏ ତାଙ୍କୁ ମନପ୍ରାଣ ଦେଇ ଭଲ ପାଏ । ଯିଏ ତାଙ୍କ ପାଇଁ ତା' ଜୀବନର ସମସ୍ତ ତପସ୍ୟାକୁ ଉତ୍ସର୍ଗ କରିଦେଇପାରେ । କରିଦେଇପାରେ କାହିଁକି, କରିଦେବ ତ... ସେ ଜାଣନ୍ତି । ଲକ୍ଷ୍ମୀକୁ ବାଦ୍ ଦେଇତ ସେ କିଛି ବି ଭାବିପାରିବେନି, ତାଙ୍କୁ ଶୂନ୍ୟ ଶୂନ୍ୟ ଲାଗିବ । ଭୃଗୁ ଭାବିଲେ ସେ ଲକ୍ଷ୍ମୀଠାରୁ ଭିନ୍ନ ନୁହଁନ୍ତି ସେ ଆଉ ଲକ୍ଷ୍ମୀ ଏକ । ଅଥଚ ତାର ସଂକଷ୍ଟ ଅଭିଳାଷ, ସଫଳତା ବିଫଳତା ହର୍ଷ, ଉଲ୍ଲାସ ଗୌରବ, ନିନ୍ଦା, ଅପମାନ ଅଭାବ ଅସୁବିଧା ଯାହାକିଛି ସମଭାବରେ ତାଙ୍କୁ ପ୍ରଭାବିତ କରୁଛି ଓ କରିବ ମଧ୍ୟ । ଦୁହେଁ ଦୁହିଁଙ୍କ ପାଇଁ ସମାନ ଭାବରେ ଭାଗୀଦାର । ସେଥିପାଇଁ ସେ ଏତେଟା ବିଚଳିତ ହେବା କଥା ନୁହେଁ - ଏକଥା ଆଜି, ଏଇ ମୁହୂର୍ତ୍ତରେ ସେ ଅନୁଭବ କରୁଛନ୍ତି ବୋଲି ବୁଝି ପାରୁଛନ୍ତି । ଏହା କେବଳ ପଢ଼ାବହିର କଥା ନୁହେଁ - ନିଜ କଥା, ନିଜ ଅନୁଭବ । ଆଗରୁ ସେ ଏତେଟା ବିଚଳନ କେବେ ହୋଇ ନଥିଲେ ବି । କେବଳ ପଢ଼ିଥିଲେ, ପଢ଼ାଉଥିଲେ, ଚିକିତ୍ସା କରୁଥିଲେ ଓ କାଉନ୍‌ସେଲିଂ କରୁଥିଲେ ବହି ଅନୁସାରେ, ଥିଓରିଟିକାଲି ।

ଆଜି କିନ୍ତୁ ସେ ଭୁକ୍ତଭୋଗୀ ।

ଏଥର ସେ ନିଜକୁ ନିଜେ ଆଶ୍ୱାସନା ଦେଲେ ଏବଂ ନିଜକୁ ସ୍ୱାଭାବିକ ସ୍ଥିତିକୁ ଆଣିବା ପାଇଁ ଟେବୁଲ୍ ପାଖରୁ ଉଠିଲେ ଆଲ୍‌ମାରିରୁ ବହି ଖଣ୍ଡେ ଆଣି ପଢ଼ିବେ ବୋଲି । ନିଜ ମନକୁ, ଚିନ୍ତାକୁ ଏକାଗ୍ର କରିବା ପାଇଁ ସେ ପୁସ୍ତକର ଆଶ୍ରୟ ନିଅନ୍ତି - ଏଇଟା ତାଙ୍କର ପିଲାଦିନରୁ ଅଭ୍ୟାସ । ବହି ଥାକ ଭିତରେ ନିତ୍‌ସେଙ୍କର 'ଦି ୱିଲ୍ ଟୁ ପାୱାର୍' ପୁସ୍ତକଟି ମୁହଁ ଦେଖେଇଛି - ତାକୁ ହିଁ ସେ ଟାଣି ଆଣିଲେ ।

ସକାଳ ହେଉ । ଠିକ୍ ସମୟରେ ସେ ଆଶ୍ରମରେ ପହଞ୍ଚିବେ ଓ ଲକ୍ଷ୍ମୀକୁ ନେଇ ଦିଲ୍ଲୀ ଯିବେ ବୋଲି କଥା ଦେଇଛନ୍ତି ରାଘବବାବୁଙ୍କୁ । ସେ ବି ଅନୁରୋଧ କରିଛନ୍ତି ନିଜ ଆଡ଼ୁ, ଲକ୍ଷ୍ମୀର ଏଇ ଦାୟିତ୍ୱ ନେବା ପାଇଁ । ତା'ର ରହିବା ବ୍ୟବସ୍ଥା କରି ସେ ଫେରିଆସିବେ । ଭୃଗୁ ବହି ଖଣ୍ଡିକ ଧରି ବିଛଣାକୁ ଯିବା ପୂର୍ବରୁ ଭାବିଲେ - ଆସନ୍ତାକାଲିର ସୂର୍ଯ୍ୟୋଦୟ ତାଙ୍କ ଲକ୍ଷ୍ମୀ ପାଇଁ ସମସ୍ତ ସଫଳତା ଆଣିଦେଉ ଏବଂ ତା'ର ଆକାଶ

ଛୁଇଁବାର ସଂକଳ୍ପ ଫଳବତୀ ହେଉ ଏହା ହିଁ ତାଙ୍କର କାମନା । ଏହା ସହିତ ଆଉ ଗୋଟିଏ ଦାୟିତ୍ୱ ବି ଅଛି ତାଙ୍କର । ସକାଳୁ ରାଘବବାବୁଙ୍କ ସହିତ ସରମାଁଙ୍କୁ ବୁଝେଇ ବାଝେଇ ଆଶ୍ରମରେ ଛାଡ଼ି ଆସିବାକୁ ହେବ ।

ଅତଏବ ତାଙ୍କ ଆଖିକୁ ନିଦ ନାହିଁ ଏ ପର୍ଯ୍ୟନ୍ତ । ବିଜୁ ଅନେକ ଥର କହିଗଲାଣି, ବିଶ୍ରାମ ନେବାକୁ । ହେଲେ ସେ କ'ଣ କରିପାରିବେ । ନିଜ ଭିତରେ ସୃଷ୍ଟି ହେଉଥିବା ଏଇ ଉତ୍ତେଜନାକୁ ଶାନ୍ତ କରିବାକୁ ବହିର ପୃଷ୍ଠା ଓଲଟାଇଲେ ପଢୁ ପଢୁ ହୁଏତ ନିଦ ଆସିଯିବ ।

ବାପାଙ୍କୁ ପ୍ରଣାମ କରି ଆଶ୍ରମର ଗୁରୁଜନଙ୍କଠାରୁ ଶୁଭାଶିଷ ନେଇ ଲକ୍ଷ୍ମୀ ତାର ଯାତ୍ରାର ଶୁଭାରମ୍ଭ କଲା । ଏଇଟା ବି ଥିଲା ତା ଜୀବନଯାତ୍ରାର ଆଉ ଏକ ନୂଆ ମୋଡ଼ । ଆଗରେ ତାର ଲକ୍ଷ୍ୟ ଆକାଶ ତାର ସୀମା, ମନରେ ଅଖଣ୍ଡ ସଂକଳ୍ପ, ପଛରେ ସଭିଙ୍କର ଶୁଭକାମନା ସହ ଲକ୍ଷ୍ମୀ ଟ୍ୟାକ୍ସିରେ ପାଦ ରଖିଲା । ଭାଗ୍ୟ ଆଗକୁ ଆଗକୁ ଧାଉଁଥିଲା ନିର୍ଦ୍ଦିଷ୍ଟ ସମୟରେ ରାଘବବାବୁ ଡା. ସାମନ୍ତଙ୍କ ସହିତ ଲକ୍ଷ୍ମୀକୁ ନେଇଁ ଷ୍ଟେସନ୍‌ରେ ପହଞ୍ଚିଲେ । ସାଂଗରେ ହେମଲତା, ସ୍ୱର୍ଣ୍ଣଲତା, ରାଜୁ ପରିଡ଼ା, ଶିବ ସା'ନ୍ତରାଙ୍କ ସହ ଅଲେଖ ଓ ସୁକାନ୍ତ ମଧ ଗଲେ ଲକ୍ଷ୍ମୀକୁ ବିଦାୟ ଜଣେଇବାକୁ । ଶାରୀରିକ ଅସୁସ୍ଥତା ପାଇଁ ଅଭୟା ଯାଇପାରିନଥିଲେ ଷ୍ଟେସନ୍ ପର୍ଯ୍ୟନ୍ତ । ରାଘବ ସାର୍‌ଙ୍କୁ ପ୍ରଣାମ କଲା । ତା ମୁଣ୍ଡ ଉପରେ ହାତ ରଖି ରାଘବବାବୁ ଶୁଭ କାମନା କଲେ । ତା' ସତ୍ତ୍ୱେ ଲକ୍ଷ୍ମୀ ରଘୁରାଜ ମଉସାଙ୍କୁ ଖୁବ୍ ମନେପକେଇଥିଲା । ତାଙ୍କରି ପ୍ରେରଣାରେ ହିଁ ସେ ସର୍ବଭାରତୀୟ ପ୍ରଶାସନିକ ସେବା ପାଇଁ ନିଜକୁ ପ୍ରସ୍ତୁତ କରିଥିଲା । ପ୍ରିଲିମିନାରୀ ପରୀକ୍ଷା ଦେବା ବେଳକୁ ସେ ବଞ୍ଚିଥିଲେ । ଖୁବ୍ ଖୁସି ହେଉଥିଲେ ତାର ସଫଳତାରେ । ଆଜି ସେ ମୁଖ୍ୟ ପରୀକ୍ଷାରେ ବସିବାକୁ ଯାଉଛି । ସେ ନାହାଁନ୍ତି ସତ ତା' ମୁଣ୍ଡ ଉପରେ ହାତ ରଖିବାକୁ । ତଥାପି ସେ ଯୋଉଠି ଥିଲେ ବି ଆଶୀର୍ବାଦ କରିବେ ସେ ଜାଣେ । ମନେ ମନେ ପ୍ରଣାମ କଲା । ଏବଂ କେଶବା ଦୁଇ ହାତ ଭରି ଅନ୍ତରର ଶୁଭାଶିଷ ନିଗାଡ଼ି ଦେଇ ଠାକୁରଙ୍କୁ ଜଣେଇଲା- ଠାକୁରେ, ତା' ବାଟକୁ ଫୁଲ ଚନ୍ଦନରେ ଭରିଦିଅ ।

ଠିକ୍ ସମୟରେ ଟ୍ରେନ୍ ଛାଡ଼ିଲା । ଲକ୍ଷ୍ମୀ ଚାହିଁଥିଲା ଝରକା ବାଟେ । ମନେ ମନେ ଭାବୁଥିଲା, ସତରେ କେଡ଼େ ଭାଗ୍ୟବାନ୍ ସିଏ । କେତେ ମଣିଷଙ୍କ ସ୍ନେହ ଶ୍ରଦ୍ଧାରେ ତା'ର ଏଇ ଜୀବନ ପରିପୂର୍ଣ୍ଣ ହେବାକୁ ଯାଉଛି । ଇଏତ ତା' ଜୀବନର ଶ୍ରେଷ୍ଠ ତପସ୍ୟା । ତା'ର ଆଉ କ'ଣ ଅଭାବ ଯେ! କୃତଜ୍ଞତାରେ ମୁଣ୍ଡ ତା'ର ନଇଁ ଯାଉଥିଲା ।

ହେମ ଝିଅକୁ ବିଦା କରି ଆଶ୍ରମକୁ ଫେରିଲା ବେଳକୁ ଉଦାସ ଦିଶୁଥିଲା । କେଶବା ପାଖରେ ବସି ବୁହେ କାନ୍ଦି ପକେଇଲା । ଖୁସିରେ ତା' ଆଖି ଲୁହ ମନା ମାନୁନଥିଲା ।

କେଶବା ତାକୁ ଆଶ୍ୱାସିବାକୁ ଯାଇ କହିଲା, କାହିଁକି ଲୁହ ଝରଉଛୁ ହେମ-ମନେ ପକେଇଲୁ ତା' ଜନମ ବେଳର କଥା । ତାକୁ ଦେଖି ସେତେବେଳେ କ'ଣ କହିଥିଲେ ସମସ୍ତେ- "ଏ ଝିଅ ତୋର ଲକ୍ଷ୍ମୀ ପ୍ରତିମା, ତୋତେ ଶ୍ରୀସଂପଦ ଆଣିଦେବ । ତୋ' ଭାଗ୍ୟ ଝଟକିବ, ଦେଖୁନୁ ତା ବାଁ ପଟ ଗାଲର ଏଇ କଳାଜାଈ..." । ମନେପଡ଼ୁଛି ହେମ, ଝିଅଟିଏ ବୋଲି ଦୁଃଖ କରନା', ମନେ ପଡ଼ୁଛି ?

ହେମ ତା' ପାଟିରେ ହାତ ଦେଇ କହିଲା, "କୁହନି, କୁହନି ତ ସେ କଥା, ଲୋଭ କରନି, ମୁଁ ତ ହତଭାଗୀ, ଠାକୁରେ ଦୟା କଲେ ଜଗତକୁ ସେ ଆଲୁଅ ଦେଖେଇବ, ମୁଁ ଆଉ କିଛି ଅଧିକା ଚାହୁଁନି ଆମ ପାଇଁ । ସେ ସୁଖରେ ଥାଉ । ତା' ପାଦରେ କଣ୍ଟା ନ ବାଜୁ ।"

ନୂଆ ଚାକିରିରେ ଯୋଗଦେବା ପୂର୍ବରୁ ଆର୍ଯ୍ୟ ବାପା-ବୋଉଙ୍କୁ ଜଣେଇ, ସେମାନଙ୍କଠୁ ଆଶିଷ ଭିକ୍ଷା କରିଥିଲା ଏବଂ ଆରମ୍ଭ କରିଥିଲା ତା'ର କର୍ମ ଜୀବନ । ଏ ଭିତରେ ଚାରିମାସ ଗତ ହେଇଗଲାଣି ହେଲେ ଏ ଯାଏ ସେ ଦିନକ ପାଇଁ ବି ଘରକୁ ଯାଇପାରିନି । ସେଥିପାଇଁ ବୋଉ ମନ ଭାରି ଦୁଃଖ - ଅଭିମାନରେ ସେ କେତେଥର ଫୋନ୍ କଲାଣି - "ବଡ଼ ହେଲୁ, ରୋଜଗାରକ୍ଷମ ହେଲୁ, ସ୍ୱାଧୀନ ଭାବେ ତ ରହି ଶିଖିଲୁ; ବାପା ବୋଉ ଆଉ କାହିଁକି ମନେ ପଡ଼ିବେ । ତୁ ସିନା ଭୁଲିଗଲୁଣି, ଆମର ଯେ ଦାୟିତ୍ୱ ସରିନି - ଦିନ ଦି'ଟା ଛୁଟି ନେଇ ଆସିପାରୁନୁ..." ।

ସେ ଠିକ୍ ବୁଝିପାରୁଛି ବୋଉର ବ୍ୟଞ୍ଜନା । ସେ କିନ୍ତୁ ତା' କଥାକୁ ଆଡ଼େଇ ଯାଉଛି । ଛୁଟି ମିଳିନି, ସମୟର ଅଭାବ, ନୂଆ ଚାକିରିର ବାହାନା କରି । ନହେଲେ ବାପାବୋଉଙ୍କୁ କିଏ କେବେ ଭୁଲେ ? ହେଲେ ସେ କିମିତି କ'ଣ କରିବ ଯେ ? ? ନିଜେ ତିଆରି କରିଥିବା ସମସ୍ୟାର ଜାଲ ଭିତରେ ସେ ଛନ୍ଦି ହୋଇ ଯାଇଛି । ମୁକୁଳିବାର ବାଟ ଖୋଜି ପାଉନି । ଏଣେ ସତ କହିବାର ସାହସ ସେ ଜୁଟେଇ ପାରୁନି ନିଜ ଭିତରେ । ଅଥଚ ପିଲାଦିନ ଯାକ ଏଇ ସତ କହି ଶିଖିବା ପାଇଁ ବାପାଙ୍କଠୁ କେତେ ମାଡ଼ ଖାଇଛି । ତଥାପି ହେଲାନି ଏଇ ବିଗତ ତିନିବର୍ଷ ଭିତରେ ଦିନେ ତାର ସାହସ ହେଲାନି । ବୋଉକୁ ଅନ୍ତତଃ ସତ କହିଦେବ ଯେ, ସେ "ପୁଲୋମାକୁ ଭଲପାଏ, ପ୍ରେମ କରେ, ତାକୁ ଜୀବନସାଥୀ କରିବାକୁ ଚାହେଁ" - ନା କହିପାରିଲା ନାହିଁ । କେବଳ ଠିକ୍ ସମୟ ଆସୁ କହିବି ବୋଲି କାଳକ୍ଷେପଣ କଲା ।" ଆଉ କେତେବେଳେ ଠିକ୍ ସମୟ ଆସିବ ଯେ ?

ପ୍ରଶ୍ନ କରେ ପୁଲୋମା ।

"ଏତେ ତରତର କାହିଁକି, ସମୟ ସୁବିଧା ଦେଖି କହିବିନି । ତରବର ହେଲେ ସବୁ ବିଗିଡ଼ିଯିବ ଯେ" - ପୁଲୋମାକୁ ବୁଝେଇ ଦିଏ ।

ହେଲେ ଏବେ ତ ସମୟ ଆସି ସାମ୍ନାରେ ଠିଆ ହୋଇଛି ପୁଲୋମାର ପରିବାର ବି ଝିଅର ବିବାହ ପାଇଁ ବ୍ୟସ୍ତ ହେଲେଣି । ତାକୁ ତ କିଛି ଗୋଟାଏ ନିଷ୍ପତ୍ତି ନେବାକୁ ହିଁ ହେବ । ବଂଧୁ ସୁଶୋଭନ ଠିକ୍ କହିଛି । "ଆଉ ବାହାନା ଚଳିବନି ଭାଇ, ସମୟ ଅନେକ ନେଲୁଣି । ମନେରଖ ଜୀବନଟା ବାହାନା ନୁହେଁ କି ପ୍ରେମ ମଧ ବାହାନା ନୁହେଁ । ତାକୁ ବାସ୍ତବ ରୂପ ଦେବାକୁ ହେଲେ ଦୁଇ ପରିବାର ଭିତରେ ବୁଝାମଣା କରିବାକୁ ପଡ଼ିବ ତୋତେ । କାରଣ ବିବାହ ଗୋଟିଏ ସାମାଜିକ ଅଙ୍ଗୀକାର । ତା' ସ୍ୱୀକୃତି ବିନା ତୋ ପାରିବାରିକ ଜୀବନ ସୁଖମୟ ହେଇପାରିବନି । ବହୁ ପ୍ରତିବନ୍ଧକ ଆସିବ । କାରଣ ପୁଲୋମା ୟୁ.ପି. ଝିଅ । ତାକୁ ଗ୍ରହଣ କରିବା ତୋ ବାପାବୋଉଙ୍କ ପାଇଁ ଟିକିଏ କଷ୍ଟକର ନିଶ୍ଚୟ ।"

ଟିକିଏ କଷ୍ଟକର ନୁହେଁ, ବୋଉ ତ ମୋଟେ ରାଜି ହେବନି, ସେ ଜାଣେ । ସେଇଥିପାଇଁ ତ ସେ ଲକ୍ଷ୍ମୀ କଥା ବାରମ୍ବାର କହୁଛି, ପୁଲୋମା ବି ବ୍ୟସ୍ତ ହେଲାଣି । ସେମାନଙ୍କ ଘରେ ବି ଏ ବିବାହକୁ ସ୍ୱୀକାର କରିବେନି । ସେମାନଙ୍କର ପୁଣି ଯୌଥ ପରିବାର । ଅନେକ ଆଡୁ ପ୍ରତିବନ୍ଧକ ଆସିବ । ପରିସ୍ଥିତି ଆହୁରି ଜଟିଳ ହୋଇପଡ଼ିପାରେ ।

ସୁଶୋଭନ ସେଦିନ ଆଉ ଗୋଟାଏ ବାଟ ଦେଖେଇଲା- କହିଲା "ପରିସ୍ଥିତିକୁ ଯଦି ସମ୍ଭାଳି ନ ପାରିବ ତା'ହେଲେ କୋର୍ଟ୍ ମ୍ୟାରେଜ୍ କରିନିଅ । ତୁମେ ଦୁହେଁ ଏଥିପାଇଁ ଯୋଗ୍ୟ, ସମର୍ଥ ମଧ । ଅବଶ୍ୟ ଏକୁଟିଆ, ପରିବାରର ବିନା ସମର୍ଥନ ଆଉ ଆଶୀର୍ବାଦରେ ସଂସାର ଆରମ୍ଭ କରିବା କଷ୍ଟସାଧ । ତେବେବି ସମୟକୁ ତା' ବାଟରେ ଛାଡ଼ିଦେଲେ, ଆପେ ସେସବୁ ସଜାଡ଼ି ଦେବ । ବାପାମାଁଙ୍କ ଅଭିମାନ ବେଶି ଦିନ ରହିବନି । ସେମାନେ କ୍ଷମାଶୀଳ । ତୁ ବୁଝେଇଦେବୁ ସେମାନଙ୍କୁ କ୍ଷମା ମାଗିନେବୁ । ଏହା ବ୍ୟତୀତ ମୋତେ ଆଉ କିଛି ବାଟ ଦିଶୁନି । ତୁ ପୁଲୋମାକୁ କହ ଏକଥା ।"

ପୁଲୋମା ସହିତ ଏ ବିଷୟରେ ସେ କଥାବାର୍ତ୍ତା କରିଛି । ପୁଲୋମା ରାଜି ହେଇଛି ବି । ତଥାପି ସେ ତାକୁ ସମୟ ନେଇ ଚିନ୍ତା କରିବାକୁ କହିଛି । ଏଇ ଦିନେ ଦି' ଦିନରେ ସେ ତାର ମତାମତ ଜଣେଇବ । ଦିଲ୍ଲୀ ଯାଇଛି ସେ ତା ଘରକୁ । ଫେରିଲେ କହିବ । ତା'ପରେ ସେ ଯାହା ନିଷ୍ପତ୍ତି ନେବ ।

ତେବେ ବାପାବୋଉଙ୍କୁ ଯେ ଆଘାତ ହେବ- ଏଥିରେ ସଂଦେହ ନାହିଁ । କିନ୍ତୁ ଅନ୍ୟ ଉପାୟ ତା' ପାଖରେ ଆଉ କିଛି ନାହିଁ । ଅବଶ୍ୟ ଦୀର୍ଘଶ୍ୱାସ ଛାଡ଼ି ଭାବିଲା, ସେ

କିନ୍ତୁ ବୋଉ କି ବାପାଙ୍କୁ ଦୁଃଖ ଦେବାକୁ, କେବେ ବି ଚାହୁଁ ନଥିଲା । କିନ୍ତୁ ପରିସ୍ଥିତି ଯେ, ଏଭଳି ବାଟ କଢ଼େଇବ, ସେକଥା ବି ତ ସେ କଳ୍ପନା କରିନଥିଲା । ମନେ ମନେ ନିଜକୁ ଅପରାଧୀ ଭାବି ସ୍ୱଗତୋକ୍ତି କଲା- "ମୋତେ କ୍ଷମା କରିଦିଅ ବାପା ବୋଉ, କ୍ଷମା କରିଦିଅ । ପୁଲୋମା ଖୁବ୍ ଭଲ ଝିଅ - ତା' ସଂସ୍ପର୍ଶରେ ଆସିଲେ ହିଁ ଜାଣିପାରିବ ତମେ । ମୁଁ କିନ୍ତୁ ତାକୁ ବାଦ୍ ଦେଇ ବଞ୍ଚିପାରିବିନି ବୋଉ..... ଛାତିରୁ ତା'ର କୋହ ଉଠିଲା ତମକୁ ବି ଛାଡ଼ି ବଞ୍ଚିପାରିବିନି..... କ'ଣ କରିବି ମୁଁ ଏବେ !"

ବ୍ୟତିବ୍ୟସ୍ତ ହେଇ ପଡୁଥିଲା ଆର୍ଯ୍ୟ ନିଜ ଭିତରେ । ଚିନ୍ତା ଘାରୁଥିଲା କେମିତି ସାମ୍‌ନା କରିବ ପରିସ୍ଥିତିକୁ ? ପୁଲୋମା ଯଦି ଓଡ଼ିଆ ଝିଅ ହେଇଥାନ୍ତା, ହୁଏତ ସେ ବୋଉକୁ ବୁଝେଇବାକୁ ପ୍ରୟାସ କରିଥାନ୍ତା । ପୁଣି ଭିନ୍ନ ପ୍ରକାର ସଂସ୍କୃତି ଭିତରେ ବଢ଼ିଛି । ଚାଲିଚଳଣି ବି ଭିନ୍ନ । ହିନ୍ଦୀ ଭାଷୀ । ବୋଉକୁ ଅସୁବିଧା ଲାଗିବ ନିଷ୍ପତ୍ତି ଗ୍ରହଣ କରିବାକୁ । ସୁଶୋଭନ କିନ୍ତୁ ତାକୁ କଟାକ୍ଷ କରି କୁହେ ସବୁ ଠିକ୍ ହେଇଯିବ କ୍ରମଶଃ ହେଲେ, ତୋ' ଭିତରେ ଆତ୍ମବିଶ୍ୱାସ ଥିଲା ଭଳି ମୋର ମନେ ହେଉନି । ଥିଲେ, ତୁ ଏମିତି ପେଣ୍ଡୁଲମ୍ ଭଳି ଝୁଲନ୍ତୁନି କେବେ..... ।

ଭାବନାରେ ବାଧା ଦେଇ ସେଲ୍‌ଫୋନ୍‌ଟା ବାଜି ଉଠିଲା । ଉଠେଇ ଦେଖେ ତ ବୋଉ । ଅନେକ ଦିନ ପରେ ଫୋନ୍ କରିଛି । ଉଠେଇଲା ।

ସେ ପାଖରୁ ଅଭୟାଙ୍କ କଣ୍ଠ ସ୍ୱର- "କେମିତି ଅଛୁ ବାପା, ତୋ' ପାଖରୁ କିଛି ଖବର ନପାଇ ମନ ଭଲ ଲାଗିଲାନି ବୋଲି ଫୋନ୍ କଲି.... ଭଲଅଛି ଦେହ ପା ?"

"ଭଲ ଅଛି ବୋଉ । ତୋ କଲ୍ୟାଣ ଥିଲେ ମୋର କିଛି ହେବନି । ତୁ ଖାଲି ବ୍ୟସ୍ତ ହେଇପଡୁଛୁ । ତମେ ସବୁ କିମିତି ଅଛ ?"

ଭଲ ହିଁ ଅଛୁ, ଭଲ ରହିବାକୁ ହେବ । ତୋ ହାତକୁ ଦି'ହାତ ନକଲା ଯାଏଁ ଆମକୁ ମୁକ୍ତି କାହିଁ ? ସେଇକଥା କହିବି ବୋଲି ତ ଆଜି ଫୋନ୍ କଲି । ଏବେ କହ ତୁ କ'ଣ ଚିନ୍ତା କଲୁ ମୋ କଥା ?

"କୋଉ କଥା ବୋଉ ?"

'ଲକ୍ଷ୍ମୀ' କଥା । କହି ନଥିଲି ତୋତେ ସେଥର ଆସିଲା ବେଳେ ଭୁଲିଗଲୁ ?

"ଭୁଲିନି ଯେ.... ତୁ କାହିଁକି ଏତେ ତରବର ହେଉଛୁ, ଚାକିରି କରି ଛ'ମାସ ବି ତ ହେଇନି । ଏବେ କିଏ ବାହା ହୁଏ ?"

"ମୁଁ ଜାଣିଥିଲି ତୁ କିଛି ନା କିଛି ବାହାନା କରିବୁ । ମୁଁ କିନ୍ତୁ ଆଉ କିଛି ଶୁଣିବିନି.... ତୋ ପାଖରୁ ମୁଁ ଉତ୍ତର ଚାହେଁ....."

ଆର୍ଯ୍ୟ ସଂକଟରେ ପଡ଼ିଲା । ବୋଉ ଲକ୍ଷ୍ମୀ କଥା ଦୋହାରାଇଲା, ତା'ଗୁଣ ଗାଇଲା । ଲକ୍ଷ୍ମୀ ତା'ର ଅଭିଳଷିତ ସ୍ୱପ୍ନ । ପୁଅର ଇଚ୍ଛା ଆଉ ସ୍ୱପ୍ନ କଥା ବୋଉ

ମୋତେ ଭାବୁନି । ପଚାରୁନି ସେ କ'ଣ ଚାହେଁ । କେବଳ କହିଚାଲିଛି ପୂର୍ଣ୍ଣଚ୍ଛେଦ ନ ପକେଇ । ସେ ଶୁଣିଲା କିଛି ଉତ୍ତର ନ ଦେଇ ଚୁପ୍‌ଚାପ । ବୋଉ ସେପାଖରୁ କଥା ସାରି ପଚାରିଲା.... ତୁ କହିଲେ ମୁଁ ହେମଲତାକୁ ଜଣେଇବି ଏଇ ମାସ ଶେଷରେ ଲକ୍ଷ୍ମୀ ପରୀକ୍ଷା ଦେଇ ଦିଲ୍ଲୀରୁ ଫେରିବ ।

"ବୋଉ ତୁ ବ୍ୟସ୍ତ ହ'ନା ଏତେ । ଇଚ୍ଛା ହେଲେ ନିଜେ କହିବି ମୁଁ, ସମୟ ଆସୁ । ଅପେକ୍ଷା କର ।"

"କେବେ ସମୟ ଆସିବ, କେବେ ଆଉ କହିବୁ ଯେ ?"

"ଠିକ୍ ସମୟରେ କହିବି, ମୋତେ ଭାବିବାକୁ ସମୟ ଦେ.... ରଖୁଛି ଏଥର ।" ଆଉ କିଛି ନ କହି ଫୋନ୍ କାଟିଦେଲା । କ'ଣ ଆଉ କରିଥାନ୍ତା । ବୋଉ ପାଇଁ ତା' ପାଖରେ କିଛି ଉତ୍ତର ନ ଥିଲା ଯେ ।

ଯାହାହେଉ ବୋଉ କିଛିଦିନ ପାଇଁ ଲକ୍ଷ୍ମୀ କଥା ଉଠେଇବନି ତା' ଭିତରେ ସେ କିଛି ଗୋଟେ ଚିନ୍ତା କରିବ । ତା'ର ଆଖିପତା ମାଡ଼ି ପଡୁଥିଲା କ୍ଳାନ୍ତିରେ । ଏଥର ବିଛଣାକୁ ଯିବ । ପୁଣି ସକାଳୁ ଧାଇଁବାକୁ ହେବ ଅଫିସ୍ - ଗୁଡ଼ାଏ କାମ ରହିଛି । ଲାଇଟ୍ ଲିଭେଇ ଶୋଇବାକୁ ଯାଉଛି ପୁଣି ରିଂ ହେଲା ଫୋନ୍ ଟିକିଏ ବିରକ୍ତିରେ ଉଠେଇଲା ଫୋନ୍‌ଟା ନିଦୁଆ ଆଖିରେ । ଫୋନ୍‌ଟା ପୁଲୋମାର ଥିଲା । ଏବଂ ତା' କଣ୍ଠସ୍ୱର ଭାଙ୍ଗି ଭାଙ୍ଗି ପଡୁଥିଲା । ପୁଲୋମା କାନ୍ଦୁଛି ନା କ'ଣ ଆର୍ଯ୍ୟ ବ୍ୟସ୍ତ ହେଇ ପଚାରିଲା- ଘଟଣା କ'ଣ, କ'ଣ ହେଇଛି ତମର ?"

ପୁଲୋମା ତାଙ୍କ ଘରେ ଘଟିଥିବା ଘଟଣାକୁ ସଂକ୍ଷିପ୍ତରେ ବର୍ଣ୍ଣନା କଲା । ଆସନ୍ତା ସପ୍ତାହରେ ତାକୁ ଦେଖିବା ପାଇଁ ପାର୍ଟି ଆସୁଛନ୍ତି । କ୍ୟାଣ୍ଡିଡେଟ୍ ନିଜେ ଆସୁଛି । ପସନ୍ଦ ହେଲେ ବାହାଘର ଦିନ ଠିକ୍ କରିଯିବ । ସେ ରୋକ୍‌ଠୋକ୍ ମନା କରିଦେଇଛି । କହି ବି ଦେଇଛି ଯେ, ଯଦି ସେ ବାହାହେବ ତ ନିଜ ଇଚ୍ଛାରେ, ନିଜ ପସନ୍ଦର ମଣିଷକୁ । ସମୟ ଆସିଲେ ଜଣେଇ ଦେବ । ଏକଥା ଶୁଣି ବାପା, ଚାଚା, ଭାଇ ସମସ୍ତେ ପ୍ରତିବାଦ କଲେ । ମମି ତ ଜହର ଖାଇବ ବୋଲି ଧମକ ଦେଲା । ଘରେ ତୁମୁଳକାଣ୍ଡ । ଘଟଣା ଅଚାନକ ଭିନ୍ନ ମୋଡ଼ ନେଉଛି । ପୁଲୋମା କହିଲା, ଆମ ହାତରେ ଆଉ କୌଣସି ଉପାୟ ନାହିଁ କି ସମୟ ବି ନାହିଁ, କୋର୍ଟ୍ ମ୍ୟାରେଜ୍ କରିବା ପାଇଁ ମୁଁ ପ୍ରସ୍ତୁତ । ତମେ ତା'ର ଶୀଘ୍ର ବ୍ୟବସ୍ଥା କର । ଏବେ ରଖୁଛି ଫୋନ୍ । ସାକ୍ଷାତ୍‌ରେ କହିବି ସବୁ କଥା । ଫୋନ୍ ରଖିଦେଲା ପୁଲୋମା ।

ଆର୍ଯ୍ୟ ବିଛଣାରୁ ଉଠି ବସିଲା । ଉତ୍ତେଜନାରେ ଝାଳେଇ ଯାଉଥିଲା ସେ । ଆଖିରୁ ନିଦ ପୋଛି ନେଇଥିଲା ପୁଲୋମା । ଏବଂ ଚିନ୍ତାର ପାହାଡ଼ ତଳେ ଚାପି

ହେଇଯାଉଥିଲା ସେ । ପୁଲୋମା ବିପଦରେ ପଡ଼ିଛି । ସେ ତ ଆଉ ଚୁପ୍ ହୋଇ ବସି ପାରିବନି । କିଛି ଗୋଟାଏ କରିବାକୁ ହିଁ ପଡ଼ିବ । ହେଲେ କିମିତି ?

ନିରୁପାୟ । ଯାହା ସେ ସମୟକୁ ଟାଳିବାକୁ ପ୍ରୟାସ କରୁଥିଲା, ଭାବୁଥିଲା ସମୟ ଆପେ ଅନୁକୂଳ ହେବ ଓ ନିଜେ ବାଟ ଫିଟେଇ ଦେବ । ଟିକିଏ ଧୈର୍ଯ୍ୟ ଦରକାର । କିନ୍ତୁ ପରିସ୍ଥିତି ଭିନ୍ନ ମୋଡ଼ ନେଲା । ସମୟ ତ ସିଧାସଳଖ ଯୁଦ୍ଧ ଭୂଇଁରେ ନେଇ ଠିଆ କରେଇ ଦେଲାଣି । ଅସ୍ତ୍ର ଧରିବାକୁ ହିଁ ହେବ । ନିଷ୍ପତ୍ତି ନେବାକୁ ହିଁ ପଡ଼ିବ । ନହେଲେ ଦୁଇଟି ଜୀବନ ବିପର୍ଯ୍ୟସ୍ତ ହୋଇଯିବ । ସୁଶୋଭନ ଠିକ୍ ହିଁ କହୁଥିଲା । ଜୀବନକୁ ବିପର୍ଯ୍ୟସ୍ତ କରିବାର ଅଧିକାର କାହାର ବି ନାହିଁ । ଜୀବନର ଗତିରୋଧ କରିବା ମଧ୍ୟ ସମ୍ଭବ ନୁହେଁ । ଜୀବନ ଆଗକୁ ବଢ଼େ, ବଢ଼ିବା ତାର ଧର୍ମ । ତା'ଛଡ଼ା ଜୀବନ ମାନେ ହିଁ ଯୁଦ୍ଧ । ଯୁଦ୍ଧ ଚାଲିଥାଏ ଅହରହ କେବେ ମନର ଅଭ୍ୟନ୍ତରରେ ତ କେବେ ଜୀବନ ବାହାରେ । ପରିସ୍ଥିତି ସହିତ, ନହେଲେ ସ୍ଥିତିକୁ ଜାହିର କରିବା ପାଇଁ । ହାରିବା ପାଇଁ କେହି ଯୁଦ୍ଧ କରେନି । ହାରିଲେ ବି ପୁଣି ଉଠିବସେ ଯୁଦ୍ଧ କରିବାକୁ, ଜୀବନ ଥିଲା ଯାଏ ଚାଲିଥାଏ ଏଇ ଯୁଦ୍ଧ ପ୍ରକ୍ରିୟା ।

ଅଥଚ ସେ ? ହଠାତ୍ ତା'ର ପୁରୁଷାକାର ବିଦ୍ରୋହ କରି ଉଠିଲା । ଆର୍ଯ୍ୟ ଭାବିଲା, ସେ କଣ ଡେଲୁଣି ପୋକ ନା ଗେଣ୍ଡା ଯେ, ବାଧା, ପ୍ରତିରୋଧ ଆସିଲେ ମୁହଁ ମୋଡ଼ି ବାଟ ଭାଙ୍ଗିବ ? ନା, ସେ ମଣିଷ, ବୁଦ୍ଧିମାନ । ବାଧାକୁ ଅତିକ୍ରମିବାର ସାହସ ଓ ସାମର୍ଥ୍ୟ ଅଛି ତା'ପାଖରେ । ସେ ପାରିବ । ସେ ବୁଝେଇ ପାରିବ ବାପାବୋଉଙ୍କୁ, ଉତ୍ତର ଦେଇ ପାରିବ ସମାଜକୁ । ଅଛି ତା'ର ବିଶ୍ୱାସ ନିଜ ଉପରେ । ଆଗରେ ଲମ୍ୱା ଜୀବନ - ସୁନେଲୀ ଭବିଷ୍ୟତ.... ଅନେକ ସ୍ୱପ୍ନ... ତାକୁ ସେ ସଫଳ କରିବ - ଜୀବନକୁ ଆଗେଇ ନେବା ଦାୟିତ୍ୱ ବି ତାର । ସେ ପଛଘୁଞ୍ଚା ଦେବନି - ପୁଲୋମାଙ୍କୁ ନେଇ ସେ ଘର କରିବ ସେ ଆଉ ପୁଲୋମା ମିଶି ଏକାଠି ଲଢ଼ିବେ ଏଇ ଜୀବନର ଯୁଦ୍ଧକୁ । ସେ ପାରିବ ନିଶ୍ଚୟ । ଆତ୍ମବିଶ୍ୱାସକୁ ଯାଉଁଟି ଆର୍ଯ୍ୟ ଆପଣା ଭିତରେ ପୂରେଇ ନିଜକୁ ପ୍ରସ୍ତୁତ କଲା ଆଗାମୀ ସମୟର ଯୁଦ୍ଧ ପାଇଁ ।

ବାହାରକୁ ଚାହିଁଲା ଅଂଧାର ଅଛି ।

ରାତି ପାହୁ..... ସକାଳ ଆସୁ..... ନୂଆ ସକାଳ । ତା' ଜୀବନର ନୂଆ ସକାଳ ହେବ ସେଇଟା । ପୁଲୋମା ଆଉ ଆର୍ଯ୍ୟର ସକାଳ ।

ହଠାତ୍ ତାର ଇଚ୍ଛା ହେଲା, ସୁଶୋଭନକୁ ତାର ଏଇ ଐତିହାସିକ ନିଷ୍ପତ୍ତି ସଂପର୍କରେ ଜଣେଇଦେବ । ଘଣ୍ଟାକୁ ଚାହିଁଲା - ଅନେକ ରାତି ଅଛି ଆହୁରି । ଶୋଇପଡ଼ିଥିବ ନିଘୋଡ଼ ନିଦରେ ସୁଶୋଭନ । ନିଦରୁ ଉଠେଇବା ଉଚିତ୍ ହେବନି ।

ବରଂ ସକାଳୁ ସକାଳୁ ସେ ଫୋନ୍ କରି କହିବ ଯେ, ଅଫିସ୍ ଯିବା ପୂର୍ବରୁ ମୋ ପାଖକୁ ଆସିବୁ.... ସାଥି ହୋଇ ରେଜିଷ୍ଟ୍ରେସନ୍ ଅଫିସ୍‌କୁ ଯିବା ଦରଖାସ୍ତ କରିବାକୁ । ସାକ୍ଷାତରେ କହିବି ସବୁକଥା । ଏକଥା ଭାବୁ ଭାବୁ ତାକୁ ହାଲୁକା ଲାଗିଲା ଟିକିଏ । ଲମ୍ବା ନିଃଶ୍ୱାସଟିଏ ନେଇ ବିଛଣାରେ ଗଡ଼ିପଡ଼ି ନୂଆ ସକାଳକୁ ଅପେକ୍ଷା କଲା ସ୍ୱାଗତ କରିବା ପାଇଁ ।

..... ସେଦିନର ଅପେକ୍ଷା କରିଥିବା ପେସେଣ୍ଟ୍‌ଙ୍କୁ ବିଦା କରିସାରି କ୍ଲିନିକ୍ ବନ୍ଦ କଲେ ଭୃଗୁ ସାମନ୍ତ । ଡେରି ହୋଇଗଲାଣି ଆଜି, ଅପେକ୍ଷା କରିଥିବେ ସରମାଁ, ତାଙ୍କୁ ଜରାଶ୍ରମ ଯିବାକୁ ହେବ - ତରବର ହୋଇ ଗାଡ଼ିରେ ଷ୍ଟାର୍ଟ୍ ଦେଲେ ସେ ।

ଲକ୍ଷ୍ମୀକୁ ଦିଲ୍ଲୀରେ ଛାଡ଼ି ଆସିଲା ପରେ ସେ ନିତିଦିନ ଭଳି କ୍ଲିନିକ୍ ଆଉ ଆଶ୍ରମର କାର୍ଯ୍ୟଭାର ସମ୍ଭାଳୁଛନ୍ତି । ସରମାଁ କିନ୍ତୁ ପୁଅକୁ ଦେଖି ଆଶ୍ରମରେ ନରହି ଘରକୁ ଫେରିବା ପାଇଁ ନିତି ଅଳି କରି ଚାଲିଛନ୍ତି । ତା' ଉତ୍ତରରେ ସେ ବି ମା'ଙ୍କୁ ବାହାନା ଦେଖେଇ ଚାଲିଛନ୍ତି ଯେ "ମୋତେ ପୁଣି ଥରେ ଦିଲ୍ଲୀ ଯିବାକୁ ପଡ଼ିବ, ଲକ୍ଷ୍ମୀକୁ ଆଣିବା ପାଇଁ, ମୁଁ ତ ନିତି ଆସୁଛି ତମ ପାଖକୁ । ସମସ୍ତେ ଅଛନ୍ତି ଏଠି ତମ କଥା ବୁଝିବାକୁ, କିଛି ବି ଆସୁଛି ତମର ଆଉ କ'ଣ ଅସୁବିଧା ଯେ ?"

ସମସ୍ତେ ଅଛନ୍ତି ସତ... ହେଲେ ଲକ୍ଷ୍ମୀ ତ ନାହିଁ... ମୋତେ ଭଲ ଲାଗୁନି ଏଠି..... ମୁହୂର୍ତ୍ତେ ନିରବ ରହି କୁହନ୍ତି, "ଏଥର ସେ ଆସିଲେ ତାକୁ ଘରକୁ ନେଇଯିବା ।"

ଭୃଗୁ ହସନ୍ତି, କୁହନ୍ତି କମିତି ନେଇଁଯିବା । ସେ ପରା ଏଠି ଚାକିରି କରିଛି, ସମସ୍ତଙ୍କ କଥା ବୁଝୁଛି । ସେ ଚାଲିଗଲେ, କିଏ ବୁଝିବ ସେମାନଙ୍କ କଥା ? ତା' ଛଡ଼ା ତା'ର ବାପା ମାଁ ତାକୁ କାହିଁକି ଛାଡ଼ିବେ ଆମ ଘରକୁ ?

ଛାଡ଼ିବେନି.....? ବିକଳ ଦୃଷ୍ଟିରେ ଭୃଗୁ ମୁହଁକୁ ଚାହିଁ କୁହନ୍ତି ମୋତେ ଭାରି ଏକୁଟିଆ ଲାଗୁଛି ସେ ନାହିଁ ବୋଲି.... । ଛୋଟ ନିଃଶ୍ୱାସଟିଏ ନେଇ ମନେ ମନେ ଭୃଗୁ ସ୍ୱଗତୋକ୍ତି କରନ୍ତି - "ମୋତେ କ'ଣ ଭଲ ଲାଗୁଛି ମାଁ, ମୋ ଭିତରଟା ଯେ ନିଛାଟିଆ ଏ ନିଶୂନ୍ ହୋଇ ଯାଇଛି ସେ ନାହିଁ ବୋଲି । ମୁଁ କିନ୍ତୁ ଏକଥା କହିପାରୁନି କାହାକୁ ଜଣେ ଦାୟିତ୍ୱ ସଂପନ୍ନ ଡାକ୍ତରର ଖୋଳଟାଏ ପିନ୍ଧିଛି, ତ............ ।"

ଠିକ୍ ଏତିକି ବେଳକୁ ସେଲ୍ ଫୋନ୍‌ଟା ବାଜିଲା । ଦେଖନ୍ତି ତ, ଲକ୍ଷ୍ମୀ ଫୋନ୍ କରୁଛି । ସେପଟୁ ଲକ୍ଷ୍ମୀ ପଚାରୁଥିଲା, ବାପାଙ୍କ ଦେହ କେମିତି ଅଛି ? କାଲି ରାଘବ ସାର୍ ଫୋନ୍ କରିଥିଲେ, ବୋଉ ତାଙ୍କୁ ଡାକ୍ତରଖାନା ନେଇଥିଲା ବୋଲି । ବ୍ୟସ୍ତ ଲାଗିଲା ତ.... ଭୃଗୁ ଉତ୍ତର ଦେଲେ, ଭଲ ଅଛନ୍ତି, ନିତିଦିନିଆ ସାଧାରଣ ଅସୁସ୍ଥତା, ଏମିତି ବେଳେବେଳେ ବଢ଼ିଯାଏ କଷ୍ଟ । ବ୍ୟସ୍ତ ହେବାର କିଛି ନାହିଁ । ଆମେ ସମସ୍ତେ

ଅଛୁ । ତମେ  ନିଜ କର୍ତ୍ତବ୍ୟ କର । କେମିତି ହୋଇଛି ପରୀକ୍ଷା..... ମୁଁ ଜାଣିଥିଲି ଭଲ ହୋଇଥିବ ନିଶ୍ଚୟ.... ଶୁଭରାତ୍ରି ଜଣେଇ ଫୋନ୍ କାଟିଲେ ଭୃଗୁ ସାମନ୍ତ ।

ଲକ୍ଷ୍ମୀ ଭଲ ଅଛି ଶୁଣିଲେ, ତାଙ୍କୁ ଆଶ୍ୱସ୍ତ ଲାଗେ । ଲକ୍ଷ୍ମୀ ବି ଅପେକ୍ଷା ରଖିଥାଏ ରାଘବ ବାବୁ ନ ହେଲେ ତାଙ୍କଠୁ ଫୋନ୍ ପାଇବ ବୋଲି । ସେ ତ ଦିଲ୍ଲୀ ଭଳି ସହର ଜୀବନ ସହିତ ଅଭ୍ୟସ୍ତ ନୁହଁ, ଯଦିଓ ଭାରି ଆଡ୍‌ଭେଞ୍ଚରିଭ୍ ଝିଅ ସେ । ତଥାପି..... ମନ ଦୁର୍‌ଦୁରୁ କରେ । ନିତି ସନ୍ଧ୍ୟା ପରେ ସେ ଫୋନ୍ କରି ତାର ସୁବିଧା ଅସୁବିଧା, ପରୀକ୍ଷା କଥା ବୁଝି ନିଅନ୍ତି ଓ ତା' ବାପା ବୋଉଙ୍କୁ ଜଣେଇ ଦିଅନ୍ତି । ଆଜି ଟିକିଏ ଡେରି ହେଇଯାଇଛି ତାଙ୍କର । ତେଣୁ ସେ ବ୍ୟସ୍ତ ହେଇ ଫୋନ୍ କରିଛି ।

ଭୃଗୁ ନିଜ ବସାକୁ ଫେରିବା ପାଇଁ ସରମାଁଙ୍କଠୁ ଅନୁମତି ଲୋଡ଼ିଲେ । ଏତିକିବେଳେ ହେମଲତା ବି ଖାଇବା ନେଇ ଆସିଲା ସରମାଁଙ୍କ ପାଇଁ । ଲକ୍ଷ୍ମୀର ଖବର ହେମଲତାକୁ ଜଣେଇ ସେ ବିଦାୟ ନେଲେ ପୁଣି କାଲି ଆସିବାର ପ୍ରତିଶ୍ରୁତି ଦେଇ ।

|| ୯ ||

ଛୁଟି ସରିନଥିଲା ପୁଲୋମାର, ତଥାପି ସେ ଫେରିଆସିଲା ବାଙ୍ଗାଲୁର । ଘରେ ରହିଲେ ଅଶାନ୍ତି ଆହୁରି ବଢ଼ିବ ସିନା କମିବନି ସେଇଥିପାଇଁ ।

ନିଜେ ଆର୍ଯ୍ୟ ସୁଶୋଭନକୁ ନେଇ ଷ୍ଟେସନ୍‌କୁ ଯାଇଥିଲା ତା' ସହିତ ଦେଖା କରିବା ପାଇଁ । ଘର ଫେରନ୍ତି ଉଚ୍ଛ୍ୱାସ କି ଉଲ୍ଲାସର ଚିହ୍ନବର୍ଣ୍ଣ ନଥିଲା ପୁଲୋମା ମୁହଁରେ । ଶୁଖିଲା ଦିଶୁଥିଲା । କଳା ପଡ଼ିଯାଇଥିଲା ଆଖି ତଳ । ଯେମିତି ରୋଗରୁ ଉଠି ଆସିଛି । ଆର୍ଯ୍ୟର ମନ ଭିତରଟା ବିକଳ ହୋଇପଡ଼ିଲା । ଆହା । ବିଚାରୀ, ଏକୁଟିଆ ଲଢ଼ିବାକୁ ଯାଇ ହତାଶ ହୋଇପଡ଼ିଛି । ହୁଏତ ଖାଇନଥିବ ବି ।

ସୁଶୋଭନ କହିଲା, ଖାଇବା ସମୟ ହୋଇଗଲାଣି, ଚାଲ ଆଗ ହୋଟେଲ୍‌ରେ ଖାଇନେବା । ତା' ପରେ କଥାବାର୍ତ୍ତା ହେବା ଯାହା । ତିନି ହେଁ ଗୋଟାଏ ହୋଟେଲ୍‌ରେ ପଶିଲେ । ଖାଉଖାଉ ପୁଲୋମା ଗୋଟି ଗୋଟି କରି ଘଟିଯାଇଥିବା ଘଟଣାର ବିବରଣୀ ଦେଲା । ସୁଶୋଭନ ପଚାରିଲା, ତମେ କ'ଣ ଆର୍ଯ୍ୟ ସଂପର୍କରେ କିଛି ଜଣେଇଛ ଘର ଲୋକଙ୍କୁ ? ପୁଲୋମା ମନା କଲା, ଜଣେଇନି ଯଦିଓ, ସ୍ପଷ୍ଟ କରି ଦେଇଛି ଯେ, "ନିଜ ଇଚ୍ଛାରେ ମୁଁ ବାହାହେବି । ଠିକ୍ ସମୟରେ, ଖୁବ୍ ଶୀଘ୍ର ହିଁ ଜଣେଇବି ସେମାନଙ୍କୁ ।"

ସୁଶୋଭନ କହିଲା ତା'ହେଲେ ଆଉ ଡେରି କାହିଁକି, ଶୁଭସ୍ୟ ଶୀଘ୍ରମ୍ ନା କ'ଣ କହୁଛୁ ଆର୍ଯ୍ୟ ?

ଆର୍ଯ୍ୟ କହିଲା, ବୋଧହୁଏ ସମୟ ତାର ନିଷ୍ପତ୍ତି ଏଇ ପ୍ରକାରେ ନେବାକୁ ଚାହୁଁଛି । ଠିକ୍ ଅଛି, ସେଇଆ ହିଁ ହେବ ।

ରେଜିଷ୍ଟ୍ରି ମ୍ୟାରେଜ୍ ପାଇଁ ଆବେଦନ ଦରଖାସ୍ତ ତ ଦିଆସରିଛି । ଏବେ ଭଲଦିନଟିଏ ଦେଖିବା କଥା । ତମେ ଦିହେଁ ଦିନ ଠିକ୍ କରି ମୋତେ ଜଣେଇଲେ, ମୁଁ ଚାରିଜଣ ବଂଧୁ ଓ ବାଂଧବୀଙ୍କୁ ସାକ୍ଷୀ ପାଇଁ ନେଇଁଯିବି । କୌଣସି ଅସୁବିଧା ହେବନି, ସୁଶୋଭନ କହିଲା । ମୋଟେ ବ୍ୟସ୍ତ ହେବା ଦରକାର ନାହିଁ । କିନ୍ତୁ ଡେରି କଲେ ଅସୁବିଧା ହେଇପାରେ । ଅନ୍ତତଃ ପୁଲୋମା ଘରେ କିଛି ଗୋଟେ ପଦକ୍ଷେପ ନେଲେ, ପରିସ୍ଥିତିକୁ ସମ୍ଭାଳିବା କଷ୍ଟକର ହେବ । ତେଣିକି ଘଟଣା ସର୍ଶକାତର ହେଇପଡ଼ିବ - ବୋଲି ମୋର ମନେହୁଏ... ସୁଶୋଭନ ଚେତାବନୀ ଦେବା ଢଙ୍ଗରେ ହିଁ କଥାଟାକୁ କହିଲା ।

ସେଇୟା ହିଁ ଠିକ୍ ହେଲା । ବଂଧୁମାନେ ମିଶି ଗୋଟାଏ ଶୁଭଦିନ ବାଛିଲେ । ସପ୍ତାହକ ପରେ ବିବାହ ।

ସେ'ଦିନ ବଂଧୁବାଂଧବୀଙ୍କ ଗହଣରେ ରେଜିଷ୍ଟ୍ରେସନ୍ ଅଫିସ୍‌ରେ ଆର୍ଯ୍ୟ ଓ ପୁଲୋମା ଠିକ୍ ସମୟରେ ପହଞ୍ଚିଲେ । ଉଭୟଙ୍କୁ ଅଫିସର୍ ଦସ୍ତଖତ କରାଇନେଲେ ସାକ୍ଷୀମାନଙ୍କ ଉପସ୍ଥିତିରେ । ପୁଲୋମା ଶର୍ମା, ଆର୍ଯ୍ୟ ଗଳାରେ ବରଣମାଳା ପିନ୍ଧେଇଦେଲା । ଆର୍ଯ୍ୟ ବଂଧୁବାଂଧବୀଙ୍କ ସହିତ ମନ୍ଦିରକୁ ଯାଇ ଦେବୀଙ୍କ ଆଗରେ ପୁଲୋମା ସୀମନ୍ତରେ ସିନ୍ଦୂର ପିନ୍ଧେଇ ନିଜ ବସାକୁ ନେଇଗଲା । ଏ ବିବାହରେ ଶଂଖ ବାଜିଲାନି କି ହୁଳହୁଳି ପଡ଼ିଲାନି । ବଂଧୁ ବାନ୍ଧବୀମାନେ ହିଁ ବଧୂବରଣ କରି ଘରକୁ ନେଲେ । ବଂଧୁମାନଙ୍କଠାରୁ ସୁଦୀର୍ଘ ସୁଖମୟ ବୈବାହିକ ଜୀବନର ଶୁଭକାମନା ନେଇ ଆର୍ଯ୍ୟ ଓ ପୁଲୋମା ଆରମ୍ଭ କଲେ ତାଙ୍କର ସାଂସାରିକ ଜୀବନ ।

ତା' ପରଦିନ ଆର୍ଯ୍ୟ ଦାମୀ ହୋଟେଲ୍‌ରେ ବଂଧୁ ଓ ବାନ୍ଧବୀମାନଙ୍କୁ ପାର୍ଟିରେ ଆପ୍ୟାୟିତ କଲା । ସବୁ କିଛି ସୁରୁଖୁରୁରେ ହିଁ ହେଲା । ତଥାପି ଆର୍ଯ୍ୟ ମନରେ କୋଉଠି ଯେମିତି କଣ୍ଟାଟିଏ ରହି ଖେଞ୍ଚି ପକାଉଥିଲା । ଜୀବନର ଏତେବଡ଼ ଘଟଣାଟିଏ ଘଟିଗଲା ଅଥଚ ବାପାବୋଉଙ୍କର ଅନୁପସ୍ଥିତିରେ, ସେମାନଙ୍କ କଲ୍ୟାଣ ଓ ଆଶୀର୍ବାଦ ବିନା - ଏଭଳି ଯେ ଦିନେ ତା'ର ଜୀବନରେ ଘଟିବାକୁ ଥିଲା ବିଶ୍ୱାସ କରି ପାରୁନଥିଲା ଆର୍ଯ୍ୟ । ବଡ଼ ଅଶ୍ୱସ୍ତି ବୋଧ କରୁଥିଲା ନିଜ ଭିତରେ । ଗୋଟାଏ ଅପରାଧବୋଧ ତାକୁ ମାଡ଼ିବସିଲା । ବାପାବୋଉଙ୍କ ଆଶୀର୍ବାଦ ବିନା ସେ କିମିତି ସଂସାର ଆରମ୍ଭ କରିବ । ପୁଲୋମା ପାଇଁ ବି ସେଇ ବୋଧ ଘେରି ରହିଥିଲା ମନ ଭିତରେ । ପରିସ୍ଥିତି ବାଧ କଲା ବୋଲି ସିନା, ଏଭଳି ପଦକ୍ଷେପ ନେବାକୁ ପଡ଼ିଲା । ନହେଲେ.... ଆର୍ଯ୍ୟ ଆଖିରୁ ଲୁହ ଝରିପଡ଼ିଲା ଟପ୍ ଟପ୍ ହେଇ । ପୁଲୋମା କହିଲା, ଚାଲ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ଆମ ଅପରାଧ ପାଇଁ ।

ଆର୍ଯ୍ୟ ପୁଲୋମାଙ୍କର ପହିଲି ଦାମ୍ପତ୍ୟ ଜୀବନର ମଧୁଚନ୍ଦ୍ରିକା ହଠାତ୍ ଯେମିତି ଗୁମ୍‌ସୁମ୍ ମେଘିଲା ଆକାଶରେ ପରିଣତ ହୋଇଯାଇଥିଲା । ପରଦିନ ସକାଳୁ ସୁଶୋଭନ କହିଲା, "ତୁ ତାଙ୍କୁ ଫୋନ୍‌ରେ ଜଣେଇବାର ଔଦ୍ଧତ୍ୟ ନ ଦେଖେଇ ଦୁହେଁ ଯାଇ, ସେମାନଙ୍କ ପାଦତଳେଁ କ୍ଷମା ଭିକ୍ଷା କର ଏବଂ ସେମାନଙ୍କର କଲ୍ୟାଣ ନେଇ ଆସ । ବାପା ମା' କଣ କେବେ ନିଷ୍ଠୁର ହୋଇପାରିବେ ? କେବେ ନୁହଁ । ତୁ ଦେଖିବୁନି ।

ଏଇ ସପ୍ତାହେ, ଦି' ସପ୍ତାହ ଭିତରେ ଦୁହେଁ ଛୁଟି ନେଇ ଘରକୁ ଯିବେ ବୋଲି ସ୍ଥିର କରି - ମନକୁ ଆଶ୍ୱସ୍ତ କଲେ ।

ଆଜିକାଲି ରାଘବବାବୁଙ୍କୁ ନିତି ସଂଜସକାଳେ ଜରାଶ୍ରମ ଆସିବାକୁ ପଡୁଛି । ଏମିତିକି ଦିନେ ଦିନେ ଦି'ଥର ଜାଗାରେ ତିନି ଥର ବି ଆସୁଛନ୍ତି । ଜରାଶ୍ରମରେ ଅନେକ ପ୍ରକାରର ସମସ୍ୟା ବିଶେଷ କରି ଅନ୍ତେବାସୀଙ୍କର - ସମସ୍ତେ ପରିଣତ ବୟସର, ଲକ୍ଷ୍ମୀ ସବୁକଥା ବୁଝୁଥିଲା, ସବୁ ଦାୟିତ୍ୱ ସମ୍ଭାଳୁଥିଲା । ସମସ୍ତେ ତାକୁ ଖୋଜୁଛନ୍ତି । ହେମଲତାକୁ ଅଧିକ ପରିଶ୍ରମ କରିବାକୁ ପଡୁଛି ସେଥିପାଇଁ । ଏବେ ଲକ୍ଷ୍ମୀ ଗଲା ଦିନଠୁ ଆଶ୍ରମର ଭିତର, ବାହାରର ସମସ୍ତ ଦାୟିତ୍ୱ ତାଙ୍କର । କାରଣ ଟ୍ରଷ୍ଟ ତାକୁ ହିଁ ପ୍ରତ୍ୟକ୍ଷ ଦାୟିତ୍ୱ ଦେଇଛି ।

ଅବଶ୍ୟ ଲକ୍ଷ୍ମୀର ଆସିବା ସମୟ ପାଖେଇ ଆସୁଛି । ତାର ପରୀକ୍ଷା ସରିଆସିଲାଣି ବୋଲି କହୁଥିଲା । ଆଉ ମାତ୍ର ସପ୍ତାହେ କି ଦଶଦିନ । ଲକ୍ଷ୍ମୀ ଫେରିଲେ ଯାଇ ସେ ଟିକିଏ ନିଃଶ୍ୱାସ ନେବେ । ଘରେ ବେଶୀ ସମୟ ରହି ପାରୁନାହାନ୍ତି । ଘରର ଅନେକ କାମ ବାକି ପଡ଼ିଲାଣି । ତା'ଛଡ଼ା ଅଭୟା ଆଜିକାଲି ଆର୍ଯ୍ୟକୁ ନେଇ ବେଶ୍ ଚିନ୍ତିତ । ଠିକ୍ ସମୟରେ ତା'ର ଖବର କିଛ ଜାଣିହେଉନି ।

ଅଭୟାଙ୍କ ଇଚ୍ଛା, ସେ ଯାଇ ଥରେ ବୁଲି ଆସନ୍ତେ ବାଙ୍ଗାଲୁର୍ । କ'ଣ କିମିତି ଅଛି ପୁଅଟା । ଲକ୍ଷ୍ମୀ ଫେରିଲେ ଥରେ ବାଙ୍ଗାଲୁର ଯିବା ବ୍ୟବସ୍ଥା କରିବେ ବୋଲି ଅଭୟାଙ୍କୁ କଥା ଦେଇଛନ୍ତି ବୋଲି, ଅଭୟା ଟିକିଏ ଥୟ ଧରିଛନ୍ତି ।

ଗଲାକାଲି ଲକ୍ଷ୍ମୀ ଫୋନ୍ କରିଥିଲା । ତା' ଫେରନ୍ତି ବ୍ୟବସ୍ଥା ସଂପର୍କରେ ସେ କଥାବାର୍ତ୍ତା କରିଥିଲେ । କାରଣ ସପ୍ତାହକ ଆଗରୁ ଡା. ସାମନ୍ତଙ୍କୁ ଜଣେଇଲେ ତ ସେ ପ୍ରସ୍ତୁତ ହେବେ ଦିଲ୍ଲୀ ଯାଇ ତାକୁ ଆଣିବା ପାଇଁ ।

ଲକ୍ଷ୍ମୀ କିନ୍ତୁ ରୋକ୍‌ଠୋକ୍ ମନା କଲା । ଡା. ସାମନ୍ତଙ୍କୁ ଆଉ କଷ୍ଟ କରିବାକୁ ପଡ଼ିବନି । ସେ ନିଜେ ଆସିପାରିବ । ତାଙ୍କର ଅନେକ ଦାୟିତ୍ୱ ଅଛି । ବିଶେଷ କରି କ୍ଲିନିକ୍ ବନ୍ଦ କଲେ ରୋଗୀମାନେ ଅସୁବିଧାରେ ପଡ଼ିବେ । ହେଲେ ରାଘବବାବୁ ନିଶ୍ଚିନ୍ତ

ହେଇପାରୁନଥିଲେ ଯେ, ଲକ୍ଷ୍ମୀ ଏକୁଟିଆ ଫେରୁ । ଲକ୍ଷ୍ମୀ କିନ୍ତୁ ଭରସା ଦେଲା, ସେ ପାରିବ । ମିଛରେ ମୋ ପାଇଁ କେହି ହଇରାଣ ହୁଅନ୍ତୁ, ସେ ଚାହେଁନା ।

ତଥାପି ସେ ନିଜେ ତାକୁ କହିଛନ୍ତି- ନିର୍ଦ୍ଦିଷ୍ଟ ଦିନ ଓ ତାରିଖ ଜଣେଇଲେ ସେ ଫେରନ୍ତା ଟିକେଟ୍ ବୁକ୍ କରି ପଠେଇଦେବେ ତା' ପାଖକୁ, ଅନ୍ତତଃ ତା'ର ସମସ୍ୟା ଓ କଷ୍ଟ କିଛିଟା ଲାଘବ ହେଇଯିବ । ଝିଅଟାର ସ୍ୱଭାବ ହିଁ ସେମିତି । ସମସ୍ତଙ୍କର ସୁବିଧା, ଅସୁବିଧା କଥା ଆଗ ଭାବିବ । କାହାକୁ ସେ କଷ୍ଟ ଦେବାକୁ ଚାହେଁନା । ସତରେ ତା'ଭଳି ଝିଅଟିଏ ଭାଗ୍ୟରେ ଥିଲେ ମିଳେ । ଅଭୟା ଠିକ୍ ବାଛିଛନ୍ତି ।

ସେଇଦିନ ସନ୍ଧ୍ୟାବେଳେ ଘରକୁ ଫେରୁଛନ୍ତି, ଦେଖାହେଇଗଲା ଡା. ସାମନ୍ତଙ୍କ ସହିତ । ସେ ସରମାଁଙ୍କ ପାଖକୁ ଯାଉଥିଲେ । କିଛି ସମୟ ପାଇଁ ଠିଆହେଇଗଲେ ରାଘବବାବୁ । ସରମାଁଙ୍କ ମାନସିକ ସ୍ଥିତି କଥା ପଚାରିଲେ- କିମିତି ଅଛନ୍ତି ସେ ? ଆଉ ଇନ୍ଦୁମତୀ ? ମନର ଅବସ୍ଥା ତ ସେଇଭଳି ଅଛି ପ୍ରାୟତଃ । ଟିକିଏ ଶାନ୍ତ ହୋଇଯାଇଛନ୍ତି । ଆଗ ଭଳି ଜିଦି କିମ୍ବା ବିଭ୍ରମତା ନାହିଁ । ଆଉ କିଛି ଦିନ ଏଇଭଳି ତାଙ୍କ ଉପରେ ନଜର ରଖିବାକୁ ପଡ଼ିବ - କହିଲେ ଭୃଗୁସାମନ୍ତ । ଇନ୍ଦୁମତୀଙ୍କର ବି ସେଇ ଅବସ୍ଥା - ସକ୍ ତ ଦିଆଚାଲିଛି ବୋଲି ଖବର ପାଇଥିଲି । ତେବେ ବିଶେଷ ଆଶା ନାହିଁ ।

ରାଘବବାବୁ ଦୀର୍ଘଶ୍ୱାସ ନେଇ କହିଲେ, ମଣିଷର ଏହା ଏକ ଦୁର୍ଭାଗ୍ୟଜନକ ସ୍ଥିତି ବଞ୍ଚି ମଧ ନ ବଞ୍ଚିଲା ଭଳି । ଯାହା ଈଶ୍ୱରଙ୍କ ବରାଦ୍ - ମଣିଷ ହାତରେ କ'ଣ ଅଛି !

ହଁ, ଭୁଲିଯାଇଥିଲି କହିବା ପାଇଁ ଲକ୍ଷ୍ମୀର ପରୀକ୍ଷା ଏଇ ସପ୍ତାହରେ ସରୁଛି ଆପଣଙ୍କର ମନେଥିବ । କାଲି କଥା ହେଇଥିଲି ତାର ଫେରିବା ବ୍ୟବସ୍ଥା କ'ଣ କରାଯିବ ବୋଲି । ସେ କହିଲା, ନିଜେ ସେ ଆସିପାରିବ ନିଜ ଦାୟିତ୍ୱ ନେଇ । ଆପଣଙ୍କୁ ବିଶେଷ କଷ୍ଟ ଦେବାକୁ ଚାହେଁନା । ତାର ଆଉ କିଛି ବାନ୍ଧବୀ ମଧ ଫେରିବେ । ବିଶେଷ ଅସୁବିଧା ହେବନି । ତଥାପି ମୁଁ ତାକୁ ଫେରନ୍ତା ଦିନ ଜଣେଇଲେ ଟିକେଟ୍ ବୁକ୍ କରି ପଠେଇଦେବି ବୋଲି କହିଛି । ତାର କିଛି ସୁବିଧା ହେଇଯିବ ଏଇଯା ଭାବି ।

ଭୃଗୁ ସାମନ୍ତଙ୍କୁ ଅବଶ୍ୟ ଟିକିଏ ଚିନ୍ତାରେ ପକେଇଲା- କାରଣ ଲକ୍ଷ୍ମୀର ଏସବୁ ଅଭ୍ୟାସ ତ ନାହିଁ । ସେ ଏତେ ଖୋଲା ହେଇପାରେନା ଅନ୍ୟ ଝିଅମାନଙ୍କ ଭଳି । ତଥାପି ସେ ହସିଦେଲେ, କହିଲେ ଭଲକଥା । ନିଜେ ଟିକିଏ ସାହସୀ ହେବା ଉଚିତ୍ । ଆଜିକାଲି ସମୟ ବିଶେଷ ଅନୁକୂଳ ନୁହେଁ ଝିଅମାନଙ୍କ ପାଇଁ ସତ । ସବୁବେଳେ ସତର୍କ ରହିବା ଦରକାର । ନା, ମୋର ବିଶେଷ କିଛି ଅସୁବିଧା ବି ହେଇନଥାନ୍ତା ଯିବା ପାଇଁ, ତେବେ ଠିକ୍ ଅଛି - ଯଦି ନିଜ ଦାୟିତ୍ୱ ନିଜେ ନେବେ, ଭଲକଥା ।

ରାଘବବାବୁଙ୍କଠୁ ଲକ୍ଷ୍ମୀ ସପ୍ତାହେ ପରେ ଫେରୁଛି - ଖବରଟା ତାଙ୍କୁ ଖୁବ୍ ଆଶ୍ୱସ୍ତ କଲା । ସତେ ଯେମିତି ଦଲକାଏ ଥଣ୍ଡା ପବନ ଆସି ତାଙ୍କ ଦେହମନକୁ ଆଉଁଶି ଦେଲା । ଆହା ! ବୁଜି ହେଇଗଲା ଆଖିପତା । ଭାବିଲେ ପ୍ରିୟଜନର ଆସିବା ଖବରଟା ଏତେ ଆନନ୍ଦ ଦେଇପାରେ ! ତାଙ୍କର ତ ଧାରଣା ନଥିଲା । ସତେ ଯେମିତି ତାଙ୍କର ଗହନମନର ଶୂନ୍ୟ ଅଗଣାରେ କୋଇଲିଟିଏ କୁହୁକୁହୁ ଡାକି ଉଡ଼ିଗଲା ତାଙ୍କ ନିଛାଟିଆପଣକୁ ଚମକେଇ ଦେଇ ।

ଭୃଗୁ ଦିନ ଗଣିବାକୁ ଲାଗିଲେ । ପ୍ରତୀକ୍ଷାରେ ବି ଗୋଟାଏ ସ୍ୱତନ୍ତ୍ର ଆନନ୍ଦ ଅଛି ।

ଡା. ସାମନ୍ତ କ୍ଲିନିକ୍ ବନ୍ଦ କଲେ । ବସାକୁ ଫେରିବା ବାଟରେ ସେ ସରମାଁଙ୍କ ସହତ କିଛି ସମୟ ବିତେଇ ଫେରନ୍ତି ଆଜି ବି ସେଇୟା ହେଲା ।

ଗାଡ଼ି ବ୍ରେକ୍ ଦେଲା ଜରାଶ୍ରମ ସାମ୍ନାରେ । ମନଟା ଉଷତ ଥିଲା । ଟିକିଏ ପୂର୍ବରୁ ଲକ୍ଷ୍ମୀ ଫୋନ୍ କରିଥିଲା ତ । ତା'ର ପରୀକ୍ଷା ସରିଯାଇଛି । ଖୁବ୍ ଭଲ ହେଇଛି ନିଶ୍ଚୟ, ତା' କଥାରେ ଆତ୍ମବିଶ୍ୱାସର ନିବିଡ଼ ସ୍ପର୍ଶ ଥିଲା । ନିଜ ମନ ବି ଖୁସି ହେଇଗଲା । ତା'ଖୁସିରେ । ଆସନ୍ତା ରବିବାର ସକାଳେ ସେ ଆସି ପହଞ୍ଚିବ । ଆଜି ଶୁକ୍ରବାର ।

ତା'ର ଅନ୍ୟ ବାନ୍ଧବୀମାନେ ସପିଂରେ ଯାଇଛନ୍ତି । ସେ କିନ୍ତୁ କୁଆଡ଼େ ଯାଇନି । ସେ ସବୁରେ ତାର ମତଲବ ନାହିଁ । ନିଜ ଜିନିଷପତ୍ର ପ୍ୟାକିଂରେ ଲାଗିଛି । କହିଲା ମୁହୂର୍ତ୍ତେ ବି ଏଠି ରହିବା ପାଇଁ ମନ ହେଉନି । ଆଶ୍ରମ ମନେ ପଡ଼ିଲାଣି । ଉଚ୍ଛନ୍ନ ଲାଗୁଛି । ଅନେକ ଦିନ ହେଲାଣି ବାପା, ବୋଉଙ୍କୁ ଦେଖିନି ରାଘବ ସାର୍, ଅଭୟାମାଁ, ସରମାଁ, ରାଣୀ ଆଈ, ରାଜୁମାମୁ ହେରିକା ମନେ ପଡ଼ିଲେଣି । ସୁଲତା ମାଉସୀ ଉପରେ ଅନେକ କାମ ପଡୁଥିବ । ପଢ଼ାପଢ଼ି ନିଶାରେ ସେମାନଙ୍କ କଥା ପୂରାପୂରି ଭୁଲିଯାଇଛି ଦୋଷୀ ଲାଗୁଛି ନିଜକୁ । ସେଇମାନଙ୍କ ଶୁଭେଚ୍ଛା ସହଯୋଗରେ ତ ଏଯାଏଁ ମୁଁ ଆସିଛି ନା, "ଲକ୍ଷ୍ମୀର କଥାରେ କଥାରେ ଋଣୀ ଥିବାର ସ୍ୱୀକାରୋକ୍ତି ଫୁଟି ଉଠୁଥିଲା । ସେଥିରେ ଚିମୁଟାଏ ବି ସ୍ୱାର୍ଥର ଗନ୍ଧ ନ ଥିଲା । କର୍ତ୍ତବ୍ୟ, ଦାୟିତ୍ୱ ଆଉ କୃତଜ୍ଞତାର ବୋଝରେ ସେ ଯେମିତି ନଇଁ ପଡୁଥିଲା ।"

ସେ ହଠାତ୍ ପଚାରିଲେ - "ଆଉ କେହି ମନେ ପଡୁନି ?"

- 'ମାନେ ?' "ମାନେ... ? ଆଉ କିଏ ବି ଥାଇପାରେ ତୁମ ଅପେକ୍ଷାରେ..." ।

ବୁଝିପାରିଲା ଲକ୍ଷ୍ମୀ ଭୃଗୁ ସାମନ୍ତଙ୍କ କଥାର ବ୍ୟଞ୍ଜନା । ମୁହୂର୍ତ୍ତେ ନୀରବ ରହିଗଲା ମନେ ମନେ ଭାବିଲା କିମିତି କହିବି ଯେ..... ସବୁ କଥା କ'ଣ କହିହୁଏ ସହଜରେ.... ।

ସେ ପୁଣି ପଚାରିଲେ କିଛି କହୁନ ଯେ ?

"ମୁଁ ଗଲେ କହିବି ଏବେ ରଖୁଛି ।ଫୋନ୍ ରଖିଦେଲା ।ବ୍ରୀଡ଼ାବତୀ ପ୍ରିୟତମା । ତା' ଲାଜୁଆ ମୁହଁକୁ ସେ ମନର ଆଖିରେ ଠିକ୍ ଦେଖିପାରୁଥିଲେ । ସେତିକିବେଳୁ ମନ ଶିମୂଳୀ ତୂଳା ଭଳି ଉଡୁଛି ଉଲ୍ଲାସରେ । ସତରେ ଯେତିକି ସରଳ ସେତିକି ବୋକା ଝିଅ ।

ସରମାଁ ତାଙ୍କୁ ହିଁ ଅପେକ୍ଷା କରି ଠିଆ ହେଉଥିଲେ ବାରଣ୍ଡାରେ । ତାଙ୍କ ସହିତ ଏଣ୍ଟେଟେଣ୍ଟ ଅନେକ କଥା ଗପିଲେ ହାତଘଣ୍ଟାକୁ ଚାହିଁଲେ, ସରମାଁଙ୍କର ଔଷଧ ଖାଇବା ବେଳ ହେଇଗଲାଣି । ଔଷଧ ଦେଇସାରି ଯିବା ପାଇଁ ଉଠିଲେ ।

ହଠାତ୍ ମନେପଡ଼ିଗଲା, ଲକ୍ଷ୍ମୀର ଫେରିବା ଖବରଟା ହେମଲତାକୁ ଜଣେଇଦେବା ପାଇଁ କହିଥିଲା ଲକ୍ଷ୍ମୀ । ଯାଉ ଯାଉ ଟିକିଏ ମୋଡ଼ ନେଲେ କେଶବା ରୁମ୍ ଆଡ଼କୁ । କେଶବା ସ୍ୱାସ୍ଥ୍ୟ କଥା ବି ବୁଝିନେବେ । ପରଦା ଝୁଲୁଥିଲା । ଭିତରେ ବୋଧେ ହେମଲତା ବି ଥିଲା । କ୍ଷୀଣ ହେଲେ ବି କଥା ଶୁଭୁଥିଲା । ଦୁହେଁ ନିଶ୍ଚୟ କିଛି ଗୋଟାଏ ଗମ୍ଭୀର ଆଲୋଚନା କରୁଥିଲେ । ଲକ୍ଷ୍ମୀ କଥା ? ? ତାଙ୍କର ଯିବା ଉଚିତ୍ ହେବ କି ନାହିଁ ଭାବି, ମୂହୂର୍ତ୍ତେ ଠିଆ ହେଇଗଲେ, କବାଟ ଠକ୍‌ଠକ୍ କରିବା ଆଗରୁ । ଅବ୍ୟବସ୍ଥିତ ସ୍ଥିତି ଭିତରେ ସେ କିଛି ଠିକ୍ କରିପାରୁନଥିଲେ । କିଛି କିଛି କଥା କାନରେ ପଡୁଥିଲା, ଲକ୍ଷ୍ମୀ କଥା ନିଶ୍ଚୟ !

ରବିବାର ସକାଳ । ଟ୍ରେନ୍ ଆସି ଷ୍ଟେସନ୍‌ରେ ପହଞ୍ଚିଲା ଯଥା ସମୟରେ । ଲକ୍ଷ୍ମୀ ନିଜ ଜିନିଷପତ୍ର ଏକାଠି କରିସାରି ଝରକା ଦେଇ ବାହାରକୁ ଚାହିଁଲା । ଯାତ୍ରୀଙ୍କ ଭିଡ଼ ଭିତରେ ରାଘବ ସାର୍, ଅଲେଖ ଓ ସୁକାନ୍ତ ଠିଆ ହେଇ ନିର୍ଦ୍ଦିଷ୍ଟ ବଗିଆଡ଼କୁ ଖୋଜିଲା ଦୃଷ୍ଟିରେ ଚାହିଁଥିଲେ । ଲକ୍ଷ୍ମୀ ହାତ ହଲେଇ ସଂକେତ କଲା ଏବଂ ନିଜେ ବାଂଧବୀମାନଙ୍କ ସହିତ ଓହ୍ଲେଇ ପଡ଼ିଲା ପ୍ଲାଟ୍‌ଫର୍ମକୁ । ଅଲେଖ ଓ ସୁକାନ୍ତ ପ୍ରଣାମ କରି ଜିନିଷପତ୍ର ଓହ୍ଲେଇବାରେ ଲାଗିଗଲେ ।

ଲକ୍ଷ୍ମୀ ବାଂଧବୀମାନଙ୍କଠୁଁ ବିଦାୟ ନେଇ ରାଘବସାର୍‌ଙ୍କୁ ପ୍ରଣାମ କରୁ କରୁ ତା'ର ଆଖି ଆଉ କାହାକୁ ଯିମିତି ଖୋଜିଗଲା । ରାଘବବାବୁ ବୁଝିପାରି କହିଲେ, ନା'ରେ ଆଉ କେହି ଆସିପାରିଲେନି ନା ହେମ, ନା ଅଭୟା । ଏମିତିକି ଡା. ସାମନ୍ତ ବି ।

କାଲି ହଠାତ୍ କୌଣସି ଏକ ଜରୁରୀ କାମରେ ତାଙ୍କୁ ଓଡ଼ିଶା ବାହାରକୁ ଯିବାକୁ ପଡ଼ିଲା ବୋଲି ବିଜୁ ଆସି ଖବର ଦେଲା । ଆମେ ଟ୍ୟାକ୍ସି ନେଇ ଷ୍ଟେସନ୍ ଆସିଲୁ । ଚାଲ ଯିବା ଆମେ ଏଥର । ବସାକୁ ଗଲେ ଆରାମରେ କଥାବାର୍ତ୍ତା ହେବା । ଏତେ ଲମ୍ୱାରାସ୍ତା କ୍ଳାନ୍ତ ହେଇପଡ଼ିଥିବୁ ଖାଇପି' ଟିକେ ବିଶ୍ରାମ ନେଲେ, ଭଲ ଲାଗିବ ।

ରାଘବବାବୁ କଥା ସାରିଲେ ଅଲେଖ ସୁକାନ୍ତ ଜିନିଷ ଗାଡ଼ିରେ ରଖି ସାରିଥିଲେ । ସମସ୍ତେ ଗାଡ଼ିରେ ବସିଲେ ଆଶ୍ରମ ଅଭିମୁଖେ । ବାଟରେ ରାଘବବାବୁ ପରୀକ୍ଷା କଥା ଟିକିଏ ପଚାରିଲେ "କିମିତି ହେଇଛି ?" ଅବଶ୍ୟ ମୁଁ ଜାଣେ ତୁ ଭଲ କରିଥିବୁ, ତଥାପି..... "ଭଲ ହେଇଛି" । ସଂକ୍ଷିପ୍ତ ଉତର ଦେଇ ଲକ୍ଷ୍ମୀ ଆଉ ସମସ୍ତଙ୍କ କଥା ପଚାରିଲା । ତେବେ ମନ ତା'ର ଯେ ପ୍ରିୟମଣିଷଟିକୁ ଖୋଜି ବୁଲୁଥିଲା ଏଥିରେ ସଂଦେହ ନାହିଁ ।

ଏମିତି କ'ଣ ଜରୁରୀ କାମ ପଡ଼ିଲା ଯେ ଦିନଟିଏ ବି ଅପେକ୍ଷା କରିବା ସମ୍ଭବ ହେଲାନି । କାହିଁ ଫୋନ୍‌ରେ ତ ସେଭଳି କିଛି ସମ୍ଭାବନାର କଥା କହୁନଥିଲେ । ତା'ଛଡ଼ା, ଗଲି ବୋଲି ବି ତ ସେ ଫୋନ୍‌ଟିଏ କରିପାରିଥାନ୍ତେ..... ସଂଶୟର ଦୋଳାରେ ଝୁଲିବାକୁ ଆରମ୍ଭ କଲା ଲକ୍ଷ୍ମୀ । ତେବେ ସଠିକ୍ ଖବର ବିଜୁପାଖରୁ ହିଁ ସେ ପାଇବ ଠିକ୍ ସମୟରେ । ଭୃଗୁ ଏଭଳି ଭୁଲ୍ କେବେ କରିବେନି, ନିଶ୍ଚୟ କିଛି ଅସୁବିଧା ହେଇଛି । ଏ କଥା ଭାବୁ ଭାବୁ ମନ ତାର ଅସ୍ଥିର ହେଇ ଉଠିଲା, ଏବଂ ଭାବିଲା କେଡ଼େ ବିଚିତ୍ର ଏଇ ମନଟା ବି ସବୁବେଳେ ଆପଣା ମଣିଷ ପାଇଁ ଅଶୁଭ କଥା ହିଁ ଭାବି ହେଇଯାଏ । ଗାଡ଼ି ଆଶ୍ରମ ସାମ୍ନାରେ ବ୍ରେକ୍ ଦେଲା - ଗେଟ୍ ପାଖରେ ସୁଲତା, ହେମଲତା ଏବଂ ଆହୁରି ଅନେକ ତାଙ୍କୁ ଅପେକ୍ଷା କରିଥିଲେ । ମୁହୂର୍ତ୍ତର ଆନନ୍ଦ ଉଲ୍ଲାସ ଭିତରେ ମାଡ଼ି ଆସୁଥିବା ସଂଶୟର ବାଦଲ ଫାଟିଗଲା । ଏବଂ ଲକ୍ଷ୍ମୀ ପ୍ରଥମେ ବାପାଙ୍କୁ ଯାଇ ପ୍ରଣାମ କରି ସ୍ୱାସ୍ଥ୍ୟ ସଂପର୍କିତ ସବୁକଥା ବୁଝିନେଲା । ଆଶ୍ରମର ଚାରିଆଡ଼େ ଥରେ ବୁଲିଆସି ସମସ୍ତଙ୍କୁ ସଂଖୋଳି ସାରିଲା ପରେ, ନିଜ ରୁମ୍ ଭିତରକୁ ପଶିଲା ପୋଷାକ ବଦଳେଇବାକୁ ।

ସେ ଗାଧୁଆଘର ଭିତରେ ପଶି ସାୱାର୍‌ଟା ଖୋଲିଦେଲା । ଅଜାଡ଼ି ହେଇ ପଡ଼ିଲା ପାଣିର ବର୍ଷା । ଆଃ !! କି ଶାନ୍ତି !! ମନ ପୂରେଇ ଗାଧେଇ ସାରିଲା ବେଳକୁ ସୁଲତା ମାଉସୀର ଡାକ ଶୁଭିଲା, 'ଶୀଘ୍ର ଆସ ଲକ୍ଷ୍ମୀ ତଳକୁ, ବୋଉ ଜଳଖିଆ ଧରି ଅପେକ୍ଷା କରିଛି; ଥଣ୍ଡା ହେଇଯିବ ।"

"ଯାଉଛି ମାଉସୀ, ସରମାଁଙ୍କୁ ଟିକିଏ ଦେଖା କରିଦେଇ ଯାଉଛି..... ।"

ଲକ୍ଷ୍ମୀକୁ ଦେଖୁ ଦେଖୁ ଖୁସି ହେଇଗଲେ ସରସ୍ୱତୀ । ସତେ ଯେମିତି ତାଙ୍କୁ କୋଟିନିଧି ମିଳିଗଲା । ତାକୁ କୋଳେଇ ଧରି ବୃଦ୍ଧେ କାନ୍ଦି ପକେଇଲେ ଖୁସିରେ- "କେତେଦିନ, କେତେ ଯୁଗ ହେଲା ତୋତେ ଦେଖିନଥିଲି କହିଲୁ ତୁ କୁଆଡ଼େ ଯାଇଥିଲୁ ?" ରୁଦ୍ଧ ଅଭିମାନ ଅଭିଯୋଗର ରୂପ ନେଇ ଠିଆ ହେଲା..... "ଜାଣିଛୁ, କେହି ମୋ କଥା ବୁଝୁ ନ ଥିଲେ । କୁଆଡ଼େ ଯିବାକୁ ଦେଉନଥିଲେ..... । ତୁ କୁଆଡ଼େ ଯାଇଥିଲୁ..... ହଜିଯାଇଥିଲୁ ? "ପରୀକ୍ଷା ଦେବାକୁ ଯାଇଥିଲି ପରା । ହେଲେ, ତମକଥା

କିଏ ବୁଝୁନଥିଲା, ଡାକ୍ତରବାବୁ ପରା ଥିଲେ... ତମ ପୁଅ ? କଣ୍ଠରେ ଆନ୍ତରିକତାର ସ୍ପର୍ଶ ଦେଇ ଲକ୍ଷ୍ମୀ ପଚାରିଲା ଅବୋଧ ଶିଶୁକୁ ପଚାରିଲା ଭଳି ।

"କାହିଁ ମୋ ପୁଅ କାହିଁ ? ସିଏ ତ ମୋତେ ଛାଡ଼ି କୁଆଡ଼େ ଯାଇଛି ଯେ ଯାଇଛି ଅନେକ ଦିନ ହେଇଗଲାଣି । ମୁଁ ଆଉ କେବେ ଯିବି ଘରକୁ ? ତା' ବାଟକୁ ମୁଁ ଚାହିଁ ବସିଛି... ।"

"ତମେ କୁଆଡ଼େ ଯିବନି । ମୁଁ ତ ଅଛି ଏଠି, ଆଉ ଅସୁବିଧା ନାହିଁ । ଡାକ୍ତରବାବୁଙ୍କ କାମ ସରିଲେ, ସେ ଆସିଯିବେନି ? ଆମେ ପରା ଚାକିରି କରିଛୁ....." ବୁଝେଇବାକୁ ଚାହିଁଲା ଲକ୍ଷ୍ମୀ । ହେଲେ ତାଙ୍କର ସେଇ ଗୋଟିଏ ଅଝଟ..... କେବେ ଆସିବ ମୋ ପୁଅ ? ବିକଳ ହେଇଗଲା ଲକ୍ଷ୍ମୀର ମନ, ମାଁ ଆଉ ସନ୍ତାନର ସଂପର୍କ ହିଁ ଏମିତି ସିଏ ଯିଏ ହେଉ, ସବୁ ଚେତନ ପ୍ରାଣୀ ଭିତରେ ବଳବତ୍ତର ହେଇ ରହିଛି ଏଇ ମମତା । ଏଇ ଅଛିଣ୍ଡା ମମତାର ସମତୁଲ କିଛି ନାହିଁ, କି କେହି ନାହିଁ । ଏଇ ସଂପର୍କ, ପର ଅପର ବୁଝେନା । ଆହା !! ସନ୍ତାନହରା ମା'କୁ ସେ କେମିତି କଣ ବୁଝେଇବ.... କୋଉ ଭାଷାରେ ! କହିଲା, ସରମାଁ, ମୋତେ ଭାରି ଭୋକ ହେଲାଣି, ମୁଁ ଜଳଖିଆ ନେଇ ଆସେ, ଦୁହେଁ ମିଶି ଖାଇବା..... । "ତୋତେ ଭୋକ ଲାଗୁଛି... ମୋତେ କହୁନୁ.... ଯା' ଯା' ଖାଇବୁ ଶୀଘ୍ର... କଥା ଭୁଲିଗଲେ ସରସ୍ୱତୀ, ମୁଁ ଶୋଇଛି । ତୁ ଯା' ଖାଇଆସିବୁ... କହୁ କହୁ ନିଜେ ଶୋଇପଡ଼ିଲେ ବିଛଣାରେ ସୁନାପିଲା ପରି । ଏଇ ମଉକାରେ ଲକ୍ଷ୍ମୀ ତଳକୁ ଗଲା ଖାଇବା ପାଇଁ । ସତରେ ତାକୁ ଭୋକ ଲାଗୁଥିଲା ।

ସନ୍ଧ୍ୟାବେଳକୁ ବିଳୁ ଆସିଲା ସରମାଁଙ୍କ ପାଖକୁ । ଯେମିତି ଡା. ସାମନ୍ତ ଆସୁଥିଲେ, ଠିକ୍ ସେମିତି । ରାତିର ଔଷଧ ଖୁଆଇ ଫେରିଯାଉଥିଲେ । ବିଳୁ ବି ନିଜ ସମୟ ନିର୍ଘଣ୍ଟକୁ ସେଇ ପ୍ରକାରେ ସଜାଡ଼ି ଥିଲା ଦାୟିତ୍ୱ ତୁଲାଇବାକୁ । ଉଦ୍ଦେଶ୍ୟ ଥିଲା, ଯେମିତି ସରମାଁଙ୍କ ସମ୍ବେଦନଶୀଳ ମନ କୌଣସି ପ୍ରକାରେ ଆଘାତ ନ ପାଏ । ଅନ୍ତତଃ ଇଷ୍ଟ୍ରୀ ଦେଇ ଫେରିବା ପର୍ଯ୍ୟନ୍ତ । ତା'ଛଡ଼ା ଏଇ ଗତ କିଛିଦିନ ସରମାଁଙ୍କ ସହିତ ଏକାଠି କଟେଇଲା ପରେ, ଗୋଟାଏ ମାୟା ଆସିଯାଇଥିଲା ତାଙ୍କ ପାଇଁ । ଥରେ ସେଇ ମମତାର ବନ୍ଧନରେ ବାନ୍ଧି ହୋଇଗଲା ପରେ ତାକୁ କଟେଇବା ଭାରି କଷ୍ଟକର ।

ଆଜି ତ ଦେଇ ଆସିବାର ଥିଲା, ନିଶ୍ଚୟ ଫେରିଥିବେ । ତାଙ୍କୁ ଦେଖାକରିବା ପାଇଁ ମନ ଅଥୟ ହେଲାଣି ବି । ହାତରେ କିଛି କାମ ନାହିଁ ବରଂ ଟିକିଏ ଆଗରୁ ଯାଇ କାହା କାମରେ ଟିକିଏ ହାତବଢ଼େଇ ଦେବ । ଏଇୟା ଭାବି ବିଳୁ ସାଇକେଲ୍‌କୁ ଜରାଶ୍ରମ ଆଡ଼କୁ ମୁହାଁଇଲା ।

ଆଶ୍ରମରେ ପହଞ୍ଚିଲା ବେଳକୁ ଚାରି ବାଜି ନଥିଲା । ଅଫିସ୍‌ରେ ସୁକାନ୍ତ ବସି କାମ କରୁଥିଲା । ବିଳୁକୁ ଦେଖି ଡାକିଲା, ଆରେ ବିଳୁ ଆଜି ଶୀଘ୍ର କିମିତି, ଆ'

ଭିତରକୁ "ହାତରେ କାମ ନଥିଲା, ତା ଛଡ଼ା ଆଜି ଦେଇଙ୍କର ଆସିବାର ଥିଲା ନା.... ବିଜୁ ଖବର ଜାଣିବାକୁ ଚାହିଁଲା । "ହଁ, ଆସିଯାଇଛନ୍ତି । ସେଇଥିପାଇଁ ତ କାଗଜପତ୍ର କାମ ସାରୁଛି । ରାଘବସାର୍ କହୁଁଛନ୍ତି, ଦେଇଙ୍କୁ ତାଙ୍କର ଦାୟିତ୍ୱ ଠିକ୍‌ଠାକ୍ କରି ବୁଝିଦେବାପାଇଁ । ବିଶ୍ରାମ ନେଉଛନ୍ତି ଦେଇ, ତୁ ଟିକିଏ ବସିନା' ମୋ ପାଖରେ । ମୋ କାମ ସରିନି ଆହୁରି ।" "ଖାଲି ବସିବି କାହିଁକି ଭାଇ, କୁହ, ତମକୁ କ'ଣ ସାହାଯ୍ୟ କରିପାରିବି ଯଦି.... ।"

ଦୁହେଁ ମିଶି ଅଫିସର୍ କାଗଜପତ୍ର ସଜାଡ଼ିବାରେ ଲାଗିଲେ। ସନ୍ଧ୍ୟା ଛ'ଟା ।

ଲକ୍ଷ୍ମୀର ନିଦ ଭାଙ୍ଗିଲା । ବିଗତ ଦିନମାନଙ୍କର କ୍ଳାନ୍ତି ଯିମିତି ଏଇ ଟିକକ ନିଦରେ କୁଆଡ଼େ ଉଭେଇଗଲା । ଉଠିବସିଲା ବିଛଣାରୁ । ପାଣି ଗ୍ଲାସେ ପିଇସାରି ନିଜକୁ ସତେଜ ଅନୁଭବ କଲା । ମନେପଡ଼ିଲା ନିଜ ଦାୟିତ୍ୱ । ମାସେ ହେଇଗଲା ସେ ନଥିଲା । ଅନେକ କାମ ଜମି ଯାଇଥିବ । ଅବଶ୍ୟ ସାର୍ ଥିଲେ ସବୁକଥା ବୁଝୁଥିଲେ । ତଥାପି.... ସେ ସୁକାନ୍ତକୁ କହିଥିଲା ଅଫିସ୍ କାମର ଦାୟିତ୍ୱ ନେବ ଏଥର । ହୁଏତ ସୁକାନ୍ତ କାମ କରୁଥିବ ଅଫିସ୍‌ରେ । ସେ ନିଜେ ଯିବ ଅଫିସ୍‌କୁ । ଚାଲ... ଚାଲ... ହେଇ ଅଫିସ୍ ଆଡ଼କୁ ଚାଲିଲା ଲକ୍ଷ୍ମୀ ।

"ବିଜୁ!! ହଠାତ୍ ଅଫିସ୍ ଭିତରେ ପଶୁ ପଶୁ ବିଜୁକୁ ଦେଖି ଖୁସି ହେଇଗଲା । ମନ ଦର୍ପଣରେ ଉକୁଟି ଉଠିଲା ପ୍ରିୟ ମଣିଷଟିର ମୁହଁ । ବିଜୁ ନମସ୍କାର ଜଣେଇ ଚଉକି ଛାଡ଼ିଦେଲା । ଛୋଟମୋଟ ଭଲ ମନ୍ଦର ଖବର ପଚାରି ବୁଝୁବୁଝୁ କଥା ପହଞ୍ଚିଲା ଡା. ସାମନ୍ତଙ୍କଠି ।

ନିଜମନର ବ୍ୟଗ୍ରତାକୁ ଯଥାସମ୍ଭ ସ୍ଥିର ରଖି ଡ.ସାମନ୍ତଙ୍କ ଫେରିବା କଥା ପଚାରିଲା । "କ'ଣ କିଛି ଜରୁରୀ କାମ ପଡ଼ିଲା, କୁଆଡ଼େ ଯାଇଛନ୍ତି ଡାକ୍ତରବାବୁ ? ଫେରିବେ କେଉଦିନ....." ବିଜୁ ସଂକ୍ଷିପ୍ତରେ କହିଲା, "କିଛି କହିଯାଇନାହାନ୍ତି ଭାଇ । ପରେ ଜଣେଇବି ବୋଲି ସେ'ଦିନ ସକାଳୁ ସକାଳୁ ଚାଲିଗଲେ ଫ୍ଲାଇଟ୍ ଧରିବାକୁ ।"

ତା' ଆଗଦିନ ସନ୍ଧ୍ୟାରେ ଏଠିକୁ ଆସିଥିଲେ ମା'ଙ୍କ ପାଖକୁ ଫେରିଲାବେଳେ ତାଙ୍କ ମୁହଁ ଶୁଖିଲା ଦିଶୁଥିଲା - ଚିନ୍ତିତ ଥିଲେ । ମୁଁ ପଚାରିଥିଲି ମଧ- "ଦେହ ଭଲ ଲାଗୁନି କି ?" କହିଲେ 'ଠିକ୍ ଅଛି ।' ଭାବିଲି କୌଣସି ରୋଗୀକୁ ନେଇଁ ବ୍ୟସ୍ତ ଥିବେ । ସେଇ ରାତିରେ ବି ସେ ଡେରିରେ ଶୋଇଥିଲେ । ଅନେକ ରାତି ହେଇଯାଇଥିଲା, ଶୋଇବା ପାଇଁ କହି ମୁଁ ଶୋଇବାକୁ ଚାଲିଗଲି । ସକାଳୁ ମୁଁ ଉଠି ଦେଖେ ତ ସେ ଯିବା ପାଇଁ ପ୍ରସ୍ତୁତ ହେଉଛନ୍ତି । ଜଳଖିଆ ଖାଇବାକୁ ଚାହିଁଲେନି । କଫି କପେ ଖାଇ ବାହାରିଗଲେ ।

ଗଲାବେଳେ କେବଳ ଏତିକି କହିଲେ ଯେ, ସରମାଁଙ୍କୁ ସବୁଦିନେ ଯାଇ ଦେଖାକରିବୁ । ଲକ୍ଷ୍ମୀଦେଈ ଫେରିଲା ପରେ ତୋର ଦାୟିତ୍ୱ ସରିବ । ତାଙ୍କୁ ଠିକ୍ ସମୟରେ ଔଷଧ ଖୁଆଇବାକୁ ଯିମିତି ନ ଭୁଲୁ । ମୁଁ ଗଲାପରେ ଜଣେଇବି । ସମୟ ହେଇଗଲାଣି ଏବେ, ଯିବାକୁ ହେବ ଶୀଘ୍ର । ବାସ୍ । ତିନିଦିନ ହେଇଗଲାଣି କିଛି ଖବର ଦେଇନାହାନ୍ତି କାହା ପାଖକୁ । ଏମିତିକି ରାଘବ ସାର୍‌ଙ୍କୁ ବି । ସେ ଯିବା ଖବର ଜଣେଇ ଦେବାକୁ କହିଥିଲେ ସାର୍‌ଙ୍କୁ ମୁଁ ଜଣେଇ ଦେଇଥିଲି ।

"ତୁ ଫୋନ୍‌କରି ବୁଝିନୁ ?" ଲକ୍ଷ୍ମୀ ପ୍ରଶ୍ନ କଲା । ନା, ପଚାରିନି ଦେଈ । ସିଏ ତ ଫୋନ୍ କରନ୍ତି ସବୁବେଳେ । କହିଲା ବିଜୁ । "ହୁଏତ ବ୍ୟସ୍ତ ଥିବେ ଆଜି କରିପାରନ୍ତି ।" ଠିକ୍ ଅଛି, ମୁଁ ପଚାରି ବୁଝିନେବି ଆଜି ରାତିରେ ।

ଏତିକିବେଳକୁ ରାଘବ ବାବୁ ଆସି ପହଞ୍ଚିଲେ । ଲକ୍ଷ୍ମୀ ଅଭୟା ମା'ଙ୍କୁ ଖୋଜିଲା । ରାଘବବାବୁ ବିଷଣ୍ଣ ଗଳାରେ କହିଲେ, ନା, ରେ ମା' ଆଜିକାଲି ସେ କିମିତି ଉଦାସ ରହୁଛନ୍ତି ସବୁବେଳେ । କୌଣସି କଥାରେ ତାଙ୍କର ସ୍ପୃହା ନାହିଁ କି ଉତ୍ସାହ ନାହିଁ । ମୁଁ ଡାକିଥିଲି, ଚାଲ ଯିବା ଆଶ୍ରମ ଆଡ଼େ, ଲକ୍ଷ୍ମୀ ଫେରିଲାଣି, ସମସ୍ତଙ୍କ ସହିତ ଦେଖାହେବ । କଥାବାର୍ତ୍ତା ହେବ ଭଲ ଲାଗିବ ଟିକିଏ ଚାଲ । ନା, ଆଜି ନୁହଁ ମୁଣ୍ଡଟା ଓଜନିଆ ଲାଗୁଛି ବୋଲି ମୋ କଥାକୁ ଆଡ଼େଇ ଦେଲେ ।

"ମୁଁ ନିଜେ ଯିବି ତାଙ୍କ ପାଖକୁ ଆଜି ଆପଣଙ୍କ ସାଂଗରେ କହିଲା ଲକ୍ଷ୍ମୀ । ସୁଲତା ଚା' ଦେଇଗଲା । ଖାଉ ଖାଉ ଅଫିସ୍ କଥା ବୁଝେଇ ଦେଲେ ସେ ଲକ୍ଷ୍ମୀକୁ । ଡା. ସାମନ୍ତଙ୍କ କଥା ପଡ଼ିଲା । ବିଜୁ ପାଖରୁ ଶୁଣିଥିବା ଖବର ଜଣେଇଲା ଲକ୍ଷ୍ମୀ ସାର୍‌ଙ୍କୁ । ସାର୍ କହିଲେ, ମୁଁ ଫୋନ୍ କରିବି ସେ - କେବେ ଫେରୁଛନ୍ତି । ଅଫିସ୍ କାମ ସାରି ଲକ୍ଷ୍ମୀ ବୋଉକୁ କହିଲା ବୋଉ ମୁଁ ଟିକିଏ ଅଭୟା ମା'ଙ୍କ ସହିତ ଦେଖାକରି ଆସିବି ଅଙ୍କୋଳକୁ ନେଇଁ ଯାଉଛି ସାଂଗରେ ଫେରିଲାବେଳେ ତା ସାଂଗରେ ଫେରିବି ତୁ ବ୍ୟସ୍ତ ହେବୁନି ।"

"ହେଉ ତୁ ଯା', ଅନେକ ଦିନ ହେଲାଣି ସେ ଆସିନାହାନ୍ତି ବି । ମନେ ମନେ ଭାବିଲା, ସେଇ ଯୋଉ ଆସିଥିଲେ ଆର୍ଯ୍ୟବାବୁଙ୍କ ବାହାଘର କଥା କହିବାକୁ ବାସ୍, ସେଇଦିନରୁ କିଛି ଖବର ନାହିଁ ଆଉ । ସେ ବି ଆସି ନାହାନ୍ତି । ଏଥର ସେ ଲକ୍ଷ୍ମୀକୁ ପଚାରିବ । ତାର ଆର୍ଯ୍ୟବାବୁଙ୍କ ପ୍ରସ୍ତାବରେ ସମ୍ମତି ଅଛି କି ନାହିଁ - ଅଭୟା ମାଁଙ୍କୁ ତ ଜଣେଇବାକୁ ହେବ - ଏଥର ସେ ନିଶ୍ଚୟ ଏକଥା ଉଠେଇବେ । ହେମ ଟିକିଏ ଚିନ୍ତାରେ ପଡ଼ିଲା କେମିତି କହିବ ଲକ୍ଷ୍ମୀକୁ ଏକଥା !

ଲକ୍ଷ୍ମୀର ଫେରୁ ଫେରୁ ରାତି ଟିକିଏ ବେଶୀ ହେଇଯାଇଥିଲା । ହେମ ମନ ଛକପକ କରୁଥିଲା । ଅଭୟା ମାଁ ବ'ଣ କିଛି କହିଲେ କି ଏଇ ବାହାଘର ନେଇ । କିଏ

ଚିହ୍ନୁ କି ନ ଚିହ୍ନୁ, ସେ ତ ଚିହ୍ନିଛି ତା' ଝିଅକୁ । ପାଟି ଖୋଲି କିଛି ସିନା କହିବନି ହେଲେ ମନରେ ଧରି ଘୋରତେ ପୋରତେଇ ହେବ । ମନ ମାରି ରହିବ ଦିନଦିନ । ଭଲ ଲାଗିବନି ତାକୁ ଝିଅର ଓ ଳିଆ ମେଘ ଭଳି ମୁହଁ ଦେଖିବାକୁ । ନିଜ ମନକଥା ସେ କଣ କେବେ କାହାକୁ କୁହେ!

ମନ ତାର ବୁଝୁ ନ ଥିଲା, ଥରେ ଦି'ଥର କେଶବା ପାଖକୁ ଯାଇ ବୁଲେଇ ବାଙ୍କେଇ କଥାଟାକୁ ନିଜ ବାଗରେ କହିଲା ବି । ବୁଝି ପାରିଲା କେଶବା ହେମର ଭାବନାକୁ । ଭରସା ଦେଲା, ତୁ ବ୍ୟସ୍ତ ହେଉଛୁ କାହିଁକି କହିଲୁ, ଆମ ଲକ୍ଷ୍ମୀ ଆଉ ପିଲା ହେଇନାହିଁ ମ.... ଏତେବଡ଼ ପରୀକ୍ଷା ଦେଇ ଆସିଲା, ଏବେ ସାରା ଦେଶକୁ କଲମ ମୁନରେ ଚଳେଇ ପାରିଲା ଭଳି ଯୋଗ୍ୟତା ତାର ଅଛି - କହୁନଥିଲେ ସେଦିନ ରାଘବବାବୁ ? ଅଭୟା ମାଁଙ୍କ କଥାକୁ ସେ ସମ୍ଭାଳି ନେବନି, ତୋର ଏତେ ଭାବନା ତା ପାଇଁ ! ଆସୁଥିବ ସେ ।

ସତକୁ ସତ କେଶବା ପାଟିର କଥା ସରିନି - ଲକ୍ଷ୍ମୀ ଆସି ପହଞ୍ଚିଲା । ବୋଉ ମୁହଁଟାକୁ ଦେଖୁ ଦେଖୁ ସେ ବୁଝିପାରିଲା, କହିଲା, ବ୍ୟସ୍ତ ହେଉଥିବୁ ତୁ ମୁଁ ଜାଣିଥିଲି । ହେଲେ ମୁଁ କଣ କରିଥାନ୍ତି ଯେ, ଅଭୟା ମାଁ ବାଧ କଲେ, ଏତେ ଦିନକେ ଆସିଛୁ ନଖାଇ କିମିତି ଯିବୁ । ତରବର ହେଇ ରୋଷେଇ ଆରମ୍ଭ କଲେ । ମୁଁ ସାହାଯ୍ୟ କଲି ତାଙ୍କୁ । ଖାଇସାରି ତ ଆସୁଛି ଅଳେଖ ମନା କଲା ଖାଇବାକୁ ।

ହେମ ପଚାରିଲା ମାଁଙ୍କ ଦେହ ଭଲଅଛି ତ, ଆଉ କିଛି କହୁଥିଲେ ? "ଦେହ ଭଲ ଅଛି । ହେଲେ ମନରେ କୋଉଠି ଯିମିତି ଦୁଃଖ ଅଛି । କେତେ ପଚାରିଲି କିଛି କହିଲେନି । ଆର୍ଯ୍ୟଭାଇଙ୍କ ପାଇଁ କିନ୍ତୁ ତାଙ୍କର ଅନେକ ଅଭିଯୋଗ । ମୁଁ ବୁଝେଇଲି ଚାକିରି କଲେଣି । ତାଙ୍କର ଅନେକ ଦାୟିତ୍ୱ । ସେ ତ ଆଉ ଫୁଲାଟାକିଆ ହେଇ ପାରିବେନି ।"

"ତା ସତ ଯେ, ମା' ମନ ତ ବୁଝୁନି, ବ୍ୟସ୍ତ ହେଉଛନ୍ତି ।" ଅବହେଳା କରୁଛି ବୋଲି ଭାବୁଛନ୍ତି - ହେମ କଥା ଯୋଡ଼ିଲା ।

"ବୋଉ ସରମାଁ ଖାଇଲେଣି ?" ଲକ୍ଷ୍ମୀ ପଚାରିଲା ।

"ତାଙ୍କର ସବୁ କାମ ମୁଁ ସାରିଦେଇଛି, ବିକୁ ଔଷଧ ଖୁଆଇ ଯାଇଛି, ସେ ଶୋଇଲେଣି । ତୁ ଏଥର ଯା ବିଶ୍ରାମ ନେବୁ" - ଲକ୍ଷ୍ମୀ ଉଠିଲା ଯିବାକୁ । ହଠାତ୍ ମନେପଡ଼ିଲା ପରି ପୁଣି ଠିଆ ହେଇ ପଚାରିଲା, ବୋଉ, ମୁଁ ବୁଝିପାରିଲିନି, ଅଭୟା ମାଁ କାହିଁକି କହିଲେ ଯେ, "ବୋଉ କିଛି କହୁଥିଲା କି ତୋତେ ଆର୍ଯ୍ୟ ବାହାଘର କଥା ?"

ମୁଁ ତ ମନା କଲି ତୁ ବି ତ କିଛି କହିନୁ- କୋଉ କଥା ବୋଉ ?

ସେ କିଛି ନୁହଁ..... ନିଜେ ବ୍ୟସ୍ତ ହେଉଛନ୍ତି ତ ପୁଅ ପାଇଁ..... ତୁ ଯା' ଶୋଇବୁ । ହେମ କଥା ବାଆଁରେଇଲା ଅନେକ ରାତି ହେଲାଣି ସେଇଆ ହେଉଥିବ - ହୁଏତ ଲକ୍ଷ୍ମୀ ବି ବିଶେଷ ଗୁରୁତ୍ୱ ନ ଦେଇ - ଉଠିଲା ଯିବା ପାଇଁ ।

ପୋଷାକ ବଦଳେଇ । ବିଛଣାକୁ ଯିବା ଆଗରୁ ସମୟ ଦେଖିଲା, ଦଶଟା ବାଜୁଛି । ତାକୁ ଫୋନ୍ କରିବାକୁ ହେବ । ଏଯାଏ ଡା. ସାମନ୍ତଙ୍କ ପାଖରୁ କୌଣସି ଫୋନ୍ କଲ୍ ଆସିଲାନି । ଘଟଣା କ'ଣ ଜାଣିପାରିଲାନି । ଏମିତି ତ ହେବାକଥା ନୁହେଁ । କ'ଣ ଏତେ ବ୍ୟସ୍ତ ଅଛନ୍ତି ? ? ନା ଦେହ ଖରାପ ? ସେ ନିଜ ବ୍ୟସ୍ତତାକୁ ପଛରେ ପକାଇ ନମ୍ବର ଡାଏଲ୍ କଲା ସୁଇଚ୍ ଅଫ୍ । ଥରେ, ଦି'ଥର ତିନିଥର ଡାଏଲ୍ କଲା, ନା, ରିଂ ହେଉନି । ସୁଇଚ୍ କାହିଁକି ଅଫ୍ କରିଛନ୍ତି ? ସକାଳୁ ପୁଣି ଚେଷ୍ଟା କରିବ ବୋଲି ଚିନ୍ତା କରି ଲକ୍ଷ୍ମୀ ଶୋଇବାକୁ ଚେଷ୍ଟା କଲା । ଯଦିଓ ତା' ମନ ଭିତରେ ଅନେକ ପ୍ରଶ୍ନବାଚୀର ଧାଡ଼ି ଲାଗି ଯାଇଥିଲା ।

ସକାଳୁ ଉଠି ଲକ୍ଷ୍ମୀ ଆହୁରି ଚାରି ଛ'ଥର ଚେଷ୍ଟା କଲା । ତେଣିକି ଫୋନ୍ ହିଁ ଲାଗିଲାନି । ଆଶ୍ଚର୍ଯ୍ୟ!! ଲକ୍ଷ୍ମୀ ହତାଶ ହେଲା । କ'ଣ ହେଲା ? କିଛି ଅଘଟଣ ଘଟିଛି ? ହେ ଭଗବାନ୍! ମନକୁ ପାପ ଛୁଇଁଲା । ସେ ଦିଲ୍ଲୀ ଫେରିବା ଆଗଦିନ ପର୍ଯ୍ୟନ୍ତ ସବୁ ତ ଠିକ୍‌ଠାକ୍ ଥିଲା । ତା' ଫେରିବା ବାଟକୁ ସେ ଚାହିଁ ବସିଛନ୍ତି ବୋଲି କହିଥିଲେ । ଅଥଚ... ଦିନକ ପରେ ଏମିତି କ'ଣ ଘଟଣା ଘଟିଲା ଯେ ପରିସ୍ଥିତିକୁ ଓଲଟ ପାଲଟ କରିଦେଲା! ସେ କିମିତି ଜାଣିବ, କିଏ କହିବ ତାକୁ- ଲକ୍ଷ୍ମୀ ଭିତରେ ସମୁଦ୍ରର ଉଦ୍‌ବେଳନ, ତା' ମନର ଭାବଭାବନାକୁ ସେ ବାହାରେ ପ୍ରକାଶ କରିପାରୁନଥିଲା କି ନିଜ ଭିତରେ ସମ୍ଭାଳି ପାରୁନଥିଲା । ସଙ୍କଟ ଭିତରେ ଓଜନିଆ ହେଇଯାଉଥିଲା ସେ ।

ସକାଳୁ ସକାଳୁ ବିଜୁ ଧାଇଁ ଆସିଲା, ଦେଇଙ୍କଠୁ ନିଶ୍ଚୟ କିଛି ଖବର ଜାଣିବ ବୋଲି - ରୋଗୀ କ୍ଲିନିକ୍‌ରେ ଡା. ସାମନ୍ତଙ୍କୁ ଖୋଜି ଘରକୁ ଆସୁଛନ୍ତି ତାଙ୍କର ଡାକ୍ତର ବଂଧୁମାନେ । କ'ଣ ସେ ଉତ୍ତର ଦେବ ସେମାନଙ୍କୁ ? ରାଘବବାବୁଙ୍କର ସେଇ ସ୍ଥିତି, ଫୋନ୍ ମୋଟେ ରିଂ ହେଉନି । ସମସ୍ତେ ହତାଶ । ସବୁଠୁ ବେଶୀ ସମସ୍ୟା ସୃଷ୍ଟି କଲା ସରମାଁଙ୍କୁ ସମ୍ଭାଳିବା ।

ହାତରେ ଆଉ କିଛି ବିକଳ୍ପ ବି ତ ନ ଥିଲା । ସଠିକ୍ ଠିକଣା ତ ସେ ଦେଇଯାଇ ନଥିଲେ କିଛି । ଜଣେ ଦାୟିତ୍ୱସଂପନ୍ନ ମଣିଷ ସେ । ତାଙ୍କଠୁ ଏଭଳି ଖାମଖିଆଲି ବ୍ୟବହାର ତ ଆଶା କରାଯାଏନା । ଦୁଃଖର ସହିତ ଟିପ୍ପଣୀ କରିଥିଲେ ରାଘବବାବୁ । କୌଣସି ବିଜ୍ଞ ଲୋକ ଏଭଳି କାମ କରେନି । ଏଇଭଳି ଖୋଜ ନେଉ ନେଉ ସପ୍ତାହେ

ଗଲା, ଦି' ସପ୍ତାହେ ଗଲା । ଏଥର ରାଘବ ବାବୁ ଭୃଗୁ ସାମନ୍ତଙ୍କ ଡାକ୍ତର ବଂଧୁମାନଙ୍କ ସାହାଯ୍ୟ ମାଗିଲେ । ଯଦି ସେମାନେ କୌଣସି ପ୍ରକାରେ ଖୋଜ ଲଗେଇ ପାରନ୍ତେ - ସେଥିରେ ବି ସଫଳତା ମିଳିଲାନି । ତଥାପି ପ୍ରୟାସ ଛାଡ଼ି ରଖିଥିଲେ ରାଘବବାବୁ । କିଛି ବଂଧୁ ପରାମର୍ଶ ଦେଲେ ଖବର କାଗଜରେ ଦେବା ଉଚିତ୍ ହେବ । ଏହା ହିଁ ଏକମାତ୍ର ପନ୍ଥା ।

ଲକ୍ଷ୍ମୀ ସିଧାସଳଖ ମନା କଲା । ନା, ହେଇପାରିବନି । ନିଜେ ରାଘବବାବୁ ବି ଚାହିଁଲେନି - ଏଭଳି କିଛି ତରବରିଆ ଭାବେ ବିଶେଷ ପଦକ୍ଷେପ ନେବା ପାଇଁ । ଏଥିରେ ବ୍ୟକ୍ତିତ୍ୱ ଏବଂ କ୍ୟାରିଅର୍‌ରେ ଆଞ୍ଚ ଆସିବ । ଏମିତିରେ ପରିସ୍ଥିତି ସେଭଳି କିଛି ସଙ୍ଗିନ୍ ହେଇନି - ଆଉ କିଛିଦିନ ଅପେକ୍ଷା କରାଯାଇପାରେ । ସମୟ ଦିଆଯାଉ ସମୟକୁ ସେ ହୁଏତ ସମାଧାନର ବାଟ ଖୋଜିଦେବ..... ।

ହେଲେ ସମୟ ଗଡ଼ି ଚାଲିଲା ନିଜ ବାଟରେ । ସମୟକୁ କି କିଏ କେବେ ଅଟକେଇ ପାରେ ? ମାସ ବି ପୂରିଲା.....

ଭୃଗୁ ସାମନ୍ତଙ୍କ ରକ୍ତ ସଂପର୍କୀୟ ବୋଲି କେହି ସେମିତି ଥିଲେ କି ଥିବେ, ସେ କଥା କାହାକୁ ଜଣା ନଥିଲା ସତ, ହେଲେ ସେ ନିଜେ ସଭିଙ୍କୁ ଆପଣା ଗୁଣରେ ବାନ୍ଧି ରଖିଥିଲେ, ଆପଣାର କରିଥିଲେ- ସମସ୍ତେ ତାଙ୍କୁ ଆତ୍ମୀୟ ବୋଲି ଭାବୁଥିଲେ । ଆଜି ତାଙ୍କର ଅନୁପସ୍ଥିତି ସଭିଙ୍କୁ କେବଳ ହତଚକିତ କରିନଥିଲା, ଦାରୁଣ ଆଘାତ ଦେଇଥିଲା ମଧ । ଏକା ପ୍ରଶ୍ନ ସଭିଙ୍କୁ ବ୍ୟସ୍ତ ବିବ୍ରତ କରିଦେଉଥିଲା - ଏମିତି କଣ ହେଲା, କାହିଁକି ହେଲା ଯେ, ଏକାବେଳକେ ଉଭାନ ହେଇଗଲା ସଜ ସତେଜ, ଜୀବନ୍ତ ମଣିଷଟା ! !

ଲକ୍ଷ୍ମୀ ତ ପଥର ପାଲଟି ଯାଇଥିଲା ନିଜ ଭିତରେ, କହି ନ ପାରିବାର ସହି ନ ପାରିବାର, ନିଜକୁ ବୁଝେଇ ନ ପାରିବାର କି ବୁଝି ନ ପାରିବାର ଅସହ୍ୟ ଅବ୍ୟକ୍ତ ଯନ୍ତ୍ରଣାରେ ସେ ଛଟପଟ ହେଉଥିଲା ଦିନରାତି । ନୀରବରେ ନିଜ ଅଦୃଶ୍ୟ ଭାଗ୍ୟକୁ ଦୋଷଦେବା ଛଡ଼ା ଆଉ କିଛି ବାଟ ନଥିଲା ତା' ପାଖରେ ।

ବସନ୍ତ ଆସୁ ଆସୁ ଫେରିଗଲା ମୁହଁ ଆଡ଼େଇ । ଉଲ୍ଲସିତ ଅନୁଢ଼ା କଳିକାମାନେ ଅଚାନକ ମଉଳିଗଲେ । ପୁଣି ମାଡ଼ିଆସିଲା ଅଂଧାରର କଳାବଉଦ ତା' ଜୀବନ ଆକାଶରେ । ଦିନର ଆଲୁଅକୁ ତ ସେ ଅସ୍ୱୀକାର କରିପାରୁନଥିଲା, କି କର୍ତ୍ତବ୍ୟରେ ଅବହେଳା କରିବା ତା'ର ସ୍ୱଭାବ ନଥିଲା । ତେଣୁ ସେ ନିଜ କାମ କରୁଥିଲା ସ୍ୱାଭାବିକ ଢଙ୍ଗରେ ସମସ୍ତେ ଜାଣିବାକୁ । ହେଲେ ସବୁ ଯନ୍ତ୍ର ଭଳି, ଏ ପର୍ଯ୍ୟନ୍ତ ଚାଲିଆସିଥିବା ଚଲାପଥ ତାର କେବେ ପୁଷ୍ପିତ ନଥିଲା । ପ୍ରତିରୋଧ ପ୍ରତିବଂଧକକୁ ସାମ୍ନା କରି ଆସିଥିବା ସେଇ ଲକ୍ଷ୍ମୀ କେବେ ହତାଶ ବି ହେଇନଥିଲା ବରଂ ଅସୀମ ଧୈର୍ଯ୍ୟ ଆଉ

ସାହସର ସହିତ ଅପେକ୍ଷା କରିଥିଲା ସେ ଆଲୁଅକୁ । ଅନ୍ଧାର ଘୁଞ୍ଚିବ ଦିନେ - ଏଇ ଆଶାରେ । ଅଥଚ..... ଆଜି ତା' ଭିତରଟା ଏମିତି ଜମାଟ ବାନ୍ଧିଯାଉଛି କାହିଁକି ? ସେ ବରଫ ପାଲଟି ଯାଉଛି - ନିଷ୍ପ୍ରାଣ ବରଫ ଖଣ୍ଡେ ଯେମିତି, ଆଗରୁ ତ କାହିଁ ଏମିତି ଅନୁଭବ ତାର ନଥିଲା, ତାହେଲେ କ'ଣ ସେ ମୁକ୍ତ ସ୍ୱାଧୀନ ଥିଲା ବୋଲି ? ନିଜ ପାଇଁ ନିଜେ ଥିଲା ବୋଲି ? ନିଜକୁ ପ୍ରଶ୍ନ କରିବାକୁ ଯାଇ ଲକ୍ଷ୍ମୀ, ମନର - ଅନ୍ୟ ଗଳିରେ ଯାଇ ହାବୁଡ଼େ । ସେଠି ଆଉ ଜଣେ ଠିଆ ହୋଇଛି - ଯାହା ସହିତ ସେ ନିଜକୁ ନିଜ ସୁଖଦୁଃଖ, ବର୍ଷା ବସନ୍ତକୁ, ନିଜ ଚିନ୍ତା ଚେତନାକୁ  ଭାବ ଅନୁଭବକୁ ଯୋଡ଼ି ଦେଇଛି ତାକୁ ନେଇ ତ ତା ଜୀବନ ଏବେ ଫଗୁଳ ଫଗୁଣର ମହୋତ୍ସବ ପାଲଟି ଯାଇଛି । ସେ ଏକା ନୁହେଁ ସେ 'ସେ' ହେଇ ଆଉ ନାହିଁ । ସେଇ ଜଣକର ଅବର୍ତ୍ତମାନ ହିଁ ତାକୁ ଅସ୍ଥିର ଅଥୟ କରି ତୋଳୁଛି । ସେ କ'ଣ କରିବ ଏବେ... ଭାବି ପାରେନା । ନିଜ ସହିତ ଯୁଦ୍ଧ କରୁକରୁ ସେ ପୁଣି ଅଂଧାରକୁ ଆପଣେଇ ନିଏ । ଘଣ୍ଟା ଘଣ୍ଟା ଧରି କଥା କୁହେ ତା' ସହିତ । ଯଥାସମ୍ଭବ ନିଜକୁ ଘୋଡ଼େଇ ରଖେ ଅନ୍ୟମାନଙ୍କ ଆଖିରୁ ।

ହେମଲତା ଲକ୍ଷ୍ୟ କରେ ଝିଅ ତା'ର କେମିତି ଅନ୍ୟମନସ୍କ ହେଇଯାଇଛି । ଖାଇବା, ପିନ୍ଧିବା, କଥା କହିବାରେ ସୁଖ ପାଉନି । ବ୍ୟସ୍ତ ହେଇ ସ୍ୱାମୀକୁ କୁହେ । କେଶବା ଆଦର କରି ପଚାରେ "କିଛି ଭାବୁଛୁ ମା', ପରୀକ୍ଷା ଫଳ ନେଇ ଚିନ୍ତା କରୁଛୁ- ମୁହଁ କାହିଁକି ଶୁଖିଯାଇଛି ?" ହସିଦିଏ ଲକ୍ଷ୍ମୀ ଉତ୍ତରରେ, ସେ ହସରେ ପ୍ରାଣ ନ ଥାଏ । ରାଣୀ ଆଈ ପଚାରେ ଥଟ୍ଟାରେ ଥଟ୍ଟାରେ, କୋଉଠି କାହାକୁ ହଜେଇ ଦେଇ ଆସିଛ କି, ମୁହଁ କାହିଁକି ନୀରସ ଦିଶୁଛି ? ରାଜୁ ପରିଡ଼ାଏ କୁହନ୍ତି, ପରୀକ୍ଷା ପାଇଁ ଦିନରାତି ପରିଶ୍ରମ କରି ଏକାବେଳକେ କଳା ପଡ଼ିଗଲା ଆମ ଲକ୍ଷ୍ମୀ । ସମସ୍ତଙ୍କ ଆଖିକୁ ଦିଶେ ତା'ର ଉଦାସ ଚେହେରା, ଉଦାସପଣ । ରାଘବବାବୁ କୁହନ୍ତି ଚାଲ ଘରଆଡ଼େ ବୁଲିଆସିବା ଟିକିଏ ଭଲ ଲାଗିବ - ଚିନ୍ତା କରନା ପରୀକ୍ଷା  ଫଳ ନେଇ । ଦିନେ ଦିନେ ସେ ସାଧୁବାବାଙ୍କ ପାଖକୁ ଯାଏ - ଠିଆ ହୋଇ ଶୁଣେ ତାଙ୍କ କଥା, ନିଜ ମନକୁ ଭୁଲେଇବାକୁ । ସମସ୍ତେ ତା ଉପର ଚେହେରାଟାକୁ ହିଁ ଦେଖନ୍ତି । ତା' ଭିତରକୁ ପଶି ପାରନ୍ତି ନାହିଁ । ସେ ପଶିବାକୁ ଦିଏନି । ହସିଦିଏ କେବଳ । ଦିନେ ଅଚାନକ ରାଘବବାବୁଙ୍କ ପରିବାରରେ ଅଭାବିତ ଘଟଣାଟିଏ ଘଟିଲା । ହଁ, ଘଟଣାଟି ଅବିଶ୍ୱାସ୍ୟ, ଅକଳ୍ପନୀୟ ଥିଲା ନିଶ୍ଚୟ । କେହି କେବେ ଭାବି ନଥିଲେ ଯେ, ଏଭଳି ଘଟଣା ଘଟିପାରେ, ବିଶେଷ କରି ଅଭୟା । ତାଙ୍କ ଦୀର୍ଘଦିନର ପୋଷିତ ଆଶା ଆଉ ବିଶ୍ୱାସର ଭିତିଭୂମି ମୁହୂର୍ତ୍ତକରେ ଭୁଶୁଡ଼ି ଧୂଳିସାତ୍ ହେଇଗଲା ।

ସେ'ଦିନ ବଡ଼ିଭୋର୍‌ରୁ ଅଭୟାଙ୍କ ନିଦ ଭାଙ୍ଗିଗଲା । ନିଦ ଭାଙ୍ଗିଲାବେଳକୁ

ତାଙ୍କୁ ହାଲୁକା ଲାଗୁନଥିଲା । କାହିଁକି କେଜାଣି । ଚେଷ୍ଟା କରି ବି ଶୋଇପାରିଲେ ନାହିଁ । ଏକଡ଼ସେକଡ଼ ହେଲେ ଖୁବ୍ ନିସ୍ତେଜ ଲାଗୁଥିଲା ବାରଆଡୁ ବାରକଥା ମନକୁ ଆସି ତାଙ୍କୁ ଅସ୍ଥିର କରି ପକେଇଲା । ଛାଟିପିଟ ହେଇ ଉଠିପଡ଼ିଲେ । ଭାବିଲେ ଦାନ୍ତ ଘଷି କପେ ଗରମ କଡ଼ା ଚା' ଖାଇଲେ ଭଲ ଲାଗିବ । ଚୁଲିରେ ଚା'ପାଣି ବସେଇ ବ୍ରସ୍ ଧରିଲେ ।

ଅଗଣା କାନ୍ଥ ଉପରେ କୁଆଟିଏ ବସି ରାବୁଛି ଅଥୟ ହେଇ ତାଙ୍କ ମୁହଁକୁ ଚାହିଁ । କୁଣିଆ ଆସିବେ କିଏ ? ମୁହଁରେ ନାଚିଲା ଆର୍ଯ୍ୟ, କେବେ ଦିନେ କହୁଥିଲା ସୁବିଧା କରି ଆସିବ ବୋଲି ଭାବୁଛି । ଆସିବ, କେଜାଣି ତା' କଥାରେ ଆଉ ଭରସା କରିବା ସେ ଛାଡ଼ିଦେଲେଣି । ତଥାପି ସେ ରାବୁଛି । କପ୍‌ରେ ଚା' ଛାଣି ଆଣି ବସିଲେ ସେ ବାରଣ୍ଡାରେ । ଓହୋ, କା' କା' ବନ୍ଦ ହେବାକୁ ନାହିଁ ଖଣ୍ଡେ ରୁଟିଟୁକୁରା ପକେଇଦେଲେ ନେଇ ଉଡ଼ିଯିବ ହୁଏତ । ଟେବୁଲ୍ ଉପରୁ ରୁଟି ଆଣିବାକୁ ଉଠୁଛନ୍ତି । ଦାଣ୍ଡ ଦୁଆରେ କଲିଂବେଲ୍‌ଟା ବାଜିଲା.... ଉଠୁ ଉଠୁ ହସି ପକେଇଲେ ଅଭୟା ଏଇତ କୁଣିଆ ଆସିଲେଣି, ରାଘବବାବୁଙ୍କୁ ଏମିତି ବେଳ ଅବେଳ ନ ଦେଖି ଲୋକ ନିଦରୁ ଉଠାନ୍ତି କାମ ଥିଲେ.... ଚା' କପ୍ ଥୋଇ ସେ ଦୁଆର ଖୋଲିବାକୁ ଚାଲିଲେ ।

ଦୁଆର ଖୋଲି ସେ ହଠାତ୍ ହତବାକ୍ ହୋଇ ମୁହୂର୍ତ୍ତେ ଚାହିଁଲେ- ସେ କ'ଣ ଦେଖୁଛନ୍ତି !! ଆର୍ଯ୍ୟ । ଆଉ ତା' ପାଖରେ ଠିଆ ହୋଇଛି ଝିଅଟିଏ ! ଆଉଥରେ ଆଖି ପୋଛି ଭଲକରି ଚାହିଁଲେ, ହଁ ତ ଆର୍ଯ୍ୟ ! ମୁଣ୍ଡରେ ତା'ର ଓଢ଼ଣିକୁ ବୁଲେଇ ଆଣିଛି ! ହେ ପ୍ରଭୁ !! ସ୍ତବ୍ଧ ହେଇ ଗଲା ତାଙ୍କ ଚେତନା । କିଛି ଭାବି ପାରୁନଥିଲେ । ସବୁ ଅତୁଆତତୁଆ ହେଇଯାଉଥିଲା ।

ବୋଉ ! ହଠାତ୍ ନଇଁ ପଡ଼ିଲା ଆର୍ଯ୍ୟ ତାଙ୍କ ପାଦ ଛୁଇଁ ପ୍ରଣାମ କରିବାକୁ । ତାଙ୍କୁ ଦେଖି ସଲୱାର କମିଜ୍ ପିନ୍ଧା ଝିଅଟି ଓଢ଼ଣାକୁ ସମ୍ଭ୍ରମତାର ସହ କପାଳ ପର୍ଯ୍ୟନ୍ତ ଟାଣିଆଣି ମୁଣ୍ଡ ନୁଆଁଇ ପ୍ରଣିପାତ କଲା ତାଙ୍କୁ । ସେ ପାଷାଣୀ ଭଳି ସେମିତି ଠିଆ ହୋଇଥିଲେ । କ'ଣ କରିବେ, କ'ଣ କରିବା କଥା ଭାବି ପାରୁନଥିଲେ ।

କଲିଂ ବେଲ୍ ବାଜିବା ଶୁଣି ରାଘବବାବୁ ବିଛଣାରୁ ଉଠିପଡ଼ିଲେ । ନିଦ ଭାଙ୍ଗି ଯାଇଥିଲା ମୁହଁ ନ ଧୋଇ ସେମିତି ଅଭୟାଙ୍କ ପଛେ ପଛେ ହିଁ ଆସୁଥିଲେ - ଠିଆ ହେଇଗଲେ । ତାଙ୍କ ଆଖି ସାମ୍ନାରେ ଅପୂର୍ବ ଦୃଶ୍ୟର ସ୍ଥିରଚିତ୍ରଟିଏ ଅପେକ୍ଷା କରିଥିଲା । ମୁହୂର୍ତ୍ତଟିଏ ବି ଲାଗିଲାନି ତାଙ୍କୁ ବୁଝିବା ପାଇଁ । ସମୟ ବି ନଥିଲା ଭାବିବା ପାଇଁ । ନିଷ୍ପତ୍ତି ନେଇଗଲେ ନିଜ ଭିତରେ । ଗୃହକର୍ତ୍ତା ହିସାବରେ ହେଉ କି ତାଙ୍କର ଉଦାର ବାପପଣ ଆଗେଇ ଗଲା ପରିସ୍ଥିତିକୁ ସମ୍ଭାଳି, ସହଜ କରିବାକୁ । ଗମ୍ଭୀର୍ କଣ୍ଠରେ

କହିଲେ, ଚାହିଁଛ କ'ଣ ଅଭୟା, ଆର୍ଯ୍ୟକୁ ଘର ଭିତରକୁ ଆସିବାକୁ ଦିଅ ଏବଂ ଝିଅଟିକୁ ଉଦ୍ଦେଶ୍ୟ କରି କହିଲେ "ଆସ ମା', ଆସ ଭିତରକୁ ଆସ ।" ଚମକି ପଡ଼ିଲେ ଅଭୟା । ପଛରୁ ସ୍ୱାମୀଙ୍କ କଣ୍ଠସ୍ୱର ଶୁଣି । ପ୍ରକୃତିସ୍ଥ ହୋଇ ପାଖେଇ ଗଲେ ।

ଆର୍ଯ୍ୟ ଘର ଭିତରକୁ ପାଦ ବଢ଼େଇଲା, ତା' ପଛେ ପଛେ ଝିଅଟି ବି । ଅଭୟା କ'ଣ ଭାବୁଥିଲେ କେଜାଣି ରାଘବବାବୁ କିନ୍ତୁ ମନେ ମନେ ଈଶ୍ୱରଙ୍କୁ ପ୍ରଣାମ ଜଣେଇ ଗୁହାରି କଲେ "ତୁମେ ମଂଗଳମୟ ପ୍ରଭୁ.... ସବୁକିଛି ମଂଗଳ ହେଉ । ଯାହା ହେଉଛି ହେବାକୁ ଯାଉଛି - ସେ ସବୁର ନିୟନ୍ତ୍ରଣ ତ ତୁମ ହାତରେ । ତମରି ଇଚ୍ଛା ପୂର୍ଣ୍ଣ ହେଉ ।"

ଆର୍ଯ୍ୟ ଆଉ ପୁଲୋମାଙ୍କ ଗୃହପ୍ରବେଶ କିଛି ମନେରଖିଲା ଭଳି ତ ନଥିଲା, ଏତେଟା ସହଜ ଆଉ ସ୍ୱଚ୍ଛନ୍ଦ ବି ହୋଇନଥିଲା । ଆର୍ଯ୍ୟ ଜାଣିଥିଲା, ଏଭଳି କିଛି ଘଟିବ । ସେ ପ୍ରସ୍ତୁତ ଥିଲା । ପୁଲୋମା ପାଇଁ ସୁଯୋଗ ନଥିଲା ନିଜକୁ ସହଜ ଭାବରେ ପେଶ୍ କରିବା ପାଇଁ । ସବୁ ଅସହଜ ଲାଗୁଥିଲା ଅଭିମାନୀ ଅଭୟା ତ ଆଖି ଲୁହରେ ଗାଧୋଇ ପଡୁଥିଲେ । ନିଜ ମା'ପଣ ଉପରେ ତାଙ୍କର ବେଶି ଅଭିମାନ ଥିଲା, ସେଇ ଅଭିମାନକୁ ଆର୍ଯ୍ୟ ଭାଙ୍ଗି ଦେଇଛି । ତାଙ୍କରି ପେଟରୁ ଜନ୍ମ ହୋଇଥିବା, ସେ'ଦିନର ଏଡ଼େ ଟିକେ ପୁଅ, ଆଜି ମଣିଷଟିଏ ହୋଇଗଲା ବୋଲି ତାଙ୍କ ମା' ପଣକୁ ଅସ୍ୱୀକାର କଲା । ନିଜ ଜୀବନର ନିଷ୍ପତ୍ତି ନେଲାବେଳେ ଥରୁଟିଏ ତାଙ୍କୁ ପଚାରିବା କି ମନେପକେଇବା ଉଚିତ୍ ବୋଲି ଭାବିଲାନି, ପରାମର୍ଶ ନ ନେଲା ନାହିଁ - ସେ ଏତେ ଅନାବଶ୍ୟକ ଅପାଂକ୍ତେୟ ହୋଇଗଲେ । ଅଥଚ ସେ କେତେ ସ୍ୱପ୍ନ ଦେଖିନଥିଲେ ଆର୍ଯ୍ୟ ପାଇଁ । ହେମଲତାକୁ ସେ ଏବେ ମୁହଁ ଦେଖେଇବେ କିମିତି! ଲକ୍ଷ୍ମୀ କୋଉ ରୂପଗୁଣରେ କମ୍ ନ ଥିଲା ଏଇ ଝିଅଠୁ ?

ରାଘବବାବୁ ଏକାନ୍ତରେ ବୁଝାନ୍ତି ଅଭୟାକୁ "ଅଭିମାନ ଛାଡ଼ ଅଭୟା । ଘଟଣା ଘଟିସାରିଲାଣି । ପରିସ୍ଥିତି ଏବେ ଭିନ୍ନ । ଘରକୁ ବୋହୂ ଆସିଲାଣି । ପୁରୁଣା କଥା ଆଉ ଭାବି ଲାଭ କ'ଣ । ଅଶାନ୍ତି ସୃଷ୍ଟି ହେବ । ଯାହା କେବେ ବି ବଦଳିବନି, ତାକୁ ଅନ୍ତରର ସହିତ ଗ୍ରହଣ କରିନେବା ହିଁ ବିଜ୍ଞତା ।" ତା'ଛଡ଼ା କାହାକୁ କାହା ସହିତ ତୁଳନା କରାଯାଇପାରେନୀ ଅଭୟା, ପ୍ରତ୍ୟେକେ ଭିନ୍ନ, ନିଜ ନିଜ ଭଳି । ଆର୍ଯ୍ୟର ପସନ୍ଦ ହେଲା ପୁଲୋମାକୁ । ସେ ତାକୁ ନେଇଁ ଘର କରିବ । ସେ ଯଦି ଖୁସି, ଆମେ କାହିଁକି ଦୁଃଖ କରିବା ଯେ ? ନିଜକୁ ବୁଝାଅ, ଆର୍ଯ୍ୟ ଆଉ ପୁଲୋମାକୁ କଲ୍ୟାଣ କର । "ଘରକୁ ବୋହୂ ଆସିଲା, କେହି ଜାଣିଲେନି । ବଂଧୁ ବାନ୍ଧିଲି ଅଥଚ ସଂପର୍କର ଡୋର ଟାଣ ଧରିଲାନି କେହି କାହାକୁ ଚିହ୍ନିଲୁନି । ଆଉ ଆମ ପିତୃପୁରୁଷଙ୍କୁ ସେ କାହିଁକି

ଚିହ୍ନିବ, କୋଉ ସ୍ନେହଶ୍ରଦ୍ଧା ରହିବ ତାର ? ଏମିତିକି ଔପଚାରିକ ବରଣଟିଏ ବି କରି ହେଲାନି...." ଅଭୟାଙ୍କ ପ୍ରଶ୍ନର କ'ଣ ଉତ୍ତର ଦେବେ ଭାବିପାରନ୍ତିନି ରାଘବବାବୁ । କୁହନ୍ତି - ତମେ ଟିକେ ସହଜ ହେଇଯାଅ ଅଭୟା, ଦେଖିବ ସବୁ ଆପେ ଆପେ ଠିକ୍ ହେଇଯିବ । ସଜାଡ଼ିବା ତ ସମୟର କାମ । ଆର୍ଯ୍ୟ କୁହେ - "ଅପରାଧ ହେଇଯାଇଛି ବୋଉ, ଆମକୁ କ୍ଷମା କରିଦେ । ତୋ କଲ୍ୟାଣ ବିନା ଆମ ଜୀବନ ଅସଂପୂର୍ଣ୍ଣ ରହିଯିବ ।"

ସେଇ ବାସ୍ନା ସ୍ନିଗ୍ଧ ହେଉ କି ତୀବ୍ର ଫୁଲ ଫୁଟିଲେ ବାସ ଚହଟେ । ନିଜେ ନିଜକୁ ପ୍ରଚାର କରେ ଏଇଟା କେବଳ ପ୍ରକୃତିର ଧର୍ମ ନୁହେଁ । ସବୁଠାରୁ ବୁଦ୍ଧିମାନ ବିବେକୀ ମଣିଷ ଜାତି ବି ଏ ନିୟମରୁ ମୁକ୍ତ ନୁହେଁ । ପୁଣି ଘଟଣା ଲୁଚିବାର ନଥିଲା । ସଂଜ ସୁଦ୍ଧା କେମିତି କ'ଣ ହେଇ ଘଟଣାଟା ପ୍ରସରିଗଲା ସବୁଆଡ଼େ । ଆର୍ଯ୍ୟ ନିଜ ପସନ୍ଦର ଝିଅ ବାହାହେଇ ଘରକୁ ବୋହୂ ନେଇ ଆସିଛି ଆଜି ସକାଳେ ।

ହଠାତ୍ ଚିହ୍ନା ଜଣା ସଂପର୍କୀୟମାନଙ୍କୁ ବିଶ୍ୱାସ ଲାଗି ନ ଥିଲା । ହେମ କାନରେ ବି କଥାଟା ପଡ଼ିଥିଲା । ସେ ସ୍ତବ୍ଧ ହେଇଯାଇଥିଲା କିଛିକ୍ଷଣ । ତା'ପରେ ସିଧା କେଶବା ପାଖକୁ ଧାଇଁଗଲା ଶୁଣେଇବାକୁ ।

"ଶୁଣିଲଣି ଆମ ରାଘବବାବୁଙ୍କ ପୁଅ ବାହା ହେଇ ଘରକୁ ବୋହୂ ନେଇ ଆସିଛି କୁଆଡ଼େ । ସେ ଅଲଗା ଜାତିର ଝିଅ, ହିନ୍ଦୀ କହୁଛି । ଆର୍ଯ୍ୟବାବୁଙ୍କ ସାଂଗରେ ପାଠ ପଢୁଥିଲା -" ଏକା ନିଃଶ୍ୱାସରେ ଏତକ କହି ସାରି ନିଃଶ୍ୱାସ ନେଲା ହେମ ।

କେଶବା ଚକିତ ହେଇ ଶୁଣୁଥିଲା ହେମର କଥା ପଚାରିଲା, "ସତେ ନା କ'ଣ, ତୁ କୋଉଠୁ ଶୁଣିଲୁ, କିଏ କହିଲା ?"

ସମସ୍ତେ କୁହାକୁହି ହେଉଛନ୍ତି । ମୋତେ ଅଲେଖ କହିଲା - ମୁଁ ତ ଶୁଣି ବିଶ୍ୱାସ କରିପାରିଲିନି ପ୍ରଥମେ । ଅଭୟା ମା' ଭାଙ୍ଗିପଡ଼ିଥିବେ, ଯଦି ସତ ହେଇଥାଏ କଥାଟା । କେଡ଼େ ଆଶା ବାନ୍ଧି ନ ଥିଲେ ସେ ପୁଅ ପାଇଁ । ଲକ୍ଷ୍ମୀକୁ ବୋହୂ କରି ନେବେ ବୋଲି ମୋଠୁ କଥା ନେଇଥିଲେ ତାଙ୍କ ଦିହ ଛୁଆଁଇ.... ଆହା.... କେଡ଼େ ବଜ୍ରଟିଏ ନ ପଡ଼ିଲା ସତେ ! ହେମ ମନ ଅଭୟାଙ୍କ ମାନସିକ ସ୍ଥିତି କଥା ଭାବି ଆପେ ଓଦା ହେଇଯାଇଥିଲା ।

କେଶବା କହିଲା ସତରେ ହେମ, ଠାକୁରେ ଯାହା କରନ୍ତି ମଂଗଳ ପାଇଁ । ଆମ ହାତ ସିନା ପାଉନଥିଲା ବୋଲି ଡରୁଥିଲେ ଯଦି ଏଭଳି ଘଟଣା ବାହାଘର ପରେ ଘଟିଥାନ୍ତା..... ଜାଣ ଠାକୁରେ ରକ୍ଷା କଲେ ଆମକୁ..... ।

......କାହିଁକି ବାପା, ଆମର କ'ଣ ହେଇଥିଲା କି, ଠାକୁର ରକ୍ଷା କଲେ ? ପରଦା ଆଡ଼େଇ ଘର ଭିତରକୁ ପଶୁ ପଶୁ ଲକ୍ଷ୍ମୀ କାନରେ ପଡ଼ିଲା ବାପାବୋଉଙ୍କ କଥା । -ପଚାରିଲା କି କଥା ପଡ଼ିଥିଲା କି ବୋଉ ?

ହେମ କହିଲା, ଶୁଣିଲୁଣି ମା' ଆର୍ଯ୍ୟବାବୁଙ୍କ କଥା ?

"ସେଇକଥା ଶୁଣିଲି ବୋଲି ତ ଆସିଲି, ତୋତେ କହିବା ପାଇଁ ।" ସେଇକଥା କହୁଥିଲି ବାପାଙ୍କୁ ତୋର- ଅଭୟା ମା'ଙ୍କ ମନରେ ବଡ଼ ଆଘାତ ଲାଗିଥିବ । ତାଙ୍କର ଭାରି ଇଚ୍ଛା ଥିଲା.... କେଶବା କଥା ମଝିରେ ବାଧା ଦେଲା, ଆଉ ହେମ, ସେସବୁ ଇଚ୍ଛା ଅନିଚ୍ଛାର କଥା.... ।

ହଠାତ୍ କହିଆସୁଥିବା କଥାକୁ ହେମ ବୁଲେଇବାକୁ ଚେଷ୍ଟା କଲା । ଲକ୍ଷ୍ମୀ ଜାଣିପାରି କହିଲା, କହୁନୁ ବୋଉ ଅଟକିଲୁ କାହିଁକି, ମୋତେ ଲୁଚାଇବାର କ'ଣ ଅଛି ? କହି ପକା । ହେମ ବୁଝିଲା, ଲକ୍ଷ୍ମୀ ଛାଡ଼ିବନି, କଥା କାଢ଼ିନେବ ତାଠୁ ।

ତା'ଛଡ଼ା ବିପଦ ତ ଗଲାଣି । ଲକ୍ଷ୍ମୀ ଶୁଣିଲେ ବି କିଛି ଅସୁବିଧା ନାହିଁ । ଆଉ ମୁହୂର୍ତ୍ତେ ରହି କହିଲା, ସେଭଳି କିଛି କଥା ନୁହଁ, ହେଲେ ମାଁ ଙ୍କର ଭାରି ମନ ଥିଲା ତୋତେ ବୋହୂ କରି ନେବାକୁ । ମୋଠୁ ଏଇ କିଛି ଦିନ ତଳେ କଥା ନେଇଥିଲେ । ହେଲେ ଈଶ୍ୱରଙ୍କ ଯାହା ଇଚ୍ଛା - ସେଇକଥା ବାପାଙ୍କୁ କହୁଥିଲି ।

ଆଶ୍ଚର୍ଯ୍ୟ ହେଇଗଲା ଲକ୍ଷ୍ମୀ । ତୁ ତ କହିନୁ ମୋତେ, ତା'ଛଡ଼ା ଆଉ କିଏ ଜାଣିଛି ଏ କଥା, କହିଛୁ କାହା ଆଗରେ ? ? ବ୍ୟସ୍ତ ହେଇ ପଚାରିଲା ଲକ୍ଷ୍ମୀ । କେଶବା ଚାହିଁଥିଲା ଝିଅ ମୁହଁକୁ.....ହଠାତ୍ କଳା ପଡ଼ିଗଲା ସତେକି ! "ନାହିଁଲୋ ଝିଅ । ମୁଁ ନିଜେ ତ ସାହସ କରିନି ଏଡ଼େ ବଡ଼ ଘରକୁ ଛୁଇଁବାକୁ ମୁଁ କାହାକୁ କୁହନ୍ତି । ମନେମନେ ଡରୁଥିଲି ଯାହା..... କିଛି ଭୁଲ୍ କରି ପକେଇଲା ଭଳି ହେମର କଣ୍ଠସ୍ୱର ଭାଙ୍ଗି ଭାଙ୍ଗି ଯାଉଥିଲା । ଈଶ୍ୱର ହିଁ ସମାଧାନ କରିଦେଲେ..... ଛାଡ଼ ସେକଥା । ହେମ ଉଠିଲା ଯିବା ପାଇଁ । ଯାଉ ଯାଉ କହିଲା, ଫୋନ୍ କରି ଥରେ ବୁଝିଲେ ହୁଅନ୍ତାନି ସତ କି ମିଛ ଲକ୍ଷ୍ମୀ କହିଲା "ସେ କରିବ ସାର୍‌ଙ୍କ ପାଖକୁ ଫୋନ୍ ।" ଲମ୍ବା ନିଃଶ୍ୱାସଟିଏ ନେଇଁ ଉଠୁ ଉଠୁ ଲକ୍ଷ୍ମୀ ଭାବିଲା ନିଜକଥା । ବୋଉ କଥାକୁ ଭାଙ୍ଗି ଯୋଡ଼ି ମିଶେଇ, ଫେଡ଼ି ଚିନ୍ତା କଲା । ଆଜି ଯଦିଓ ଏଇକଥାର ଗୁରୁତ୍ୱ କିଛି ନାହିଁ, ତେବେ ବି, କାହା ପାଟିରୁ ଖସି ପଡ଼ି, ଭୃଗୁ ସାମନ୍ତଙ୍କ କାନରେ ବାଜିନି ତ ? ? କେଜାଣି ! ହେ ପ୍ରଭୁ ? ଲକ୍ଷ୍ମୀକୁ ଅସ୍ଥିର ଲାଗିଲା । ସମ୍ଭବ ନ ହେଲେ ବି ଅସମ୍ଭବ ବି ତ ନୁହେଁ । କାହାକୁ ପଚାରିବ ସେ ? ? ସ୍ୱାଭିମାନୀ ମଣିଷଟାର କଥା ଭାବି ବ୍ୟତିବ୍ୟସ୍ତ ହେଇପଡ଼େ ଲକ୍ଷ୍ମୀ । ଏବଂ ନିଜକୁ ନିଜେ ଥୟ କରାଏ ବି । ଅପେକ୍ଷା କରେ ଅସୀମ ଧୈର୍ଯ୍ୟର ସହିତ । ଭାବେ, ନିଜକୁ ଯେତେବେଳେ ଅନ୍ୟମାନଙ୍କ ପାଇଁ ସମର୍ପି ଦେଇଛି, ସେଠି ନିଜ ସୁଖ ସୁବିଧା, କଥା ଭାବୁଛି କାହିଁକି ସେ ସ୍ୱାର୍ଥପରଙ୍କ ଭଳି କେଜାଣି ! ସଙ୍କୁଚିତ ଲାଗେ ନିଜକୁ, ନିଜ ଛୋଟପଣକୁ । କାମରେ ମନ ଦିଏ, ବାପାଙ୍କ କଥା ବୁଝେ । ସରମାଁଙ୍କ କଥା ବୁଝେ, ସେଇ ଫାଙ୍କରେ ପୁଣି ମନେ ପଡ଼ିଯାଏ ହଜିଲା ମଣିଷର କଥା - ଭୁଲି ହୁଏନା ।

ପ୍ରଥମ ସପ୍ତାହଟା, କହିବାକୁ ଗଲେ କିଛିଟା ମାନସିକ ସଂଘାତ ଓ ସଂଘର୍ଷ ଭିତରେ ହିଁ କଟିଥିଲା । ଆର୍ଯ୍ୟ, ଅଭୟା ଓ ରାଘବବାବୁଙ୍କ ମଧ୍ୟରେ । ସ୍ୱାଭାବିକ କଥା । ଜଣେ ନୂଆ ସ୍ୱପ୍ନ ନେଇ ସଂସାର କରିବାକୁ ଆରମ୍ଭ କରିଥିଲା ତ ଆଉ ଜଣକର ଦେଖି ଆସିଥିବା ସ୍ୱପ୍ନ ଭାଙ୍ଗି ଯାଇଥିଲା- ତାର ପ୍ରତିକ୍ରିୟାର ପ୍ରଭାବ ତ ରହିବ ହିଁ । ତେବେ ଏଇ ଅଶାନ୍ତ ଗୁମ୍‌ସୁମ୍ ମେଘଓହଳା ପରିବେଶକୁ ସହଜ କରିବା ପାଇଁ ରାଘବ ବାବୁ ଓ ତାଙ୍କ ବନ୍ଧୁମାନଙ୍କ ପ୍ରୟାସ ଅହରହ ଜାରିଥିଲା । ତାରି ଭିତରେ ରାଘବବାବୁଙ୍କ ବନ୍ଧୁ, ଆତ୍ମୀୟ ସ୍ୱଜନମାନେ ଆସି ଘେରାଏ ଲେଖା ବୁଲି ଯାଇଥିଲେ ନୂଆବୋହୂ ଦେଖିବା ବାହାନାରେ । ହେମ ଓ ଲକ୍ଷ୍ମୀ ମଧ୍ୟ ଥରେ ଦି'ଥର ଆସି ବୋହୂ ଦେଖି ଯାଇଥିଲେ । ଲକ୍ଷ୍ମୀକୁ ଖୁବ୍ ଭଲ ଲାଗିଥିଲା ପୁଲୋମାର ବ୍ୟବହାର । ପ୍ରଶଂସା କରିଥିଲା ଆର୍ଯ୍ୟଭାଇଙ୍କ ପସନ୍ଦକୁ ।

ନୂଆବୋହୂର ଆଦବକାଇଦା ମାନିବାରେ ପୁଲୋମା କୌଣସି ତ୍ରୁଟି କରିନଥିଲା । ସମସ୍ତେ ସନ୍ତୁଷ୍ଟ ଥିଲେ । ସମସ୍ତଙ୍କ ମୁହଁରେ ପ୍ରଶଂସା ଥିଲା । ଭାରି ସ୍ନେହୀ ଝିଅଟିଏ । ଭିନ୍ନ ସଂସ୍କୃତି ଓ ଚାଲିଚଳଣି ଭିତରୁ ଆସି ମଧ୍ୟ, ଏତେ ଶାଳୀନ, ନରମ ସ୍ୱଭାବର ଝିଅ କ୍ୱଚିତ୍ ଥା'ନ୍ତି । ପରକୁ ଆପଣାର କରିପାରିବାର ଗୁଣ ସଭିଙ୍କର ନଥାଏ- ଏହା ହିଁ ଥିଲା ପୁଲୋମାର ସ୍ୱାତନ୍ତ୍ର୍ୟ ।

ପଛକୁ ଅଭୟା ଟିକିଏ ନରମି ଯାଇଥିଲେ । ଆର୍ଯ୍ୟ କିଛିଟା ଆଶ୍ୱସ୍ତ ହେଇଥିଲା । ଶୁଦ୍ଧ ନ ହେଲେ ବି ଆର୍ଯ୍ୟ ପାଖରୁ ଶିଖିଥିବା କିଛି ଭଙ୍ଗାରୁଜା ଓଡ଼ିଆ କହି ଶାଶୁ ଅଭୟାଙ୍କ ମନକୁ ଜିଣିବାରେ ସମର୍ଥ ହେଇଥିଲା ଉତ୍ତର ପ୍ରଦେଶୀ ଝିଅ ପୁଲୋମା ।

ଘରେ ଦି' ସପ୍ତାହ ରହିଥିଲେ ଆର୍ଯ୍ୟ ଓ ପୁଲୋମା । ବାଙ୍ଗାଲୁରୁ ଫେରିବା ପୂର୍ବରୁ ଦିନେ ଲକ୍ଷ୍ମୀ ଆଶ୍ରମ ତରଫରୁ ଆର୍ଯ୍ୟ ଓ ପୁଲୋମାକୁ ନିମନ୍ତ୍ରଣ କରିଥିଲା । ଖୁବ୍ ଖୁସି ହେଇଥିଲା ପୁଲୋମା ଅନ୍ତେବାସୀଙ୍କ ବ୍ୟବହାରରେ । କହିଥିଲା, "ମୁଁ କେବଳ ଶୁଣିଥିଲି ଓଡ଼ିଶାବାସୀ ଖୁବ୍ ଅତିଥିପରାୟଣ ବୋଲି, ଆଜି କିନ୍ତୁ ଅନୁଭବ କଲି ତାର ସତ୍ୟତା । ମୁଁ ଖୁବ୍ ଗର୍ବିତ ଯେ, ଏମାଟିର ବୋହୂ ହେବାର ସୁଯୋଗ ପାଇଛି ।"

ବିଶେଷ କରି ଲକ୍ଷ୍ମୀର ସେବା ସମର୍ପିତ ମନୋଭାବ ଏବଂ ତାର ନିଛଳ ସ୍ୱଭାବରେ ମୁଗ୍ଧ ହେଇ ଅନେକ ପ୍ରଶଂସା କରିଥିଲା ସେ ଅଭୟା ଓ ରାଘବବାବୁଙ୍କ ଆଗରେ । ତା ପ୍ରଶଂସାରେ ବି କିଛି ଛଳନା ନଥିଲା । ଯାହା ଅଭୟାଙ୍କ ମନରେ - ଆଗାମୀ ଦିନ ପାଇଁ କିଛି ଆଶା ଆଉ ଆଶ୍ୱାସନା ସଂଚାର କରି ପାରିଥିଲା ।

## ।। ୧୦ ।।

ଗ୍ରୀଷ୍ମର ଟାଣପଣ ଆଉ ନାହିଁ । ଦୂରେଇ ଯାଇଛି ବି କୋଇଲିର ଡାକ । ନିରାସକ୍ତ ନିଦାଘ ଫେରିଯାଇଛି ତା' ବାଟେ ବାଟେ ଭିକ୍ଷୁ ସାଜି ଜୀବନମୁକ୍ତିର ଝୁଲାମୁଣି ଝୁଲେଇ । ମେଘର ଝର୍କା ଦେଇ ଖଣ୍ଡ ଖଣ୍ଡ କଳା ବଉଦ ମୁହଁ ଦେଖେଇଲେଣି । ମୌସୁମୀର ଏଇ ପ୍ରସ୍ତୁତି ପର୍ବ ।

ଆଶ୍ରମ ବାହାରେ ପଦଚାରଣା କରୁ କରୁ ଅନେକ ବାଟ ଚାଲି ଆସିଥିଲେ ଭୃଗୁ ସାମନ୍ତ । ହିମାଳୟ ରେଞ୍ଜ୍‌ର ଏଇସବୁ ପର୍ବତମାଳା ଆଉ ତାର ଘଞ୍ଚ ଜଙ୍ଗଲର ସବୁଜ ସୁଷମା ଦେଖୁ ଦେଖୁ ସେ ତନ୍ମୟ ହେଇଯାଉଥିଲେ । ପାବନୀ ଗଙ୍ଗାର ହେମାଳ ପବନ ତାଙ୍କର ଉଦାସ ମନରେ ପ୍ରାଣ ସଞ୍ଚାର କରୁଥିଲା - ସତେଜ ଲାଗୁଥିଲା ତାଙ୍କୁ । ଗଙ୍ଗାର ଶୀତଳପବନ ବୋହି ଆଣୁଥିଲା ମୌସୁମୀର ନିଆରା ବାସ୍ନାକୁ । ବେଶ୍ ତୃପ୍ତିକର ଏଠାକାର ପବନର ସ୍ପର୍ଶ । ପ୍ରକୃତି ମଣିଷ ମନକୁ ଶାନ୍ତ ଓ ସମାହିତ କରେ - ସେଇଥି ପାଇଁ ତ ସେ ଦିଲ୍ଲୀ ଛାଡ଼ି ଏଇ ଉତ୍ତରାଖଣ୍ଡକୁ ଆସିଛନ୍ତି - ଏଇ ଋଷିକେଶର ଶିବାନନ୍ଦ ଆଶ୍ରମ ତାଙ୍କ ଅନ୍ତରୀଣ ଅସ୍ଥିରତାକୁ ଯଥାସମ୍ଭବ ସଜାଡ଼ିବାରେ ସମର୍ଥ ହେଇଛି ।

ଆଉ ଟିକିଏ ପରେ ସଂଜ ଆସିଯିବ । ଏଠି ଶୀଘ୍ର ହିଁ ସନ୍ଧ୍ୟା ଆସେ । ଏବେ ସୂର୍ଯ୍ୟକିରଣର ପ୍ରଖରତା ତ ନାହିଁ । ମିଠା ମିଠା ଆଲୁଅରେ ସବୁଜ ଚାଦର ଘୋଡ଼େଇ ହୋଇଥିବା ପାହାଡ଼ି ଜଙ୍ଗଲକୁ ବିଭୋର ହୋଇ ଚାହିଁଥିଲେ ସେ । ଚମତ୍କାର ଲ୍ୟାଣ୍ଡସ୍କେପ୍ । ମନପ୍ରାଣକୁ ଆଉଁଶି ଦେଲା ଭଳି ଆକାଶଟା କେତେ ପାଖରେ ସତେକି

ନଇଁ ପଡ଼ି ହାତ ବଢ଼େଇଛି ପୃଥିବୀକୁ ଛୁଇଁବ ବୋଲି । ଆଉ ମାଟିରେ ଠିଆ ହେଇଥିବା ମଣିଷ ହାତ ବଢ଼ଉଛି ଆକାଶକୁ ଛୁଇଁବ ବୋଲି.... । ମନେ ପଡ଼ିଲା ଛାଡ଼ିଆସିଥିବା ସ୍ମୃତି ସବୁ । ଭୃଗୁ ସାମନ୍ତଙ୍କ ଭାବନା ବଉଳି ଉଠୁଥିଲା କ୍ରମଶ..... ଏଇ ସାନ୍ଦ୍ର ସବୁଜ ବନାନୀକୁ ଦେଖିଲେ ହିଁ ଭାବନା ମଞ୍ଜରିତ ହୁଏ । ମନେପଡ଼େ ଆଉ ଜଣେ, ତା' ସହିତ ଫୁଟନ୍ତ ପଲାଶ ଆଉ କୃଷ୍ଣଚୂଡ଼ା ବି ମନେପଡ଼ନ୍ତି - ଯାହାକୁ ସେ ଅନେକ ପଛରେ ଛାଡ଼ିଆସିଛନ୍ତି । ଦୀର୍ଘଶ୍ୱାସ ନେଲେ ଭୃଗୁ ସାମନ୍ତ । ମନେ ପଡ଼ି ଯାଉଥିଲା ଅନେକ ସ୍ମୃତି, ଅନେକ ଉଲ୍ଲସିତ ମୁହୂର୍ତ୍ତ ।

ସେ କିନ୍ତୁ ଭୁଲିବାକୁ ଚାହୁଁଥିଲେ । ଭୁଲିବା ପାଇଁ ତ ସେ ସବୁଛାଡ଼ି ଆସିଛନ୍ତି ଏଇ ହିମାଳୟର ପାଦଦେଶକୁ । ତଥାପି ସ୍ମୃତି ବାଟ ଛାଡୁନି । କାହିଁକି ଛାଡ଼ିବ । ସେ ତ ବସିଯାଇଛି ପଦ୍ମାସନ ପକାଇ ତାଙ୍କ ଅବଚେତନରେ । ଏଥର ଭୃଗୁ ଭାବୁକ ପାଲଟିଗଲେ । ଭାବିଲେ ଫଗୁଣ ଏମିତି ଜବରୀ । ବାଟଭାଙ୍ଗି ପଶିଆସି ବସିଯିବ ମନଅଗଣାରେ ଯେ, ଫେରିବାର ନାଁ ଧରିବିନି । ଧରାଛୁଆଁ ତ ଦେବନି, କେବଳ ହନ୍ତସନ୍ତ, ଛଟପଟ କରୁଥିବ ମନପ୍ରାଣକୁ ।

ଦୀର୍ଘଶ୍ୱାସ ନେଲେ ଭୃଗୁ : ମନ ବିଶାରଦ ଡାକ୍ତର ଭୃଗୁ ସାମନ୍ତ ।

ମେଘ ଅଗଣାରେ ବର୍ଷାରାଣୀ 'ଜୀବନସଂଗୀତ' ଅଭ୍ୟାସ କରୁଛି-ଭାସିଆସୁଛି ଇଥରରେ ତା'ର ଛାନ୍ଦିକ ପରିଭାଷା । ଏଥର ସେ ଆକାଶରୁ ମାଟିକୁ ଓହ୍ଲେଇବ ଏଇ ପାହାଡ଼ ପିଠିରେ ପାଦ ଦେଇ । ମାଟିଛୁଇଁ ପ୍ରଚାର କରିବ ସବୁଜିମାର ବାର୍ତ୍ତା ବାଣ୍ଟିବ ସବୁଜ ଗନ୍ଧ..... ସବୁଜିମାକୁ ବଂଚେଇ ରଖିବାର ସଂକଳ୍ପ ନେଇଛି ସେ । ଅନ୍ୟପାଇଁ ଉତ୍ସର୍ଗୀତ ଜୀବନ ତାର । ସେ ବଞ୍ଚିଛି..... ବଞ୍ଚେଇ ରଖିବ ସବୁଜିମାକୁ । ଜୀବନକୁ ବୈରାଗ୍ୟର ଗେରୁଆ ଭିତରେ ଘୋଡ଼େଇ 'ଜୀବନ' ପାଖରୁ ମୁହଁ ଫେରେଇବାର ମାନେ କିଛି ନାହିଁ । ଏଇଟା ତା'ର ଚିରନ୍ତନ ଉପଲବ୍ଧି । ତା'ର ଜୀବନବାଦୀ ଦର୍ଶନ । ଲକ୍ଷ୍ମୀ ବି ତ ଏଇ କଥା କୁହେ । ଆଶାର କଥା, ଆଲୁଅର କଥା, ମାଟିର କଥା । ହତାଶାକୁ ଆଡ଼େଇ ଆଗକୁ ବଢ଼ିବାର ଅପେକ୍ଷା ରଖେ । ମାଟିରେ ଠିଆ ହେଇ ଆକାଶ ଛୁଇଁବାକୁ ହାତବଢ଼ାଏ । ସେ କିନ୍ତୁ ତାକୁ ଛାଡ଼ିଆସିଛନ୍ତି ଫଗୁଣର ସହରରେ । ଏକଥା ଭାବିଲା ବେଳକୁ ତାଙ୍କୁ ବ୍ୟତିବ୍ୟସ୍ତ ଲାଗୁଥିଲା । ସେ ଚିନ୍ତା ମଧ କରିପାରୁନଥିଲେ ଯେ, ଲକ୍ଷ୍ମୀ ଆଉ କାହାର ହେଇପାରେ । ଭଲ ଲାଗୁନଥିଲା ଏକଥା ଭାବିବାକୁ । କିନ୍ତୁ ନଭାବି ରହିପାରୁନଥିଲେ । ସେ ତ ସେଦିନ ନିଜ କାନରେ ଶୁଣିଛନ୍ତି ସେକଥା । କିମିତି ଅବିଶ୍ୱାସ କରିବେ ନିଜ କାନକୁ । ଏବଂ ସେ ଏକଥା ଶୁଣିଲା ବେଳେ ତାଙ୍କ ପୌରୁଷ ଅପମାନିତ ମନେ କରିଥିଲା । ନିଜକୁ ଅଯୋଗ୍ୟ ମନେ ହୋଇଥିଲା । ଲକ୍ଷ୍ମୀ ତାଙ୍କୁ ଆଡ଼େଇ

ଦେଇଛି, ଖୋଲାଖୋଲି ମୁହଁରେ ନକହି । ସେଇ ମୁହୂର୍ତ୍ତରେ ସେ ଏକ ତୀବ୍ର ଯନ୍ତ୍ରଣା ଅନୁଭବ କରିଥିଲେ ଛାତି ଭିତରେ । ଅସ୍ଥିର ଲାଗିଥିଲା, ଅସହ୍ୟ ମନେ ହେଉଥିଲା । ରାତିସାରା ଛଟପଟ ହେଉଥିଲେ ।

ଭାବନାର ଅନ୍ଧଗଳି ଭିତରେ ପଶି ବାଟ ପାଉଲେନି ଭୃଗୁ ଆଗକୁ ଯିବାକୁ । କୁଆଡ଼େ ଯିବେ ଭାବୁ ଭାବୁ, ତାଙ୍କୁ ଲାଗିଲା କିଏ ଜଣେ ସାମ୍ନାରେ ଠିଆ ହେଇ କିଛି କହିବାକୁ ଚାହୁଁଛି । କିଏ ? ? ଚିହ୍ନିବାକୁ ଚେଷ୍ଟା କଲେ । କୁହୁଡ଼ିଆ ଅଂଧାର..... ଚିହ୍ନି ହେଉନଥିଲା ।

"କ'ଣ ବାଟ ଖୋଜି ପାଉନାହାନ୍ତି ତ ?" ନାରୀ କଣ୍ଠ ସ୍ୱର । "କେମିତି ପାଇବେ ? ନିଜ ଉପରେ ଯେ ଆପଣଙ୍କର ବିଶ୍ୱାସ ନାହିଁ ।" ସନ୍ନ୍ୟାସୀଙ୍କ ମେଳରେ ରହିଲେ କ'ଣ ମନଟା ଗେରୁଆ ହେଇଯାଏ ? ମଣିଷର ମନ ଭିତରକୁ ପଶି ପାରନ୍ତି ବୋଲି ଆପଣଙ୍କର ଖୁବ୍ ଅହଂକାର ଥିଲାନା, ଅଥଚ ନିଜ ମନକୁ ହିଁ ଚିହ୍ନି ପାରିଲେନି ? ଏସ୍କେପିଷ୍ଟ୍.....ପଳାତକ... ଜୀବନକୁ ସାମ୍ନା କରିବା ପାଇଁ ଏତେ ଭୟ !

"କିଏ ତମେ ? ଏତେ ପ୍ରଶ୍ନ କରୁଛ ?" ବିସ୍ମୟରେ ପଚାରିଲେ ଭୃଗୁ । ଚିହ୍ନିପାରିଲେନି ମୋତେ, ଆଶ୍ଚର୍ଯ୍ୟ । "ମୁଁ ତ ଆପଣଙ୍କ ସମଗ୍ର ଚେତନା ଭିତରେ ଅଛି । ଥରେ ନିଜ ଭିତରକୁ ପଶି ଖୋଜନ୍ତୁନା ।"

ଏଥର ସତକୁ ସତ ଚମକି ପଡ଼ିଲେ ସେ । ଲକ୍ଷ୍ମୀର କଣ୍ଠସ୍ୱର ଭଳି ଶୁଭୁଛି । ହେଲେ ସେ ଏଠି କେମିତି ?

"କହିଲି ନା, ମୁଁ ଆପଣଙ୍କ ପାଖେ ପାଖେ ଅଛି, ସବୁବେଳେ ଅଛି । ଆପଣ କିନ୍ତୁ ବାଟବଣା ହେଇଯାଇଛନ୍ତି ।"

ବାଟବଣା ହେଇଯାଇଛି..... କ'ଣ କହୁଛି ଏ ଝିଅଟା..... ବାଟବଣା ସେ କେମିତି ହେଲେ ଯେ ! ପୁଣି କହୁଛି କଣନା, ଜୀବନକୁ ସାମ୍ନା କରିବାକୁ ଭୟ ମୋର । ଭୃଗୁ ଉତ୍ତେଜିତ ହେଇପଡ଼ିଲେ ହଠାତ୍ । ଅଂଧାର ଭିତରୁ ପୁଣି ଝିଅଟିର କଣ୍ଠସ୍ୱର ଭାସି ଆସିଲା । "ଏମିତି ଉତ୍ତେଜିତ ହେବାର ମାନେ କିଛି ନାହିଁ । ବିଚଳିତ ନହେଇ ସ୍ଥିର ଭାବେ ଥରେ ଚିନ୍ତା କଲେ ତ ପ୍ରଶ୍ନର ଉତ୍ତର ମିଳିବ ।"

"କି ଆଶ୍ଚର୍ଯ୍ୟ ! ତମେ କିମିତି ଜାଣିଲ ଯେ ମୁଁ ଅସ୍ଥିର, ବିଚଳିତ ବୋଲି । ତମେ କଣ ଅନ୍ତର୍ଯ୍ୟାମୀ ?"

"ମୁଁ ସବୁ ଜାଣେ, ଆପଣଙ୍କ ଜୀବନର ସଂକଳ୍ପ, ଉଦ୍ଦେଶ୍ୟ ଏବଂ ପ୍ରତିଶ୍ରୁତି ସଂପର୍କରେ ସେଇଥିପାଇଁ ତ ମନେ ପକେଇଦେଉଛି ।"

"ତମେ ଯଦି ସବୁ ଜାଣ ତା'ହେଲେ ଅଂଧାର ଭିତରେ ଠିଆ ହେଇଛ କାହିଁକି,

ସାମ୍‌ନାକୁ ଆସ । କହିସାରି ଭୃଗୁ ପାଖରେ ପଡ଼ିଥିବା ପଥର ଉପରେ ବସି, ଚାରିଆଡ଼କୁ ଚାହିଁଲେ । କାହିଁ ସେଇ ଛାୟା ମୂର୍ତ୍ତିଟି ? କୁଆଡ଼େ ଗଲା ଯେ...ନା, ବିଶ୍ଚିନ୍ତ । ଉଭେଇ ଗଲା ? କି ଆଶ୍ଚର୍ଯ୍ୟ! ଇଯେ ଆଉ ମନର ଭ୍ରମ ନୁହେଁ ତ । ପୁଣି ଚାରିଆଡ଼କୁ ଚାହିଁଲେ, କେହି କୋଉଠି ନଥିଲେ । ସେତେବେଳକୁ ସୂର୍ଯ୍ୟ ପାହାଡ଼ ସେ ପାଖେ ଲୁଚି ଯାଇଥିଲେ । ଅଂଧାର ତେଣା ମେଲଉ ଥିଲା । ନିଜକୁ ପ୍ରକୃତିସ୍ଥ କରି ଆକାଶକୁ ଚାହିଁଲେ ଶୂନ୍ୟ ଦୃଷ୍ଟିରେ । ସବୁ କିମିତି ରହସ୍ୟମୟ ଲାଗିଲା ।

ଏଥର ନିଜକୁ ପ୍ରଶ୍ନ କରୁ କରୁ ଆଶ୍ରମ ମୁହାଁ ହେଇ ପଛକୁ ଫେରିଲେ । ଏବଂ ଚାଲୁ ଚାଲୁ ଭାବିଲେ, ନିଜକୁ ସାଉଁଟିବାକୁ ଯାଇ ଭାବିଲେ । ସେ କ'ଣ ତାହାଲେ ଭୁଲ୍ କରିଦେଇଛନ୍ତି କୋଉଠି, ତାଙ୍କ ବିଚାରରେ ଭୁଲ୍ ରହିଯାଇଛି ? ଆତ୍ମବିଶ୍ୱାସ କୋଉଠି ଝୁଣ୍ଟି ପଡ଼ିଛି ? ନହେଲେ ତାଙ୍କ ଭିତରେ ଏତେ ଦ୍ୱନ୍ଦ୍ୱ କାହିଁକି ? ସେ କଣ ନିଜ ଜୀବନଠାରୁ ବିଛିନ୍ନ ହେବାକୁ ଚାହିଁଥିଲେ, ନା, ଏଇଟା ତାଙ୍କର ମାନସିକ ବୈରାଗ୍ୟ ? ସେ କ'ଣ ଈଶ୍ୱରଙ୍କୁ ଖୋଜୁଛନ୍ତି ? ?

ପ୍ରଶ୍ନର ଉତ୍ତର ଖୋଜୁ ଖୋଜୁ ପଛକୁ ଫେରିଲେ ସେ । ସେଠି କିନ୍ତୁ ଆଉ ଜଣେ ଭୃଗୁକୁ ଭେଟିଲେ । ଯିଏ ଜୀବନକୁ ସାମ୍‌ନା କରିଥିଲା । ସମସ୍ତ ପ୍ରତିକୂଳତାକୁ ଆଡ଼େଇ ପ୍ରତିଷ୍ଠା କରିଥିଲା ନିଜକୁ । କେତେ ନାକଟେକା, ଛି ଛାକର, ମାନ ଅପମାନର ଆତୁଆଳରେ ଗଢ଼ିଥିଲା ଜୀବନକୁ । ପିତୃମାତୃହୀନ ଅନାଥ ଶିଶୁ ଭୃଗୁ- ଯାହା ପାଖରେ 'ସାମନ୍ତ' ପଦବୀକୁ ଛାଡ଼ିଦେଲେ ଉତ୍ତରାଧିକାର ସୂତ୍ରରେ ସମ୍ବଳ ବୋଲି କିଛି ନଥିଲା । ତଥାପି ନିଜକୁ ଅସହାୟ ମଣିନଥିଲା କେବେ । କିଛି ନାହିଁର ଛୋଟପଣ ତାକୁ କେବେ ଛୋଟ କରିନଥିଲା । ନିଜର ସକଳ ଶିକ୍ଷା ଆଦର୍ଶ ଓ ସଫଳତାକୁ ଅସହାୟ ମଣିଷଙ୍କ ସହିତ ଭାଗ କରି ନେବାର ସଂକଳ୍ପ ନେଇ ଆଗକୁ ବଢ଼ିଥିଲା । ସମସ୍ତେ ତଟସ୍ଥ ହେଇ ଚାହିଁଥିଲେ । ଅଥଚ ସେଦିନର ସେଇ ଭୃଗୁ ସାମନ୍ତ - ଜ୍ଞାନୀ, ମାନୀ, ସମର୍ଥ ଭୃଗୁ ସାମନ୍ତ, ଏଡ଼େ ଟିକିଏ ଶୁଣାକଥାର ଧାସରେ ଝାଉଁଳି ପଡ଼ି ଜୀବନକୁ ବୃଥା ବୋଲି ଭାବି ନେଲେ- ଏକଥା ଭାବିଲା ବେଳକୁ ଆଶ୍ଚର୍ଯ୍ୟ ଲାଗିଲା ନିଜକୁ । ବୋଧଶକ୍ତି ବରଫ ପାଲଟି ଯାଉଥିଲା । ନିଜକୁ ଅପରାଧୀ ମନେହେଲା । ସତରେ ତ, କୁଆଡ଼େ ଗଲା ତାଙ୍କର ସ୍ୱପ୍ନ, ସଂକଳ୍ପ ଆଉ ପ୍ରତିବଦ୍ଧତା ? ଭାବୁ ଭାବୁ ସେ ଝାଳେଇ ଯାଉଥିଲେ..... ଚିନ୍ତା କୌଣସି ଏକ ବିନ୍ଦୁରେ ସ୍ଥିର ହେଉନଥିଲା । ସେ ଏବେ କ'ଣ କରିବେ, କ'ଣ କରିବା ଉଚିତ୍ ହେବ ? ସେ ଯେ ଏବେ ପଳାତକ, ନିଜ ଉପରେ ତାଙ୍କର ସଂଦେହ ହେଲା । ଅପରିଚିତ ଲାଗିଲା ନିଜକୁ । ମନେପଡ଼ିଲା ଅନେକ କଥା, ଅନେକ ମୁହଁ ଏବଂ ଅନେକ ପ୍ରତିଶ୍ରୁତି । ବ୍ୟତିବ୍ୟସ୍ତ ହେଇପଡ଼ିଲେ ମନସ୍ତତ୍ତ୍ୱବିତ୍ ଡକ୍ଟର ସାମନ୍ତ ।

କିଛି ସମୟ ମୁଣ୍ଡକୁ ଚିପି ଧରି ବସିପଡ଼ିଲେ ଘାସ ଉପରେ । ଝାଉଁଳିଆ ଅଂଧାର ଓହ୍ଲେଇ ଆସୁଥିଲା ପାହାଡ଼ ଉପରୁ ।

ହଠାତ୍ ଝଲକାଏ ହେମାଳ ପବନ ବହି ଆସି ଦେହମନକୁ ସତେକି ଆଉଁସି ପକେଇଲା, ଆଶ୍ୱାସିଲା ଭଳି ସତେଜ ଲାଗିଲା । ମନେହେଲା ଆଞ୍ଜୁଳାଏ ଜୀବନୀଶକ୍ତି ଢୋକି ପକେଇଲେ । ଗୋଟାଏ ପ୍ରକାରର ନୂଆ ଉପଲବ୍ଧି ଚେତନାକୁ ଉଜ୍ଜୀବିତ କଲା ଭଳି ତାଙ୍କୁ ଲାଗିଲା, କିଏ ଯେମିତି ତାଙ୍କ ହାତଧରି ଉଠଉଛି, "ଚାଲ, ଏଥର ଫେରିଯିବା" । ଖୁବ୍ ଅନ୍ତରଂଗ ଶୁଭୁଥିଲା ତା' ସ୍ୱରଟା ।

ଅଂଧାର ଗାଢ଼ ହେଇ ଯାଇଥିଲା । ଦୂରରୁ ଦିଶୁଥିଲା ଶିବାନନ୍ଦ ଆଶ୍ରମ । ଚେତନାର ବିନ୍ଦୁ ଭଳି ଦପ୍ ଦପ୍ ହେଇ ଆଲୁଅ ଜଳୁଛି । ଦିଗହରା ମଣିଷକୁ ଦିଶା ଦେଖେଇବା ପାଇଁ ଦିବ୍ୟ ଜୀବନର ସନ୍ଧାନ ଦେବା ଉଦ୍ଦେଶ୍ୟରେ ।

ସେଇ ଚେତନାର ବିନ୍ଦୁ ଉପରେ  ତାଙ୍କର ଦୃଷ୍ଟି ସ୍ଥିର ହେଇ ରହିଲା ମନେ ପଡ଼ିଲା, ସେଦିନ ପ୍ରବଚନ ବେଳେ ସ୍ୱାମୀଜୀ କହିଥିଲେ- "କାମନା ନ ଥାଇ  ମଣିଷ ଜନ୍ମ ହେଇନି । ସେ ସବୁବେଳେ ଅଛି ଓ  ରହିବ ମଧ । ହେଲେ ସେଇ କାମନାକୁ ନିଜ ସ୍ୱାର୍ଥରେ ନ ଲଗାଇ, ତାକୁ ଯଦି ଆମେ ଈଶ୍ୱରାଭିମୁଖୀ କରିପାରିବା, ତାହା ହିଁ ହେବ ସତ୍ କର୍ମ ।  ତାର ସୁଫଳ ଜଗତଜନତାଙ୍କ କଲ୍ୟାଣରେ ଲାଗିବ । ସେଥିରୁ ଉପଜୁଥିବା ତୃପ୍ତି ଚିରନ୍ତନତୃପ୍ତି - ଯାହା ତ୍ୟାଗ ଉପରେ ପ୍ରତିଷ୍ଠିତ । ତାର ଅନ୍ୟ ନାମ 'ପ୍ରେମ' । ସେଥିପାଇଁ ବିଚାରର ସ୍ୱଚ୍ଛତା ଏବଂ ବଡ଼ ମାପର ହୃଦୟଟିଏ ଥିବା ଦରକାର । ସମଗ୍ର ଜଗତକୁ ଆପଣାର କଲା ଭଳି - ସେଠି ତୋର ମୋର ଭେଦ ନଥିବ । ଆଚରଣ ଓ ଉଚ୍ଚାରଣରେ  ଏକ ହେବାକୁ ହେବ, ନହେଲେ ମଣିଷ ଦିଗ୍‌ଭ୍ରଷ୍ଟ ହେଇଯିବ, ସେଥିପାଇଁ ଅନ୍ତଃକରଣରେ 'ସତ୍ୟ'କୁ ପ୍ରତିଷ୍ଠା ଦେବାକୁ ହେବ । ଏହା ହିଁ 'ତପସ୍ୟା' । ଜଗତରେ କେହି ଚିର ନୁହେଁ, କିଛି ସ୍ଥିର ବି ନୁହେଁ । ଆଜି ଯାହା ଅଛି କାଲିକି ନଥିବ । କାଲି ଯାହା ଥିଲା, ଆଜି ତା' ନାହିଁ । ତେଣୁ ମାନ ଅପମାନ, ଅଭିମାନ ଅହଂକାର କାହିଁକି ? ବୁଦ୍ଧିମାନ ମଣିଷ ଏସବୁରେ କେବେ ବିଚଳିତ ହୁଏ ନାହିଁ । ନିଜ ବାଟରେ ଚାଲୁଥାଏ, ଚାଲିବାଟା ହିଁ ଜୀବନର ଧର୍ମ ।"

ତେବେ ସଂସାର ଚାଲେ ସଂସାରୀକୁ ନେଇଁ । ନକାରାତ୍ମକ ଚିନ୍ତାର ସେଠି ସ୍ଥାନ ନାହିଁ । ସଂସାରକୁ କେନ୍ଦ୍ର କରି ଜୀବନ ଆଗକୁ ବଢ଼େ । ଜୀବନଧର୍ମୀକଳାକୁ ଯଥାଯଥ ଭାବେ ପ୍ରୟୋଗ ନ କଲେ ଜୀବନ ଅସହ୍ୟ ହେଇପଡ଼େ । ପ୍ରତ୍ୟେକ ମଣିଷ ସ୍ୱତନ୍ତ୍ର । କେହି କାହା ସହିତ ତୁଳନୀୟ ନୁହେଁ, ଆମ ଭିତରକୁ କ୍ରୋଧ, ଘୃଣା, ହୀନମନ୍ୟତା ଏଇ 'ତୁଳନା' ବାଟ ଦେଇ ପଶେ ଓ ଆମକୁ ହତାଶା ଭିତରକୁ ଟାଣି ନିଏ । ଅଜ୍ଞାନୀ ମଣିଷ

ନିଜ ଭିତରର ଦିବ୍ୟଶକ୍ତିକୁ ଚିହ୍ନି ନ ପାରି, ନିଜେ ହିଁ ନିଜର ଶତ୍ରୁ ସାଜେ । ବର୍ତ୍ତମାନକୁ ଉପେକ୍ଷା କରେ । ଜୀବନର ଗତି ବ୍ୟାହତ ହୁଏ । 'ଗୀତା' ଏଇକଥା ହିଁ କହିଛନ୍ତି ।

କି ଚମତ୍କାର ଭାବେ ସ୍ୱାମୀଜୀ ଜୀବନର ଉଦ୍ଦେଶ୍ୟ ଏବଂ ସଂଜ୍ଞାର ବିଶ୍ଳେଷଣ କରିଥିଲେ, ସାଧାରଣ ମଣିଷ ପାଇଁ କିଛି ଅବୁଝା ନଥିଲା । ତା'ଛଡ଼ା ମନସ୍ତତ୍ତ୍ୱ ମଧ୍ୟ ଏହାକୁ ସମର୍ଥନ କରିଛି । ଅଥଚ ସେ ନିଜେ, ମନସ୍ତତ୍ତ୍ୱର ଛାତ୍ର ହେଇ ଏକଥା ଭୁଲିଗଲେ । ହତାଶାର ବଶବର୍ତ୍ତୀ ହେଇ ନିଜ ଉପରେ ଅତ୍ୟାଚାର କରିବାକୁ ଯାଇ ନିଜ ପ୍ରିୟ ମଣିଷଙ୍କ ଉପରେ ବି ଅବିଚାର କଲେ । ଏକଥା ଭାବିଲା ବେଳକୁ ନିଜକୁ କ୍ଷମା କରିପାରୁନଥିଲେ ଡା. ଭୃଗୁ ସାମନ୍ତ । ସବୁ ଜାଣିଶୁଣି ଦୁର୍ବଳ ମାନସିକତାର ଶିକାର ହେଇଗଲେ ସେ କେମିତି କେଜାଣି ! ସେ ଅପରାଧୀ । ଏଇ ଅପରାଧବୋଧରୁ ମୁକୁଳିବାର ଏକମାତ୍ର ନିଦାନ ହେଲା କ୍ଷମା ପ୍ରାର୍ଥନା ଏବଂ ଦୋଷ ସ୍ୱୀକାର, ସେଇମାନଙ୍କ ପାଖରେ । ଅତଏବ, ତାଙ୍କୁ ଫେରିବାକୁ ହେବ ସେଇମାନଙ୍କ ପାଖକୁ, ନ ହେଲେ ସେ ଶାନ୍ତି ପାଇବେନି ।

ପାବନୀ ଗଙ୍ଗାର ହେମାଳ ପବନ ଆସି ତାଙ୍କ ହାତ ଧରି ଉଠେଇଲା ଆଶ୍ରମ ଆଡ଼କୁ । ମନରେ କୌଣସି ଦ୍ୱିଧା ନ ରଖି ସେ ଉଠିଲେ । ଆଗାମୀ ସକାଳର ସୂର୍ଯ୍ୟୋଦୟ ନିଶ୍ଚୟ ତାଙ୍କ ପାଇଁ କିଛି ନୂଆଁ ଜୀବନର ବାର୍ତ୍ତା ନେଇ ଆସିବ..... ମନ କହୁଥିଲା ।

## ॥ ୧୧ ॥

ସେଇ ରାତିଟା ଥିଲା ତାଙ୍କ ଜୀବନର ଶ୍ରେଷ୍ଠ ରାତି ଏବଂ ହିମାଳୟ ପାଦଦେଶର ଏଇ ଆଶ୍ରମର ନିର୍ଜନ କୁଟୀର ତାଙ୍କ ପାଇଁ ପାଲଟି ଯାଇଥିଲା ଆତ୍ମୋପଲବ୍ଧିର ଅନ୍ୟତମ ବୋଧିଦ୍ରୁମ । ନିଜ ସହିତ ଅନେକ ତର୍କ-ବିତର୍କ ପରେ, ନିଜ ଅଜ୍ଞାନତା, ଅହଂପଣ ଏବଂ ଉଦାସୀ ଭାବନାକୁ ଗଙ୍ଗାସ୍ରୋତରେ ଜଳାଂଜଳି ଦେଇ, ସତେ ଯେମିତି ନୂଆ ଜୀବନଟିଏ ପାଇଲେ ସେ ।

ଅଂଧାର ଆଉ ନଥିଲା । କୁହୁଡ଼ିଆ ପାହାଡ଼ୀ ଅଂଧାର ମଧ କଟି ଆସୁଥିଲା କ୍ରମଶଃ । ସ୍ୱଚ୍ଛ ହେଇ ଆସୁଥିଲା ମନ । ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣେଇ ବିଛଣା ଛାଡ଼ିଲେ ମନ ବିଶାରଦ ଭୃଗୁ ସାମନ୍ତ ।

ସେଦିନର ସକାଳଟା ସତକୁ ସତ ତାଙ୍କ ପାଇଁ ଥିଲା ଏକାନ୍ତ ଅପ୍ରତ୍ୟାଶିତ । ସତେଯେମିତି ଈଶ୍ୱରଙ୍କ କରୁଣାର ଭେଟି ନେଇ ଆସିଥିଲା ତାଙ୍କ ପାଖକୁ ।

ଉଦିତ ସୂର୍ଯ୍ୟ ସ୍ପଷ୍ଟ ଆଉ ଉଜ୍ଜ୍ୱଳ ଦିଶୁଥିଲେ । ନିତିଦିନ ଭଳି ସକାଳର ଉପାସନା ସାରି ପ୍ରବଚନ କକ୍ଷରେ ଉପସ୍ଥିତ ଥିଲେ ସମସ୍ତ ବିଭୁପ୍ରେମୀ । ଏଇ ସମୟ ନୂତନ ଅତିଥି, ଅଭ୍ୟାଗତ, ଦର୍ଶନାଭିଳାଷୀ ପରିଦର୍ଶକମାନଙ୍କ ପାଇଁ ଅନୁକୂଳ । ସେମାନେ ସ୍ୱାମୀଜୀଙ୍କୁ ସାକ୍ଷାତ୍ କରି ଆଶୀର୍ଭିକ୍ଷା କରିଥାନ୍ତି । ନିଜେ ଭୃଗୁ ସାମନ୍ତ ବି ସେଠି ଉପସ୍ଥିତ ଥିଲେ । ଭାବିଥିଲେ ସୁଯୋଗ ମିଳିଲେ ନିଜେ ସ୍ୱାମୀଜୀଙ୍କୁ ସାକ୍ଷାତ୍ କଲେ ନିଜ ଉପଲବ୍ଧି ଏବଂ ଅଭିଳାଷକୁ ଉପସ୍ଥାପିତ କରି ଭବିଷ୍ୟତ କାର୍ଯ୍ୟପନ୍ଥା ସ୍ଥିର କରିବେ ।

ଠିକ୍ ସମୟରେ ସ୍ୱାମୀଜୀ କକ୍ଷରେ ପ୍ରବେଶ କରି ଆସନ ଗ୍ରହଣ କଲେ । ଦର୍ଶନାଭିଳାଷୀଙ୍କ ଭିତରେ କୃତ୍ୟ କୃତ୍ୟଭାବ ଫୁଟିଉଠୁଥିଲା । ସତେ ଯେମିତି ତାଙ୍କ ଉପସ୍ଥିତି ଏଇ ଆର୍ତ୍ତୀ ମଣିଷଙ୍କ ପାଇଁ ଦିବ୍ୟଜୀବନର ବାର୍ତ୍ତା ନେଇ ଆସିଥିଲା । ସେ ସମସ୍ତଙ୍କୁ ଆଶୀର୍ବଚନ ମାଧ୍ୟମରେ ସମ୍ବୋଧିତ କଲେ । ମନ୍ତ୍ରମୁଗ୍ଧ ହେଇ ଯାଇଥିଲେ ସମସ୍ତ ଦର୍ଶନାର୍ଥୀ ।

ପ୍ରବଚନ ସରିଲା । ଅତିଥି ଦର୍ଶନାର୍ଥୀଙ୍କ ସହିତ ସାକ୍ଷାତ ଏବଂ ସମୁଚିତ ପରାମର୍ଶ ପରେ ସ୍ୱାମୀଜୀ ଆସନ ଛାଡ଼ି ବିଶ୍ରାମ ଉଦ୍ଦେଶ୍ୟରେ ଉଠିଲେ । ହଠାତ୍ ତାଙ୍କର ଦୃଷ୍ଟି ଡକ୍ଟର ସାମନ୍ତଙ୍କ ଉପରେ ପଡ଼ିଲା । ଟିକିଏ ଚକିତ ହେଲା ଭଳି ମୁହୂର୍ତ୍ତେ ଠିଆ ହେଇଗଲେ । ନିର୍ମଳ ହସର ଆଭା ଚହଟି ଉଠିଲା ତାଙ୍କର ଶ୍ମଶ୍ରୁଶୋଭିତ ମୁଖମଣ୍ଡଳରେ । ସେ ପୂର୍ବରୁ ତାଙ୍କର ସମସ୍ୟା ସହିତ ପରିଚିତ ଥିଲେ । ହେଲେ ଆଜି, ଡାକ୍ତର ସାମନ୍ତଙ୍କ ପ୍ରଫୁଲ୍ଲ ମୁଖମଣ୍ଡଳ ହିଁ ତାଙ୍କ ଦୃଷ୍ଟି ଆକର୍ଷଣର ମୂଳ କେନ୍ଦ୍ର ଥିଲା ।

ସେ ହସି ହସି କୁଶଳ ଜିଜ୍ଞାସାପୂର୍ବକ ନିଜ ଭାଷାରେ ପଚାରିଲେ, ଆଜି ତ ବେଶ୍ ପ୍ରଫୁଲ୍ଲ ଦିଶୁଛନ୍ତି, ବୋଧହୁଏ ମନର ସଂଶୟ ସବୁ ଦୂର ହେଇଯାଇଛି ନା ଡାକ୍ତର ?

ପ୍ରଣାମପୂର୍ବକ ପାଦ ସ୍ପର୍ଶ ପାଇଁ ଆଗେଇ ଆସୁ ଆସୁ ସ୍ୱାମୀଜୀ କଥାର ମୋଡ଼ ବଦଳେଇ ହଠାତ୍ ଆଗନ୍ତୁକ ଅତିଥିଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ- "ଏଇ ଭଦ୍ରଲୋକ ଆମ ପୁରୀ ଜଗନ୍ନାଥ ଦେଶରୁ ଆସିଛନ୍ତି, ଗଙ୍ଗା ସ୍ନାନ ଏବଂ ଆମ ଆଶ୍ରମ ଦର୍ଶନ କରିବାକୁ । ପରିଚୟ ତ ହେଇନଥିବ ?"

ଭୃଗୁଙ୍କ ଦୃଷ୍ଟି ସ୍ୱାମୀଜୀଙ୍କ ନିକଟରେ ଠିଆ ହେଇଥିବା ବ୍ୟକ୍ତିଙ୍କ ଉପରେ ସ୍ଥିର ହେଇଗଲା । କାହିଁକି କେଜାଣି ନିଜ ଭିତରେ ସେ ଚମକି ପଡ଼ିଲେ । ମନେହେଲା ଚିହ୍ନା ଚିହ୍ନା ଲାଗୁଛନ୍ତି କୋଉଠି ଦେଖିଛନ୍ତି । ସ୍ମୃତିର ପୃଷ୍ଠା ଭିତରୁ ପରିଚୟକୁ ଖୋଜୁ ଖୋଜୁ....ହଠାତ୍ ସେଇ ଭଦ୍ରଲୋକ ଜଣକ ଖୁସି ମନରେ ହାତଯୋଡ଼ି ନିଜ ପରିଚୟ ଦେବା ପାଇଁ ଆଗେଇ ଆସି, ଠିଆ ହେଇଗଲେ ଭୃଗୁଙ୍କ ଆଗରେ । ମନରେ ଟିକିଏ ସଂଦେହ ହେଲା; ଯୁବକ ଜଣକ ତ ସନ୍ନ୍ୟାସୀର ପୋଷାକରେ ଅଛନ୍ତି ଅଯତ୍ନ ପରିବର୍ଦ୍ଧିତ କେଶ ଓ ଶ୍ମଶ୍ରୁ ଭିତରେ କିନ୍ତୁ ମୁହଁଟି ଖୁବ୍ ଚିହ୍ନା ମନେହେଉଛି । ବାରି ହେଇଯାଉଛି ସମସ୍ତଙ୍କ ଭିତରେ ଇଏ ସନ୍ନ୍ୟାସୀ ହେଇନପାରନ୍ତି । ତାହେଲେ କିଏ ହେଇପାରନ୍ତି ???

ଦିହେଁ ଦିହିଁଙ୍କୁ ଚାହିଁଥିଲେ କିଏ ଆଗ କଥା କହିବ ବୋଲି ହୁଏତ । ହେଲେ ସ୍ୱାମୀଜୀ ହିଁ ନିଜ ଆଡ଼ୁ ପରିଚୟ ଦେବା ଆରମ୍ଭ କଲେ – "ବିଶିଷ୍ଟ ମନ ବିଶାରଦ ଡାକ୍ତର ସାମନ୍ତ, ଯିଏ ମଣିଷର ମନ ଜଗତକୁ ଖୋଜିବା ଛାଡ଼ି ଅଚାନକ ଈଶ୍ୱରଙ୍କୁ ଖୋଜିବା ପାଇଁ ପଶି ଆସିଛନ୍ତି ସନ୍ନ୍ୟାସୀର ଆଧାତ୍ମିକ ଜଗତ ଭିତରକୁ..... ।"

ଡକ୍ଟର ସାମନ୍ତ! ମନ ବିଶାରଦ!! ମାନେ, ଯିଏ ସୁମନାକୁ ନୂଆ ଜୀବନଟିଏ ଦେଇଛନ୍ତି! ଚକିତ ବିସ୍ମୟରେ ଭୃଗୁଙ୍କ ଆଡ଼କୁ ଚାହିଁ ପ୍ରଣାମ କରି କହିଲେ "ମୁଁ ଶ୍ରୀପଦ ରାୟ । ମୋର କିମିତି ଚିହ୍ନା ଚିହ୍ନା ମନେ ହେଉଥିଲା । ଆପଣଙ୍କୁ ଏଠି, ଏମିତି ଦେଖିବି ବୋଲି କଳ୍ପନା କରିନଥିଲି" । ମନକୁ ମନ ଗୁଣୁଗୁଣୁ ହେଲେ, ଆମ ଲୋକ ତ ସେଠି, ଭଦ୍ରଲୋକଙ୍କ ଖୋଜ ନେବାରେ ଏଯାଏ ବ୍ୟସ୍ତ.... କଥା କ'ଣ! ପଚାରିବା ସୁନ୍ଦର ହେବନି ବୋଲି, ଇଚ୍ଛା ଥିଲେ ବି ଅଗତ୍ୟା ନିରବ ରହିଲେ ।

ଡକ୍ଟର ସାମନ୍ତ କିଛି ଉତ୍ତର ଦେବା ପୂର୍ବରୁ ସ୍ୱାମୀଜୀ ହିଁ ମଞ୍ଚ ଧରିଲେ "ହୁଏ, ମଣିଷର ଏମିତି ବେଳେବେଳେ କୌତୂହଳ ଜାତ ହୁଏ । ଜଗତ ଏବଂ ଜଗଦୀଶ୍ୱରଙ୍କୁ ନେଇ ମନରେ ଅନେକ ପ୍ରଶ୍ନ ଉଠେ । ସେଇ ପ୍ରଶ୍ନର ଉତ୍ତର ଖୋଜିବାକୁ ଯାଇ ଈଶ୍ୱରଙ୍କୁ ଖୋଜେ । ସେ ନିଜେ ଜାଣିପାରେନା ଯେ, ଈଶ୍ୱର ତ ତାରି ଭିତରେ ଅଛନ୍ତି ଏବଂ ସେ, ସେଇ ମହାଚେତନାର ଅଂଶବିଶେଷ । ନିଜ ଭିତରର ସେଇ ଦିବ୍ୟଚେତନାକୁ ଚିହ୍ନିପାରେନା ବୋଲି ତା'ମନରେ ନକାରାତ୍ମକ ଭାବ ଜାତ ହୁଏ....ନା, କ'ଣ ଡାକ୍ତର ?

ପ୍ରତି ଉତ୍ତରରେ ଭୃଗୁ ଟିକିଏ ହସିଦେଲେ । ସ୍ୱାମୀଜୀ ପୁଣି ପ୍ରବଚନ ଦେବା ଢଙ୍ଗରେ କହିଲେ, ଈଶ୍ୱର ସମସ୍ତ ପ୍ରାଣୀଙ୍କୁ କିଛି ନା କିଛି କର୍ମ କରିବା ପାଇଁ ଏଇ ପୃଥିବୀକୁ ପଠେଇଛନ୍ତି । ସେଇ କର୍ମ ମାଧ୍ୟମରେ ଆମେ ଈଶ୍ୱରଙ୍କ ସାକ୍ଷାତ୍ ପାଇପାରିବା । ଅତଏବ ପ୍ରତ୍ୟେକ ମଣିଷ ଜଣେ ଜଣେ କର୍ମଯୋଗୀ- ତାର ତପସ୍ୟା ଗୃହସ୍ଥାଶ୍ରମ ଭିତରେ । ତା' ସହିତ ଈଶ୍ୱର ଆମକୁ କିଛି ବୁଦ୍ଧି ଜ୍ଞାନ ବି ଦେଇଛନ୍ତି । ତାକୁ ବିନିଯୋଗ କଲେ ଆମ ଜୀବନ ସାର୍ଥକ ହେବ । ଅଗଣିତ ଦୁଃଖୀରଙ୍କି, ରୋଗୀ ଅସହାୟ ଅଛନ୍ତି ଆମ ଚାରିପଟେ । ସେମାନଙ୍କ ଆଡ଼କୁ ସାହାଯ୍ୟର ହାତ ବଢ଼େଇ ସେମାନଙ୍କ ମୁହଁରେ ହସ ଫୁଟେଇ ପାରିଲେ ଆମ ତପସ୍ୟାର ଉଦ୍ଦେଶ୍ୟ ପୂରଣ ହେଲା ବୋଲି ଜାଣିବା । ଆପଣମାନେ ତ ବୁଦ୍ଧିମାନ, ବୁଝିପାରୁଥିବେ ମୋର କଥାକୁ । ଏଇ ମହାନଭୂମି ତ ଏଇକଥା ହିଁ ସମସ୍ତଙ୍କୁ ଶିଖେଇ ଆସିଛି । ଈଶ୍ୱର ଅନୁଭବ ଭିତରେ ହିଁ ଥାନ୍ତି । ନିଜକୁ ଆତ୍ମସ୍ଥ କଲେ ଈଶ୍ୱରଙ୍କ ସାକ୍ଷାତ୍ ମିଳିବ ।

କଥାରେ ପୂର୍ଣ୍ଣଚ୍ଛେଦ ପକାଇ ସ୍ୱାମୀଜୀ ନିଃଶ୍ୱାସ ନେଲେ ଏବଂ କହିଲେ, "ମୁଁ ଖୁସିହେଲି, ଆପଣମାନଙ୍କ ସହିତ ପରିଚୟ ବି ଏକ ସଂଯୋଗର କଥା । ଆପଣମାନେ ଏବେ ବିଶ୍ରାମ ନିଅନ୍ତୁ । ମୁଁ ମଧ୍ୟ ଟିକିଏ ବିଶ୍ରାମ ନେବି ।"

ସ୍ୱାମୀଜୀ କକ୍ଷରୁ ନିଷ୍କ୍ରାନ୍ତ ହେଲେ ବିଶ୍ରାମ ଉଦ୍ଦେଶ୍ୟରେ ।

ଶ୍ରୀପଦବାବୁଙ୍କ ସହିତ ଭୃଗୁ ସାମନ୍ତ ଆଶ୍ରମ ବାହାରକୁ ଆସି ଖୋଲା ଆକାଶ ତଳେ ପଥର ଚଟାଣ ଉପରେ ବସି ସବୁଜ ପ୍ରକୃତିର ଶୋଭାକୁ କିଛି ସମୟ ନିରୀକ୍ଷଣ

କଲେ । ଆଳାପ, ଆଲୋଚନା କ୍ରମଶଃ ପରସ୍ପରକୁ ଅନ୍ତରଙ୍ଗ କରିନେଲା । ଅନେକ ଦିନ ପରେ ନିଜ ଜନ୍ମମାଟିର ମଣିଷକୁ ପାଇ ଭୃଗୁ ସାମନ୍ତଙ୍କୁ ବେଶ୍ ଆତ୍ମୀୟ ମନେ ହେଉଥିଲା । ସେଇ ଟିକକ ସମୟ ଭିତରେ ଅନେକ କଥା ପଡ଼ିଲା । ଏବଂ ଅନେକ ଚମକପ୍ରଦ ଘଟଣାର ରହସ୍ୟ ମଧ୍ୟ ଉନ୍ମୋଚନ କରିଥିଲେ ଶ୍ରୀପଦବାବୁ ।

ଚମକପ୍ରଦ ଘଟଣା ଭିତରେ ଥିଲା ଆର୍ଯ୍ୟର ବାହାଘର ଏବଂ ଲକ୍ଷ୍ମୀର ପରୀକ୍ଷାଫଳ । ଯୋଉକଥା ଶୁଣିବା ପାଇଁ ଭୃଗୁ ସାମନ୍ତଙ୍କ ମନପ୍ରାଣ ଉତ୍କଣ୍ଠିତ ହୋଇ ଚାହିଁ ବସିଥିଲା ଅନେକଦିନରୁ । ଲକ୍ଷ୍ମୀ ସର୍ବଭାରତୀୟ ସ୍ତରରେ ତୃତୀୟ ସ୍ଥାନ ଅଧିକାର କରିଛି । ଇଏ କିଛି କମ୍ ଗର୍ବ ଓ ଗୌରବର କଥା ନୁହେଁ । ତା'ର ସଫଳତାରେ ସମଗ୍ର ଦେଶ ଗର୍ବିତ । ବିଶେଷକରି ତା' ଭଳି ଝିଅ, ଯୋଉ ପ୍ରତିକୂଳ ପରିସ୍ଥିତି ଆଉ ପରିବେଶ ଭିତରେ ଗତିକରି ନିଜକୁ ସର୍ବଭାରତୀୟ ସ୍ତରରେ ପ୍ରସ୍ତୁତ କରିଛି, ଆଉ କେହି ଜାଣୁ କି ନ ଜାଣୁ - ସେ ତ ଜାଣନ୍ତି । ଅଥଚ ତାର ଏତେ ବଡ଼ ସଫଳତାରେ ନିଜେ ସାମିଲ୍ ହେଇପାରିଲେନି କି ତାକୁ ଅଭିନନ୍ଦନ ଟିକିଏ ଜଣେଇ ପାରିଲେନି । ଜୀବନ ପାଇଁ ଦୁଃଖ ଆଉ ଅବସୋସ ରହିଗଲା । ଶ୍ରୀପଦବାବୁଙ୍କଠୁଁ ସବୁ ଖବର ଶୁଣିଲାବେଳେ, ମନେମନେ ସେ ନିଜକୁ ଅପରାଧୀ ମନେ କରୁଥିଲେ - ତା' ସହିତ ଉତ୍ତେଜନା ବି ଅନୁଭବ କରୁଥିଲେ ନିଜ ଭିତରେ । ଅଥଚ ନିଜର ଭାବଭାବନାକୁ ବାହାରେ ପ୍ରକାଶ କରିବାର କୌଣସି ଉପାୟ ନଥିଲା - ମନ କିନ୍ତୁ ନାଚୁଥିଲା, ଉଛୁଳି ଉଠୁଥିଲା ।

ଶ୍ରୀପଦବାବୁଙ୍କ ହାତରେ ବେଶି ସମୟ ନଥିଲା । ସେଇ ସନ୍ଧ୍ୟାରେ ଓଡ଼ିଶା ଫେରିବା ପାଇଁ ଟିକେଟ୍ ହେଇ ସାରିଥିଲା । ସେ ତରବର ହେଉଥିଲେ ଫେରିବା ପାଇଁ । ବିଦାୟ ନେବାବେଳେ କହିଲେ, "ଅନେକ କଥା ବାକି ରହିଗଲା, ତେବେ ଫେରିବା ଆଗରୁ ମୋ ନିଜ ତରଫରୁ ଆପଣଙ୍କ ପାଇଁ ଛୋଟ ଅନୁରୋଧ । ଜନ୍ମମାଟିକୁ ଫେରି ଚାଲନ୍ତୁ । ସତରେ ଆପଣ କର୍ମଯୋଗୀ । ଅନେକ ମଣିଷ ଚାହିଁ ବସିଛନ୍ତି ଆପଣଙ୍କ ଫେରିବା ବାଟକୁ । ନିଜେ ଗଲେ ବୁଝିପାରିବେ । ହତାଶ କରନ୍ତୁ ନାହିଁ କାହାକୁ । ବିନ୍ଦୁ, ସରସ୍ୱତୀ ଦେବୀ, ମୋ ଭଉଣୀ ସୁମନା ଭଳି ଅନେକ ନୂଆ ଜୀବନଟିଏ ପାଇବେ ବୋଲି ଆଶା କରି ଚାହିଁଛନ୍ତି । ରାଘବ ବାବୁ ଯଦିଓ ଅନେକ ଦାୟିତ୍ୱ ନିଜ ହାତକୁ ନେଇଛନ୍ତି ତଥାପି ନିଜକୁ ଖୁବ୍ ଏକୁଟିଆ ମନେକରୁଛନ୍ତି - ବିଶେଷ କରି ମାନସିକ ରୋଗୀଙ୍କୁ ନେଇଁ, ଅବଶ୍ୟ ମୁଁ ଯେତିକି ଜାଣେ । ବିଶ୍ୱାସ କରନ୍ତୁ, ଆପଣଙ୍କ ସହିତ ମୋର ସାକ୍ଷାତ ହେଇଛି ବୋଲି ଜାଣିଲେ, ସତରେ ସେମାନେ ଖୁସିରେ ପାଗଳ ହେଇଯିବେ ।"

ଯାହାହେଉ ମୋର ହରିଦ୍ୱାର ଆସିବା ସଫଳ ହେଲା ବୋଲି ଭାବୁଛି । ଆଶ୍ରମ

ପରିଦର୍ଶନ ଓ ଗଙ୍ଗାସ୍ନାନର ଫଳପ୍ରାପ୍ତି ହୋଇଗଲା । ଅନ୍ୟ ପ୍ରକାରେ କହିଲେ, ଆପଣଙ୍କ ସହିତ ସାକ୍ଷାତ୍ ଏକ ଅପୂର୍ବ ସଂଯୋଗ ବୋଲି ଭାବୁଛି ।

ଭୃଗୁ ସାମନ୍ତ ନିଜ ଭିତରେ ଉତ୍ତେଜିତ ହୋଇ ପଡୁଥିଲେ । ଶ୍ରୀପଦବାବୁଙ୍କ କଥା ଏବଂ ଅନୁରୋଧ ବଡ଼ ଅନ୍ତରଂଗ ଓ ଆତ୍ମୀୟ ମନେ ହେଉଥିଲା । ସମୟ ହୋଇଯାଇଥିଲା । ଭୃଗୁ ସାମନ୍ତଙ୍କ ଫେରିବାର ପ୍ରତିଶ୍ରୁତି ନେଇଁ ବିଦାୟ ନେଲେ । ସେଦିନ ରାତିରେ ଭୃଗୁ ଶୋଇପାରିଲେନି । ଗୋଟି ଗୋଟି ହୋଇ ସବୁକଥା ମନେପଡ଼ିଲା । ମନେ ପଡ଼ିଲା ଲକ୍ଷ୍ମୀ । ତା' ସହିତ ଯୋଡ଼ି ହୋଇଥିବା ସମସ୍ତ ଘଟଣା । ତାହେଲେ, କ'ଣ ସେଦିନ ରାତିରେ ହେମଲତା ପାଟିରେ ଶୁଣିଥିବା ଖବର ଭୁଲ୍ ଥିଲା ? ସେ ଭୁଲ୍ ଶୁଣିଥିଲେ ? ଆର୍ଯ୍ୟ ଯଦି ନିଜ ଇଚ୍ଛାରେ ବାହା ହେଲା, ତେବେ ଲକ୍ଷ୍ମୀକୁ ବୋହୂ କରି ନେବାର ପ୍ରସ୍ତାବ କିଏ ଦେଇଥିଲା ? ସେ ତ ଶୁଣିଛନ୍ତି, ହେମଲତା କେଶବ ଆଗରେ କହିବା । ଆଉ ସେଇଥିପାଇଁ ଏକ ଦୂରନ୍ତ ଅଭିମାନରେ ସେ ମୁହଁ ଫେରେଇ ଆସିଥିଲେ ।

ସେ ବୋଧେ ସେଇଠି ଭୁଲ୍ କରିବସିଲେ । ସତମିଛ କିଛି ନ ବୁଝି ସେ କଥାକୁ ଭିନ୍ନ ଭାବେ ଗ୍ରହଣ କଲେ ଏବଂ ଏସ୍କେପିଷ୍ଟ ଭଳି ନିଜକୁ ଦୂରେଇ ନେଲେ । ଲକ୍ଷ୍ମୀ ଉପରେ ଖୁବ୍ ଅଭିମାନ ହୋଇଥିଲା । ମନେ ହେଉଥିଲା ସେ ଅଯୋଗ୍ୟ, ସେଇଥିପାଇଁ ଲକ୍ଷ୍ମୀ ତାଙ୍କୁ ଅପସନ୍ଦ କରିଛି । ଠକିଛି । ତା'ପରେ ସେ ଆଉ କିଛି ଭାବିପାରିନାହାନ୍ତି - ଭୟଙ୍କର ଚାପର ଶିକାର ହୋଇ ଯାଇଛନ୍ତି ହେଲେ ତାଙ୍କର ଧାରଣା ହିଁ ଭୁଲ୍ ଥିଲା ।

ଲକ୍ଷ୍ମୀ ତ ଅଭିମାନୀ ଝିଅ । ସ୍ୱାଭିମାନ ହିଁ ତାର ପରିଚୟ । କେବେବି ପାଟି ଖୋଲି କିଛି କହିବନି - ଏକଥା ଜାଣି ମଧ ସେ କିମିତି ଯେ, ସେଇ ମୁହୂର୍ତ୍ତର ଉତ୍ତେଜନାକୁ ଏଡ଼େଇ ପାରିଲେନି, ଏତେଦିନର ଶିକ୍ଷା, ଅଭିଜ୍ଞତା କୁଆଡ଼େ ଉଭେଇଗଲା - ଭାବିଲା ବେଳକୁ ଲଜ୍ଜା ଲାଗୁଥିଲା । ଛିଃ ଛିଃ, କି ପିଲାଳିଆମୀ କଲେ । କ'ଣ ଭାବିଥିବ ବିଜୁ । କ'ଣ ଭାବିଥିବେ ରାଘବ ବାବୁ ଆଉ ସରମାଁ, ଯାହାଙ୍କୁ ସେ ଦୁଃଖର ସମୁଦ୍ର ଭିତରୁ ଉଦ୍ଧାର କରି ପୁନଃଜୀବନ ଦେଇଥିଲେ - ତାଙ୍କ ଭଙ୍ଗାରୁଜା ମନକୁ ସଜାଡ଼ିବାକୁ କେତେ କଷ୍ଟ କେତେ ଯତ୍ନ କରିଥିଲେ । ମୁହୂର୍ତ୍ତକର ଭୁଲ୍ ବୁଝାମଣାରେ ସବୁ ବ୍ୟର୍ଥ ହୋଇଗଲା ସିନା । ଅଥୟ ହୋଇପଡୁଥିଲେ ଭୃଗୁ ଭାବିଲାବେଳକୁ । କେମିତି ଯେ ନିଜ ଉପରୁ ବିଶ୍ୱାସ ହରାଇଲେ ।

ରାତି ବଢୁଥିଲା । ଭାବନାର ଅନ୍ତ ନ ଥିଲା । ଲକ୍ଷ୍ମୀ ବି ଏମିତି ଛଟପଟ ହେଉଥିବ ତାଙ୍କ ଭଳି । ଅପେକ୍ଷା କରୁଥିବ ସକାଳକୁ । ଲକ୍ଷ୍ମୀ ତାଙ୍କର ସ୍ୱପ୍ନ, ତାଙ୍କର ଆଶ୍ୱାସନା, ତାକୁ ଛାଡ଼ି ତାଙ୍କର ସ୍ଥିତି କାହିଁ ?

ଘରେ ପହଞ୍ଚୁ ପହଞ୍ଚୁ ଶ୍ରୀପଦବାବୁ ସବୁ କାମକୁ ପଛରେ ପକାଇ ପ୍ରଥମେ ରାଘବବାବୁଙ୍କୁ ଖୋଜିଲେ - ଚମକପ୍ରଦ ଖବରଟା ଶୁଣେଇବା ପାଇଁ ଫୋନ୍ କରିବାକୁ ମନ ହେଲାନି, ଭାବିଲେ ନିଜେ ଯାଇ ଖବରଟା ଶୁଣେଇବେ ଏବଂ କାହାକୁ କିଛି ନ ଜଣେଇ ସିଧା ଯାଇ ରାଘବବାବୁଙ୍କ ଘରେ ଯାଇ ପହଞ୍ଚି କଲିଂବେଲ୍ ଟିପିଲେ ।

ଦୁଆର ଖୋଲି ଶ୍ରୀପଦବାବୁଙ୍କୁ ଦେଖି ଅବାକ୍ ହେଇଗଲେ ରାଘବବାବୁ । ସେ ତ କେବେ ଏମିତି ଆସନ୍ତିନି । କଥା କ'ଣ ? ଭାବୁ ଭାବୁ ଘର ଭିତରକୁ ଡାକିନେଲେ ଆସନ୍ତୁ ଶ୍ରୀପଦବାବୁ । କେମିତି ହଠାତ୍ ଚାଲିଆସିଲେ ସବୁ ଭଲ ତ ? ଅନେକ ଦିନ ହେଲା ଦେଖାହେଇନଥିଲା ଆପଣଙ୍କ ସହିତ । ସେଇ ଯୋଉ ବାପାଙ୍କର ଅନ୍ତ୍ୟେଷ୍ଟି ବେଳେ ଦେଖା । ବସନ୍ତୁ । ଘର ଭିତରକୁ ଚା' ପାଇଁ ଖବର ଦେଇ ନିଜେ ବସିଲେ ରାଘବବାବୁ ।

"ଏଇ ତ ସକାଳେ ଫେରିଛି ହରଦ୍ୱାରରୁ, ବାପାଙ୍କ ଅସ୍ଥି ନେଇ ଯାଇଥିଲି ତ । ତେବେ ଗୋଟାଏ ସରପ୍ରାଇଜ୍ ନେଇ ମୁଁ ଆପଣଙ୍କ ପାଖକୁ ଆସିଛି । ଆପଣ କଳ୍ପନା ବି କରିନଥିବେ ।" କହୁ କହୁ ଉତ୍ତେଜିତ ହେଇପଡୁଥିଲେ ନିଜେ ଶ୍ରୀପଦବାବୁ । ମନେ ହେଉଥିଲା ଯେମିତି ଦୌଡ଼ି ଆସିଛନ୍ତି ।

ଟିକିଏ ଆଶ୍ଚର୍ଯ୍ୟ ଲାଗିଲା ରାଘବବାବୁଙ୍କୁ । କୌତୂହଳ ବି ହେଲା, ଭାବିଲେ କି ସରପ୍ରାଇଜ୍ ଦେବେ, ଆର୍ଯ୍ୟଠୁ କ'ଣ ଅଧିକା କିଛି ସରପ୍ରାଇଜ୍ ଦେବେ !! କେଜାଣି ନିଜ ଭାବନାକୁ ଚାପି କହିଲେ, ଠିକ୍ ଅଛି, ଆଗ ଚା' ଟିକିଏ ଖାଇବା ତା'ପରେ....."

"ନା, ନା, ମୁଁ କଥାଟା ଆଗ ଶୁଣେଇବି, ବାକି ସବୁ ପଛେ ।"

"ଠିକ୍ ଅଛି, ଏତେ ଅଥୟ ଲାଗୁଛି ଯେତେବେଳେ ଆପଣ ହିଁ ଶୁଣାନ୍ତୁ, ମୁଁ ଶୁଣିବି ।"

"ଡକ୍ଟର ଭୃଗୁ ସାମନ୍ତଙ୍କ ସହିତ ମୋର ସାକ୍ଷାତ୍ ହେଇଛି ରାଘବବାବୁ ।

ରାଘବ ବାବୁଙ୍କର ନିଃଶ୍ୱାସ ଅଟକିଗଲା ସତେକି ! କାନକୁ ବିଶ୍ୱାସ କରିପାରିଲେନି ପ୍ରଥମେ; ଠିକ୍ ଶୁଣିଛନ୍ତି ତ । କଥା ସ୍ଫୁରିଲାନି ହଠାତ୍..... ଆପଣ ସତ କହୁଛନ୍ତି ତ ?

"ଏକଦମ୍ ସତ କହୁଛି । ହରିଦ୍ୱାର, ଶିବାନନ୍ଦ ଆଶ୍ରମରେ ଆକସ୍ମିକ ଭାବେ ହିଁ ଡକ୍ଟର ସାମନ୍ତଙ୍କ ସହିତ ମୋର ସାକ୍ଷାତ୍ । ମୁଁ ତ ଚିହ୍ନିପାରିନଥିଲି । ନିଜେ ସ୍ୱାମୀଜୀ ହିଁ ପରିଚୟ କରେଇ ଦେଇଥିଲେ । ମୁଁ ଚକିତ ହେଇଯାଇଥିଲି, ଗୈରିକ ବସନରେ ଦେଖି । ସେଇ ତୀକ୍ଷ୍ଣ ଦୃଷ୍ଟି, ସେଇ ସ୍ମିତହସ ମଣିଷର ମନକୁ କିଣିନେଲା ଭଳି ଶ୍ମଶ୍ରୁଳ ମୁହଁ ଲୁଚେଇ ପାରୁନଥିଲା ତାଙ୍କର ପରିଚୟକୁ ।"

ରାଘବବାବୁ ହଠାତ୍ ଉଠିପଡ଼ିଲେ ବସିଲାଠୁ ଆବେଗରେ ଜଡ଼େଇ ଧରିଲେ ଶ୍ରୀପଦ ବାବୁଙ୍କୁ । କୋଉ ଭାଷାରେ ସେ କୃତଜ୍ଞତା ଜଣାଇବେ । ଯୋଉ ସୁଖବର ସେ ନେଇ ଆସିଛନ୍ତି... ଭାଷା ଖୋଜି ପାଉନଥିଲେ କିଛି କହିବା ପାଇଁ । ଆଖି ଜକେଇ ଆସୁଥିଲା

ଆନନ୍ଦାତିଶଯ୍ୟରେ । କେତେବଡ଼ ବୋଝ ଓହ୍ଲେଇଗଲା ତାଙ୍କ କାନ୍ଧରୁ । ଏଇ ଆନନ୍ଦମୟ ମୁହୂର୍ତ୍ତକୁ ଉପଭୋଗ କରୁଥିଲେ ଅଭୟା ହାତରେ ଚା' ଟ୍ରେ ଧରି..... କ'ଣ ସେ ଶୁଣୁଛନ୍ତି ! ଭୃଗୁସାମନ୍ତଙ୍କ ସହିତ କୋଉଠି ଦେଖାହେଲା ? ରାଘବବାବୁ ନିଜକୁ ସମ୍ଭାଳି, ଅଭୟାଙ୍କୁ ଚାହିଁ କହିଲେ, ଶୁଣୁଛ ଅଭୟା, ବିଶ୍ୱାସ କରିପାରୁଛ ତ ? ଶ୍ରୀପଦବାବୁ ଆମ ପାଇଁ କେତେବଡ଼ ଖୁସିଖବର ନେଇ ଆସିଛନ୍ତି ? ମୁଁ କହୁଥିଲି ନା, ଈଶ୍ୱର ଚାହିଁଲେ ସବୁ କିଛି ସମ୍ଭବ ହେଇପାରିବ । କେବଳ ଧୈର୍ଯ୍ୟ ଆବଶ୍ୟକ ।

ତା'ପରେ ତିନିହେଁ ବସି ଚା' ଖାଉ ଖାଉ ସବୁକଥା ଶୁଣିଲେ ଶ୍ରୀପଦବାବୁଙ୍କଠୁଁ । ଶ୍ରୀପଦବାବୁ ବିଦାୟ ନେଲେ ନିଜର କାମ ସାରି । ରାଘବବାବୁଙ୍କୁ ତର ସହିଲାନି । ଖବରଟା ଖବରଟା ପ୍ରଥମେ ବିନ୍ଦୁ ଏବଂ ଆଶ୍ରମକୁ ଜଣେଇ ସାରି, ଭୃଗୁ ସାମନ୍ତଙ୍କ ଡାକ୍ତରବନ୍ଧୁମାନଙ୍କୁ ଜଣେଇଦେଲେ ଫୋନ୍‌ରେ । ଅବିଳମ୍ବେ ଚାରିଆଡ଼େ ଖବରଟା ପ୍ରସାରିତ ହେଇଗଲା ।

ବିନ୍ଦୁ ଧାଇଁ ଆସିଲା ରାଘବବାବୁଙ୍କ ପାଖରୁ ନିଜେ ଖବରଟା ଶୁଣିବ ବୋଲି । ଆନନ୍ଦର ଲହରି ଖେଳିଗଲା ସମସ୍ତଙ୍କ ଭିତରେ ।

ଲକ୍ଷ୍ମୀ କାନରେ ବି କଥାଟା ବାଜିଲା । ବିଶ୍ୱାସ କରିପାରିଲାନି ପ୍ରଥମେ । ଠିକ୍ ଶୁଣିଲା ତ । ଅଲେଖ କହିଲା, ରାଘବବାବୁ ନିଜେ ଫୋନ୍ କରିଥିଲେ । ସତେଯେମିତି ବସନ୍ତ ମଳୟ ବହିଗଲା ମନ ଉପବନରେ ।

ପେନ୍ଥା ପେନ୍ଥା ପଳାଶ ଫୁଟିଗଲେ ଉତ୍‌ଫୁଲ୍ଲ ହେଇ ।

ଟେବୁଲ୍ ପାଖରୁ ଧାଇଁଗଲା ଝରକା ପାଖକୁ - ଆଖି ପହଁଚିଗଲା ରାସ୍ତା ଉପରକୁ.... ରାସ୍ତାର କୃଷ୍ଣଚୂଡ଼ାର ଶାଖାକୁ... ଦି'ଟା ହଳଦୀବସନ୍ତ ହଠାତ୍ ଉଡ଼ିଗଲେ ପରସ୍ପରକୁ ଡକାଡକି ହୋଇ । ଲକ୍ଷ୍ମୀ ଚାହିଁଲା, ସେମାନଙ୍କ ଉଡ଼ିଗଲା ରାସ୍ତାକୁ... କୋଉ ଦିଗକୁ ଗଲେ... ଉତ୍ତରକୁ ? ? କହନ୍ତି ତ ଶୁଭ ସୂଚନା ହଳଦୀ ବସନ୍ତ ଯୋଉଦିଗକୁ ଯାଏ, ସେଇ ଦିଗରୁ ଶୁଭଖବର ଆସେ... ତା'ହେଲେ... ମନଖୁସିରେ ବନ୍ଦ କୋଠରି ଭିତରେ ଚାରିଘେରା ଚକାଭଉଁରୀ ବୁଲିଗଲା ସେ । କେବଳ ସେତିକି ନୁହେଁ, ଅବୋଧ ଶିଶୁ ଭଳି ଗୁଣୁଗୁଣେଇ ଉଠିଲା ଗୋଟିଏ ହଜିଯାଇଥିବା ଗୀତର ସୁରଧରି । ତାର ମନେହେଲା, ସୁନାପାଣିରେ ଗାଧୋଉଥିବା ଆକାଶଟା ହଠାତ୍ ତା'ହାତ ପାଖକୁ ନଇଁ ଆସିଲା ତା' କାନରେ ଶୁଭଖବରଟା ଶୁଣେଇବାକୁ ଏବଂ ସେ ଅଧୀର ଆବେଗରେ ସେଇ ଆକାଶ ଗଳାରେ ଝୁଲି ପଡ଼ିଲା ଯିମିତି ଖୁସିହେଇ । ଅନେକ ଦିନ ପରେ ଆଜି ସେ ବନ୍ଦ ବାକ୍ସରେ ବନ୍ଦୀ କରି ରଖିଥିବା ପ୍ରିୟତମର ସନ୍ତକ ସେଇ ପଥରବସା ମୁଦିକୁ କାଢ଼ି ମନ ପୂରେଇ ଦେଖିଲା, କଥା କହିଲା ଏକାନ୍ତ ଭାବେ । କଥା କହୁ କହୁ ଭୃଗୁ ସାମନ୍ତଙ୍କ ଅବର୍ତ୍ତମାନରେ ତାଙ୍କୁ ଅନୁଭବ କରିବାର ଆନନ୍ଦକୁ ଯିମିତି ଖୋଜି ପାଉଥିଲା ଲକ୍ଷ୍ମୀ ।

ହେମ ଲକ୍ଷ୍ୟ କଲା ଝିଅକୁ.... ଝିଅ ମୁହଁରେ ଗୋଲାପୀ ଆଭା ଉତୁରି ଆସୁଛି । ଶୁଖିଲା ମୁହଁରେ ହସ ଫୁଟିଛି । ଘଟଣା କ'ଣ ? ତା'ଛଡ଼ା କେବେ କିଛି ବରାଦ କରିନଥିବା ଝିଅ ତାର, ତା'ହାତର ସରୁଚକୁଳି ଖାଇବାକୁ ମନ କରିଛି । ଚକିତ ହେଲା ହେମ, ଝିଅ ମନର ପରିବର୍ତ୍ତନକୁ ଦେଖି । ସୁଲତା ବି କହିଲା, ଆମ ଲକ୍ଷ୍ମୀ ମୁହଁରେ ଜହ୍ନ ଉଇଁ ଆସିଛି ସତେକି ! ଆଜି କାହିଁକି ଝଲସି ଉଠୁଛି ତା' ମୁହଁ । କିଛି ଭଲ ଖବର ଆସିଛି କି ହେମ ଅପା ?

"ତୁ କ'ଣ ଜାଣିନୁ ଲକ୍ଷ୍ମୀ ଆମର ମନେଇଟା । ପାଗଳୀଙ୍କ ଭଳି ସେ କେତେବେଳେ ଖୁସି ତ କେତେବେଳେ ଚୁପ୍‌ଚାପ୍ ମେଘିଲା ଆକାଶ । ଯାହାର ଖୁସି ଖବର ଶୁଣିଲେ ବି ସେ ଖୁସି ହେଇଯିବ ।"

ସେଇ ଖୁସିର ଆବେଗରେ ଲକ୍ଷ୍ମୀ ସରମାଁଙ୍କ ପାଖରେ ପହଞ୍ଚିଲା ଔଷଧ ଖୁଆଇବାକୁ । ସରମାଁ ନାହିଁ ନାହିଁ କରୁଥିଲେ । ସେ କିନ୍ତୁ କୋଳେଇ ନେଇ କହିଲା, ଏଥର ଆଉ କିଛି ଦୁଃଖ ନାହିଁ ତମର । କାହିଁକି ଜାଣ, ପୁଅ ତମର ଫେରୁଛନ୍ତି, ସୁନାପିଲା ହେଇ ତମେ ଔଷଧ ଖାଇଦିଅ ତ..... ।

ସରମାଁଙ୍କ ଆଖିରେ ଆଶାର ଆଲୋକ ଝଲସି ଉଠିଲା... "ସତ କହୁଛୁ- ପୁଅ ଆସିବ ? କେବେ ଆସିବ ? ?"

"ଏଇ ଦି'ଚାରିଦିନ ଭିତରେ, ନିଅ ଖାଇଦିଅ ଔଷଧ.... ସରମାଁ ଆଁ' କଲେ ।"

ଏଣେ ବିଜୁର ବ୍ୟସ୍ତତା ବଢୁଥିଲା, କାଳେ ଭୃଗୁଭାଇଙ୍କ ମନ ବଦଳିବ । ଅଭିମାନୀ ମଣିଷ ତ । ରାଘବବାବୁଙ୍କ ପରାମର୍ଶ ଲୋଡ଼ିଲା- ସେ ନିଜେ ଯିବେ କି ହରିଦ୍ୱାର- ବୁଝେଇ ଆଣିବ । ସଂଶୟର କଳାମେଘ ତା' ମୁହଁ ଉପରେ ଭାସି ବୁଲୁଥିଲା । ଏଇ ସୁଯୋଗକୁ ସେ ହାତଛଡ଼ା କରିବାକୁ ଚାହୁଁନଥିଲା ।

ରାଘବ ବାବୁ କହିଲେ, "ସେ ଯେତେବେଳେ କଥା ଦେଇଛନ୍ତି, ଆମେ ଦି'ଚାରିଦିନ ଅପେକ୍ଷା କରିବା । ସେ ତ ଏତେ ଦାୟିତ୍ୱହୀନ ନୁହଁନ୍ତି । କଥା ଦେଇ ସହଜରେ ଭାଙ୍ଗିବେନି ବିଜୁ ବି ଭାବିଲା, ଠିକ୍ କଥା ଅପେକ୍ଷା କରିବା । ଆଉ ଲକ୍ଷ୍ମୀ ପାଇଁ ସମୟ ଖୁବ୍ ଲମ୍ବା ମନେ ହେଉଥିଲା.... ପ୍ରତୀକ୍ଷା.... ଜୀବନଟା ସାରା ତ ସେ କେବଳ ପ୍ରତୀକ୍ଷା ହିଁ କରିଆସିଛି, ସବୁକଥାରେ । ଏଇ ପ୍ରତୀକ୍ଷାର ସମୟଟା ବି ଖୁବ୍ ଲମ୍ବା ମୋଟେ ସରୁନି । ସତେ ଯେମିତି ରାଣ ଖାଇଛି ସରିବନି ବୋଲି । ଅଥଚ ଲକ୍ଷ୍ମୀ ସମୟକୁ ଅତିକ୍ରମିବାକୁ ଚେଷ୍ଟା କରୁଥିଲା ।

## ॥ ୧୨ ॥

ପାହାଡ଼ୀ ଇଲାକାରେ ରାତି ଟିକିଏ ଡେରିରେ ପାହେ । ଭୃଗୁ ସାମନ୍ତ ତ କହିବାକୁ ଗଲେ ବିନିଦ୍ରରାତି କଟେଇଥିଲେ । ସୂର୍ଯ୍ୟ ଉଠିଲା ବେଳକୁ ଟିକିଏ ଡେରି ହେଇଯାଇଥିଲା । ପବନର ହିଲ୍ଲୋଳରେ ଭାସି ଆସୁଥିଲା ମା' ଗଙ୍ଗାଙ୍କର ସ୍ତୁତି, ବନ୍ଦନା । ନିଜ ଦୈନନ୍ଦିନ କର୍ମ ସାରି ଭୃଗୁ ନିଜକୁ ପ୍ରସ୍ତୁତ କରୁଥିଲେ, ସ୍ୱାମୀଜୀଙ୍କ ସହିତ ସାକ୍ଷାତ୍ ପାଇଁ । ନିଜ ମନକଥା ଜଣେଇ ବିଦାୟ ମାଗିବେ ବୋଲି । ସେଇ ସମୟ ବି ଆସିଲା ।

ସ୍ୱାମୀଜୀ ସବୁକଥା ଶୁଣି ପ୍ରସନ୍ନ ହେଇ ଆର୍ଶୀବଚନ ଶୁଣେଇ କହିଲେ, "ଖୁବ୍ ଖୁସି ହେଲି ଆପଣଙ୍କ ନିଷ୍ପତ୍ତିରେ । ଈଶ୍ୱର କାହାକୁ କୋଉ କର୍ମରେ ନିୟୋଗ କରିଥାନ୍ତି, ତାରି ମାଧ୍ୟମରେ ସେ ନିଜର ଉଦ୍ଦେଶ୍ୟ ସାଧନ କରନ୍ତି । ତାଙ୍କ ଇଚ୍ଛାକୁ ହତାଦର କରିବା ଉଚିତ୍ ନୁହେଁ ଡାକ୍ତର । ଆପଣ ତ ମଣିଷର ଭିତର ବାହାର ସବୁକୁ ଜାଣିବାର, ଦେଖିବାର ଜ୍ଞାନ ଅର୍ଜନ କରିଛନ୍ତି - ଇଏ ତ ଅପୂର୍ବ ସୁଯୋଗ । ସମସ୍ତଙ୍କର ଲଭ୍ୟ ନୁହେଁ । ଜ୍ଞାନ ସହିତ ସ୍ନେହ, ପ୍ରେମ, ଦୟା, କ୍ଷମା, ସେବା ଭଳି ଦୁର୍ଲଭ ଗୁଣର ଅଧିକାରୀ ବି ଆପଣ । ଏହା ହିଁ ପ୍ରକୃତ ପୁରୁଷାର୍ଥ । ଏହି ସେବା ହିଁ ତପସ୍ୟା । ଆପଣ କର୍ମଯୋଗୀ । ଏହି ପୁରୁଷାର୍ଥର ବିକାଶ କରି ମାନବସେବାରେ ନିଜକୁ ନିୟୋଗ କରି ଈଶ୍ୱରଙ୍କ ସାକ୍ଷାତ ଲାଭ କରନ୍ତୁ । ଈଶ୍ୱର ତ ଅସହାୟଙ୍କ ଭିତରେ ଅଛନ୍ତି ଡାକ୍ତର । ନକାରାତ୍ମକ ଭାବ ତ୍ୟାଗ କରନ୍ତୁ । ଦେଖିବେ, ଅନ୍ଧକାର ଅପସରିଯିବ ତେଣିକି ସମଗ୍ର ଜୀବନ ହେବ ଉଦୟଭାନୁର ମହୋତ୍ସବ । ସେଇ ଆଲୋକକୁ ସବୁରି ଭିତରେ ବାଣ୍ଟି ଜୀବନକୁ

ଆଲୋକିତ କରନ୍ତୁ । ଏହା ହିଁ ମୋର କାମନା । କାଲି ସକାଳୁ ହିଁ ଯାତ୍ରା ଆରମ୍ଭ କରନ୍ତୁ କୌଣସି ଦ୍ୱିଧା ନ ରଖି । ଶୁଭସ୍ୟ ଶୀଘ୍ରମ୍ । ପୁଣି ସାକ୍ଷାତ୍ ହେବ ସୁଯୋଗ ଆସିଲେ ।" ସ୍ୱାମୀଜୀ ଭୃଗୁଙ୍କ ମଥାରେ ହାତ ରଖିଲେ ।

ଭାବ ଗମ୍ଭୀର ପ୍ରଣାମ ଜଣେଇ ଭୃଗୁ କହିଲେ- "ଏଇ ଆଶ୍ରମ ମୋତେ ଅନେକ ଶିକ୍ଷା ଦେଇଛି । କହିବାକୁ ଗଲେ ମୋର ଶିକ୍ଷା ଆଜି ସଂପୂର୍ଣ୍ଣ ହେଲା । ସେଥିପାଇଁ ମୁଁ ଚିର କୃତଜ୍ଞ । ଭୂମି ସ୍ପର୍ଶ କରି ମଥାନତ କଲେ ଭୃଗୁ । ଏ ଭୂମି ମୋର ଦୀକ୍ଷା ଗୁରୁ ।"

ତା'ର ତିନିଦିନ ପରେ.....

ସେଇ ଅମୃତଲଗ୍ନ ଆସି ପହଞ୍ଚିଲା । ସକାଳୁ ସକାଳୁ ବର୍ଷା ଆରମ୍ଭ ହେଇଯାଇଥାଏ, ଟ୍ରେନ୍ ଷ୍ଟେସନ୍‌ରେ ପହଞ୍ଚିଲା । ଅଭିମାନ ଭାଙ୍ଗି ଭୃଗୁ ଜନ୍ମମାଟିରେ ପାଦ ଦେଲେ । ନିଜ ଫେରିବା ଖବର କାହାକୁ ସେ ଜଣେଇ ନଥିଲେ । ତେଣୁ ସେ ସିଧା ଟ୍ୟାକ୍ସି ଧରିଲେ ନିଜ ବସା ଉଦ୍ଦେଶ୍ୟରେ । ଟ୍ୟାକ୍ସି ଅଟକିଲା ବସା ସାମ୍ନାରେ । ଦୁଆର ଝରକା ବନ୍ଦ ଥିଲା । ସେମିତି ନୀରବ ଅଥଚ ସ୍ଥିର ଦୃଷ୍ଟିରେ ପ୍ରତୀକ୍ଷା କରିଥିଲା ନେମ୍‌ପ୍ଲେଟ୍‌ଟା ସ୍ଥିତପ୍ରଜ୍ଞ ଭଳି । ଓହ୍ଲେଇଲେ ଭୃଗୁ । ବର୍ଷାରେ ଗାଧୋଇ ଦୁଆରେ ଠିଆ ହେଇ କଲିଂବେଲ୍ ଟିପିଲେ । ବେଲ୍ ବାଜିଲା, ଚିହ୍ନା ସଂକେତ ବହନ କରି ।

ବିଜୁ ବାଥ୍‌ରୁମ୍ ଭିତରେ ଥିଲା । ଚମକି ପଡ଼ିଲା ହଠାତ୍ ଚିହ୍ନା ଖୁବ୍ ଚିହ୍ନା ଏଇ ଘଣ୍ଟିର ଶବ୍ଦ । ଭୃଗୁ ଭାଇଙ୍କର ନିଶ୍ଚୟ । ପ୍ରଥମେ ଘାବରେଇ ଗଲା - ନହେଲେ କିଏ ତାଙ୍କ ଭଳି ବଜେଇବ.....ଓଦାଦେହ । ତଥାପି ପୋଛାପୋଛି ନ ହୋଇ ସେମିତି ଓଦା ସର ସର ହେଇ ଧାଇଁଲା ଦୁଆର ଖୋଲିବାକୁ । ଦୁଆର ଖୋଲି ଦେଖେ ତ.... ଭୃଗୁ ଭାଇ ଠିଆ ହେଇଛନ୍ତି ଦୀପସ୍ତମ୍ଭ ଭଳି । ମୁହଁ ସାରା ଦାଢ଼ି ସାଲୁବାଲୁ, ସେଇ ପୁରୁଣା ଚିହ୍ନା ହସ, ଗମ୍ଭୀର ତୀକ୍ଷ୍ଣ ଦୃଷ୍ଟି । କିଛି ବଦଳିନି ତ ମଣିଷଟାର ଅଥଚ ଏପଟେ କେତେ ଓଲଟ ପାଲଟ । କଥା ସ୍ଫୁରିଲାନି ବିଜୁର । ପଥର ପ୍ରତିମା ଭଳି ଠିଆ ହେଇଥିଲା ଦୁଆର ଧରି । ପେଟରୁ କୋହ ଉଠିଲା । ଦୂରନ୍ତ ଅଭିମାନରେ । କେଡ଼େ ନିଷ୍ଠୁର ମଣିଷଟା ସତରେ । ଏତେ ଦହଗଞ୍ଜ ହେଲୁ ଆମେ ଏଠି । ଏବେ ମନେପଡ଼ିଲା ଘର । କି ଅପରାଧ କରିଥିଲୁ ଆମେ । ଖବର ଅନ୍ତର ନଦେଇ ମୁହଁ ଆଡ଼େଇ ଚାଲିଗଲ ଯେ, ଗଲ । କାହିଁକି ଯୋଡୁଥିଲ ସଂପର୍କ ? ମନେ ମନେ ଗରଗର ହେଇ କେତେ କ'ଣ କହିଯାଉଥିଲା, ହେଲେ ପାଟି ଖୋଲିପାରୁ ନଥିଲା । ଲୁହ ବହି ଯାଉଥିଲା ଆବେଗରେ..... କୃତଜ୍ଞତାରେ ।

"କିରେ ବିଜୁ, ବାଟ ଛାଡ଼ିବୁନି, ଡାକିବୁନି ଘର ଭିତରକୁ ?

"ନା, କାହିଁକି ଡାକିବି.... ମୁଁ ତମର କିଏ କି.... ?"

ଭୃଗୁ ଆଗେଇ ଆସି ତାକୁ କୋଳେଇ ଚାକି ଧରିଲେ ନିଜ ଛାତିରେ । ଏତେ ଅଭିମାନ ମୋ' ଉପରେ ? ଆସିଲି ପରା, ଆଉ କାନ୍ଦୁଛୁ କାହିଁକି । ଚାଲ, ଘର ଭିତରକୁ । ଓଦାରେ ଠିଆ ହେଇଛୁ, ମୁଁ ବି ଓଦା ହେଇଯାଉଛି । ମୋତେ ଆଗ କପେ କପେ କରିଦେବୁ - ଅନେକ ଦିନ ହେଇଗଲା ତୋ ହାତର କଫି ଖାଇନି । ଚାଲ୍.... ସତକୁ ସତ ଭୃଗୁଙ୍କ ଦେହ ଅପେକ୍ଷା ମନ ପ୍ରାଣ ଓଦା ହେଇଯାଉଥିଲା, ଏଇ ସ୍ନେହଶୀଳ ମଣିଷର କୃତଜ୍ଞତାର ଲୁହରେ ।

ଅନେକ କଥା, ଅନେକ ମାନ ଅଭିମାନର ସଂଘାତ ଭିତରେ ଦୁହେଁ ପରସ୍ପରକୁ ଦୋଷାରୋପ କରୁଥିଲେ । ଏଠି ମୁନିବ ସେବକର ପାର୍ଥକ୍ୟ କିଛି ନଥିଲା । ସ୍ନେହର ଅନୁବନ୍ଧନ ଭିତରେ ସଂପର୍କ ଗରିମାମୟ ହେଇ ଉଠିଥିଲା । ଭୃଗୁ ସ୍ୱୀକାର କଲେ ନିଜ ଅପରାଧ । ମୋର ଭୁଲ୍ ହେଇଛି । ତୋ ସହିତ କି କାହା ସହିତ ପରାମର୍ଶ କରିନି । ଯଦି ସେ ଭଳି କିଛି ନିଷ୍ପତ୍ତି ନେଇଥାନ୍ତି, ତାହେଲେ ତୋତେ ହିଁ ତ ଜଣେଇଥାନ୍ତି । ତୋ'ଛଡ଼ା ମୋର ନିଜର ବୋଲି କିଏ ଅଛି ? ତୋ ଉପରେ ମୋର ସେତିକି ବିଶ୍ୱାସ ଅଛି ବୋଲି ସବୁ ଛାଡ଼ି ଯାଇଥିଲି । ଆଉ ହବନି ଏମିତି, ହେଲା, କାନ ଧରିଲେ ଭୃଗୁ ହସି ହସି ପିଲାଙ୍କ ଭଳି ।

ବିଜୁ ଆଖି ପୋଛି ନଇଁ ପଡ଼ିଲା ଭୃଗୁଙ୍କ ପାଦ ଉପରେ । ଏତେ ବଡ଼ କଥା କୁହନା ଭାଇ । ମୁଁ ଏତେ କଥା ଭାବିନି । ହେଲେ ଭାରି କଷ୍ଟ ଲାଗିଲା ମୋତେ । ବିଚାରୀ ସରମାଁଙ୍କ ବିକଳ ଚାହାଁଣି, ରୋଗୀମାନଙ୍କ ହତାଶିଆ ମୁହଁ, ରାଘବ ବାବୁଙ୍କ ବ୍ୟସ୍ତତା ଆଉ ଲକ୍ଷ୍ମୀ ଦେଈଙ୍କ ମନମରା ମୁହଁ - ସବୁକୁ ସବୁ ମିଶି ମୋତେ ବୁଦ୍ଧିବଣା କରି ଦେଉଥିଲେ....

ବିଜୁ ପାଟିରେ ଲକ୍ଷ୍ମୀ କଥା ଶୁଣି ଚମକି ପଡ଼ିଲେ ନିଜ ଭିତରେ । ବିଜୁ କ'ଣ ଜାଣିପାରିଛି - ନହେଲେ କହିଲା କାହିଁକି ? ଏତେ ବର୍ଷା ଭିତରେ ବି ସେ ଟିକିଏ ଝାଳେଇ ଗଲେ - ବିଜୁ ପାଖେ ଧରା ପଡ଼ିଯାଇଛନ୍ତି ଭାବି ।

ବିଜୁ ତା' କଥାକୁ ଜାରି ରଖି କହିଲା, ଯା'ହେଉ ଈଶ୍ୱରଙ୍କ କୃପା ତମକୁ ସେ ଫେରେଇ ଆଣିଛନ୍ତି । ଏଣିକି ତମେ ସମ୍ଭାଳ ତମ ଦାୟିତ୍ୱ । ନହେଲେ ସମ୍ଭାଳିବା ପାଇଁ ଘରଣୀ ନେଇ ଆସ, କହି ଜିଭ କାମୁଡ଼ି, ରୋଷେଇ ଘର ଆଡେ ମୁହାଁଇଲା । ଭୃଗୁଙ୍କ କାନରେ ବାଜିଲା ତା' କଥା, ମନେମନେ ହସିଲେ । କଫି ଖିଆ ସରିଥିଲା । ଜଳଖିଆ ପାଇଁ ପ୍ରସ୍ତୁତ ହେଉ ହେଉ ବିଜୁ ମନେ ପକେଇଲା, ଦେଖ ତ, ଏଯାଏ ମୁଁ ଆଶ୍ରମକୁ

ଫୋନ୍‌ଟିଏ ବି କରିପାରିନି, ତମ ଆସିବା କଥା, ମୋର ଜଣେଇବା କଥା ନା ! ବିଚାରା ଦେଇ ଚାହିଁ ବସିଥିବେ । ଯାଏ.... । ରାଘବ ବାବୁଙ୍କୁ ବି କହିବି..... "ନା, ନା ମୁଁ ନିଜେ ଯିବି ସମନ୍ତଙ୍କ ପାଖକୁ । ତୁ କିଛି କହନା ।" ଭୃଗୁ ଉଠିଲେ, ନିଜ କାମ ସାରିବାକୁ । ମନ ଉରଳା ହେଇ ଉଠୁଥିଲା ଲକ୍ଷ୍ମୀ ପାଇଁ..... କେମିତି ସେ ତାଙ୍କୁ ଗ୍ରହଣ କରିବ କେଜାଣି ! ଯାହା ବି ହେଉ, ସେ ନିଜେ ଯିବେ, ନିଜ ଅପରାଧ ପାଇଁ କ୍ଷମା ମାଗିବେ ସମନ୍ତଙ୍କ ପାଖରେ ।

ନିଜକୁ ପ୍ରସ୍ତୁତ କରୁକରୁ ଘଣ୍ଟାରେ ଏଗାରଟା ବାଜୁଥିଲା । ବିଜୁ ଆଉ କପେ କଫି କରି ବଢ଼େଇଦେଲା ହାତକୁ । କଫି ଖାଉ ଖାଉ ଭୃଗୁ ବାହାରକୁ ଚାହିଁଲେ । ବର୍ଷା ନାହିଁ, ଥମିଯାଇଛି । ମେଘ ବି ନାହିଁ, ଆକାଶ ସଫା ହେଇ ଆସୁଛି । ବରଂ ଝରକା ସେପାଖେ ଖରା, କଅଁଳ ଖରା । ଭଲ ଲାଗିଲା ।

ଭୃଗୁ ସାମନ୍ତଙ୍କ ମନ ଖୁସି ହେଇଗଲା । ଏଥର ସେ ବାହାରିବେ । ଯଦିଓ ମନ ଡାକୁଥିଲା, ଲକ୍ଷ୍ମୀ ପାଖକୁ ଯିବେ ଏବଂ ସରମାଁଙ୍କୁ ପ୍ରଣାମ ଜଣେଇବେ । ହେଲେ ଶାଳୀନତା ବାଟ ଓଗାଳିଲା । କ'ଣ ଭାବିବେ ଅନ୍ୟମାନେ । ଗଲେ ତ ଶୀଘ୍ର ବାହାରି ପାରିବେନି ସେଠୁ । ସେ ଜଣେ ଡାକ୍ତର, ପ୍ରଥମେ ତେଣୁ କ୍ଲିନିକ୍ ଖୋଲିବେ । ଅନେକ ଦିନ ହେଲା ଅବ୍ୟବହୃତ ହେଇପଡ଼ିଛି । ବିଜୁ ଯାଇ ସଜାଡ଼ିଦେବ । ତା'ପରେ ସେ ରାଘବବାବୁଙ୍କ ପାଖକୁ ଯାଇ, ତାଙ୍କୁ ନେଇ ସେ ଆଶ୍ରମକୁ ଯିବେ ବୋଲି ଠିକ୍ କଲେ ।

ସେଇଆ ହେଲା, ବିଜୁ ଗାଡ଼ି ବାହାର କଲା ଗ୍ୟାରେଜ୍‌ରୁ । ବିଜୁଙ୍କୁ କ୍ଲିନିକ୍‌ରେ ଛାଡ଼ି, ଭୃଗୁ ସିଧା ଯାଇ ପହଞ୍ଚିଲେ ରାଘବବାବୁଙ୍କ ଘରେ । କଲିଂବେଲ୍‌ରେ ହାତ ଦେଲେ ।

ରାଘବବାବୁ ଜଳଖିଆ ଖାଉଥିଲେ । ଅଭୟାଙ୍କୁ କହିଲେ- "ଦେଖ ତ ଅଭୟା କିଏ ଖୋଜୁଛି ।" ଯିଏ ବି ହେଉ ତାଙ୍କୁ ଡ୍ରଇଂରୁମ୍‌ରେ ବସାଅ - 'ମୁଁ ଯାଉଛି ।' ଅଭୟା କିନ୍ତୁ ଚମକି ପଡ଼ିଲେ ଦୁଆର ଖୋଲୁ ଖୋଲୁ । କି ଆଶ୍ଚର୍ଯ୍ୟ, କାହାକୁ ସେ ଦେଖୁଛନ୍ତି ! ! ଯୋଡ଼ହସ୍ତ ହେଇ ଠିଆ ହେଇଛନ୍ତି ଡାକ୍ତର ସାମନ୍ତ - ସେଇ ମିଠା ହସ, ସେଇମିତି ଚେହେରା । କିଛି ଯେମିତି ଘଟିନି । ଉଭେଇ ଯାଇଥିଲେ କିଛି ସମୟ ପାଇଁ... ପୁଣି ଆବିର୍ଭାବ ଘଟିଛି ! ଭାବୁ ଭାବୁ ମୁହୂର୍ତ୍ତେ ବିଳମ୍ବ ହେଇଗଲା ପ୍ରତି ନମସ୍କାର ଫେରେଇ ଘର ଭିତରକୁ ଡାକିବାକୁ । ବୋକାଙ୍କ ଭଳି ଚାହିଁ ରହିଥିଲେ ।

ନିଜେ ଭୃଗୁ ସାମନ୍ତ ହିଁ କଥା କହିଲେ, "ଅତିଥିଙ୍କୁ ଘର ଭିତରକୁ ଡାକିବେନି ?"

"ଆସନ୍ତୁ, ଆସନ୍ତୁ" କହି ଘର ଭିତରକୁ ଡାକି ରାଘବବାବୁଙ୍କ ଉଦ୍ଦେଶ୍ୟରେ କହିଲେ "ଶୀଘ୍ର ଆସିଲ, କିଏ ଆସିଛନ୍ତି ଦେଖିବ.... ଆସ ଶୀଘ୍ର ।"

"କିଏ ଆସିଛନ୍ତି ମାନେ.... କିଏ..... ଏମିତି ହୁରି ପକଉଛ କାହିଁକି ?" କହୁ କହୁ ରାଘବବାବୁ ବି ତରବର ହେଇ ଅଧାଖିଆରୁ ଉଠିଆସି, ଥମ୍‌କି ଠିଆ ହେଇପଡ଼ିଲେ । ହେ ଈଶ୍ୱର, ତମ କରୁଣାର ଅନ୍ତ ନାହିଁ ସତରେ । ଡକ୍ଟର ସାମନ୍ତ !! ଚମତ୍କାର ସତରେ ! ରାଘବବାବୁଙ୍କ ପାଦଛୁଇଁ ପ୍ରଣାମ କଲେ ଭୃଗୁ ସାମନ୍ତ । କଲ୍ୟାଣ କରୁ କରୁ ଛାତିରେ ଚାକି ଧରିଲେ ରାଘବ ବାବୁ । ମୁହୂର୍ତ୍ତଟା ସତେକି ମହୋତ୍ସବ ପାଲଟିଗଲା । ଘର ଭିତରକୁ ଆସି, ଅଭୟା ଡାଇନିଂ ଟେବୁଲ୍ ଉପରେ ଜଳଖିଆ ସଜାଡ଼ି ବାଢ଼ି ଦେଲେ । ଖାଉ ଖାଉ ଅନେକ କଥା, ଅନେକ ଅନୁଭୂତିକୁ ବାଣ୍ଟି ନେଲେ ପରସ୍ପର । କିଛି ଅଭିଯୋଗ, ଅଭିମାନର ନରମ ଶବ୍ଦ ଭିତରେ ଚାପି ହେଇ ରହିଗଲା ନିଜ ନିଜ ଦୁଃଖ, ନିଜ ନିଜର ମନକଥା । ସମୟ ଜଣାପଡୁ ନଥିଲା । ରାଘବ ବାବୁ ହିଁ କହିଲେ- "ଆମେ ଏଥର ଆଶ୍ରମ ଆଡ଼େ ଯିବା ଉଚିତ ହେବ । ସରମାଁ ବିଚାରୀ ଚାହିଁ ବସିଛନ୍ତି ଆଖିରେ ପଲକ ନ ପକେଇ । ଏଥର ଉଠିବା...."

ଅଭୟାଙ୍କ କାନରେ ବାଜିଲା । କହିଲେ "କୁଆଡ଼େ ଉଠିବ । ଘଣ୍ଟାକୁ ଚାହିଁଲ..... ଖାଇବା ବେଳ ଗଡ଼ିଗଲାଣି । ମୁଁ ସାଂଗେ ସାଂଗେ ବାଢ଼ି ଦେଉଛି..... ସମସ୍ତେ ମିଶି ଖାଇବା ଆଜି..... ଖୁସିର ଦିନ ତ । ଖାଇସାରି ଉଠିବ । ମୁଁ ବିକୁକୁ ଜଣେଇ ଦଉଛି - ସେ ଅପେକ୍ଷା କରିବନି ।"

ଖାଇବା ପର୍ବ ସରିଲା ।

ଖାଉ ଖାଉ ଆର୍ଯ୍ୟର ବାହାଘର କଥା ଆଲୋଚନା ଭିତରକୁ ପଶିଆସିଲା ଆପଣା ଛାଏଁ । ରାଘବବାବୁ କହିଲେ, ବୁଝିଲେ ଡକ୍ଟର ସାମନ୍ତ ମୋର କୌଣସି ଆପତ୍ତି ନ ଥିଲା । ଯିଏ ବି ଆସୁ ବୋହୂ ହୋଇ । ସୁଶୀଳା, ଶିକ୍ଷିତା ଝିଅଟିଏ ହେଇଥାଉ । ଅନ୍ତତଃ ଆର୍ଯ୍ୟର ଜୀବନସାଥି ହେବାର ଯୋଗ୍ୟତା ଥାଉ । ଆର୍ଯ୍ୟ ସୁଖୀ ହେଉ, ବାକି ସବୁ ଆପେ ଶିଖିପାରିବ । କିନ୍ତୁ ଅଭୟାଙ୍କ ମନ ମାନୁନଥିଲା । ପ୍ରଥମେ ସେ ଖୁବ୍ ପ୍ରତିକ୍ରିୟାଶୀଳ ହୋଇପଡ଼ିଲେ । ଦୁଃଖ କଲେ ବି । କାରଣ ତାଙ୍କ ଚାହିଁବା ମୁତାବକ ଝିଅ ଆଣିପାରିଲେନି ବୋଲି । ଅବଶ୍ୟ ତାଙ୍କ ଚାହିଁବାଟା ସେଭଳି କିଛି ବିରାଟ ନ ଥିଲା ତେବେ ଲକ୍ଷ୍ମୀ ତାଙ୍କ ଆଖିରେ ଆଦର୍ଶ ଥିଲା । ଅବଶ୍ୟ ପରେ ସେ ନିଜ ଧାରଣାକୁ ସଂଶୋଧନ କରିଥିଲେ । ନହେଲେ ପୁଲୋମା ଭଲ ଝିଅଟିଏ । ବୁଦ୍ଧିମତୀ । କେବଳ ଅନ୍ୟ ରାଜ୍ୟର ଝିଅ, ଭିନ୍ନ ଚଳଣି ଓ ସଂସ୍କୃତି ଭିତରେ ବଢ଼ିଛି । ଆମ ଭାଷା ସହିତ ପରିଚିତ ନୁହେଁ । ଆର୍ଯ୍ୟର ପସନ୍ଦ କିଛି ମନ୍ଦ ନୁହେଁ । ଆଜିର ମାପରେ ପୁଲୋମା ପାରଙ୍ଗମ ନିଶ୍ଚୟ । ତା'ର ବିଚାର ଅଛି - ଦୃଷ୍ଟି ଅଛି ।

"ଯାହାହେଲେ ବି ଲକ୍ଷ୍ମୀ, ଲକ୍ଷ୍ମୀଟିଏ । ଆମ ଚଳଣିର । ଆମ ବିଚାର ଅଛି ତା' ପାଖରେ । ଆମ ଚଳଣିର ଝିଅକୁ କିଛି ଶିଖେଇବାକୁ ପଡ଼ିନଥାନ୍ତା ତ -" ଅଭୟା ଯୁକ୍ତି ବାଢ଼ିଲେ ।

"ତମେ କାହାକୁ ବି ଶିଖେଇ ପାରିନଥାନ୍ତ ଅଭୟା, ସେମାନେ ଶିକ୍ଷିତା, ତାଙ୍କ ନିଜର ବିଚାର, ଧାରଣା, ତିଆରି ହେଇ ସାରିଛି - ସେମାନେ ଆଉ ଛୋଟ ପିଲା ନୁହଁନ୍ତି ।" ଭୃଗୁ କିନ୍ତୁ ଏ ଦୁହିଁଙ୍କ ବିଚାର ଆଲୋଚନାରେ କାନ ନ ଦେଇ, ଭାବୁଥିଲେ, ସେଇ ରାତିର ଘଟଣା, ସେ ତା'ହେଲେ ଭୁଲ୍ ଶୁଣିନଥିଲେ । ହୁଏତ ଅଭୟା ମନେ ମନେ ଇକ୍ଷ୍ମୀକୁ ବାଛିଥିଲେ ଏବଂ ହେମଲତା ଆଗରେ ମନକଥାକୁ ଜଣେଇଥିଲେ ।

ସେଇକଥାକୁ ସେ ଶୁଣିଛନ୍ତି.... । ଛୋଟ ଚାପା ନିଃଶ୍ୱାସଟିଏ ନେଇଁ ଭାବିଲେ ଅବଶ୍ୟ ଆଜି ଆଉ ସେସବୁର ତର୍ଜମା କରିବାର ଆବଶ୍ୟକତା ନାହିଁ । ଘଟଣା ଭିନ୍ନ ବାଟ ଧରିଛି । ବରଂ ନିଜ ବିଚାରକୁ ସେ ସଂଶୋଧିତ କରିବା ଠିକ୍ ହେବ ।

ତାଙ୍କ ଭାବନା ହଠାତ୍ ଛିଣ୍ଡିଗଲା, ରାଘବବାବୁଙ୍କ ଟିପ୍ପଣୀରେ - ସେ ଅଭୟାଙ୍କୁ ଉତ୍ତର ଫେରେଇବାକୁ ଯାଇ କହୁଥିଲେ, "ଠିକ୍ ଅଛି ଅଭୟା ତମେ ଏଥର ନିଜ ମନମୁତାବକ ଝିଅଁ ବାଛ ଲକ୍ଷ୍ମୀ ପାଇଁ । ଭୃଗୁ ବି ତ ଫେରିଲେଣି । ତାଙ୍କର ଅଘରୀ ମନକୁ ବି ତ ବାନ୍ଧିବାକୁ ପଡ଼ିବ ନା......" ସାମାନ୍ୟ ହସି ଦେଲେ ରାଘବ ବାବୁ ନିଜ କଥା ସାରି ।

"ଇଏ କି ପ୍ରକାର ପରୀକ୍ଷା ତାଙ୍କ ପାଇଁ!"

ହେ ଭଗବାନ! ପୁଣି କ'ଣ ଶୁଣିଲେଣି ଏମିତି! ଚମକି ପଡ଼ିଲେ ଭୃଗୁ ନିଜ ଭିତରେ । ରାଘବବାବୁ ତାଙ୍କୁ ହିଁ ଲକ୍ଷ୍ୟ କରି ଏକଥା କହୁନାହାନ୍ତି ତ... କେଜାଣି । "ନା, ନା, ଭାବନାକୁ ବଢ଼ିବାକୁ ନଦେଇ ଭୃଗୁ ଶାସନ କଲେ ନିଜକୁ - ଏସବୁ ଛୋଟମୋଟ କଥାକୁ ସେ କାନ ଦେବେନି । ନିଜ ଜୀବନର ଲକ୍ଷ୍ୟ ଉଦ୍ଦେଶ୍ୟକୁ ସେ ସ୍ଥିର କରି ନେଇଛନ୍ତି । ହଠାତ୍ କଥାର ମୋଡ଼ ବଦଳାଇବାକୁ ଯାଇ କହିଲେ- 'ଏଥର ଉଠିବା' ମୋର ଡାକ୍ତର ବନ୍ଧୁମାନଙ୍କୁ ଟିକିଏ ମୋ' ଆସିବା ଖବର ଜଣେଇଦେବା ଉଚିତ୍ ହେବ ।"

ରାଘବବାବୁ କହିଲେ- "ନିଶ୍ଚୟ, ମୁଁ ଜଣେଇ ଦଉଛି ଶୁଭ ଖବରଟା ସମସ୍ତଙ୍କୁ । ହେଲେ ଆମେ ପ୍ରଥମେ ଆଶ୍ରମକୁ ଯିବା ଏବଂ ବନ୍ଧୁମାନଙ୍କ ସହିତ ସନ୍ଧ୍ୟାବେଳେ ସାକ୍ଷାତ୍ କରିବେ ନିଜ କ୍ଲିନିକରେ ।" କିଛି ଅସୁବିଧା ହେବ ? ନା, ନା କଛି ଅସୁବିଧା ନାହିଁ ବରଂ ଉଚିତ୍ ହେବ - ଉତ୍ତର ଦେଲେ ଭୃଗୁ ସାମନ୍ତ ।

ଯୋଜନା ପ୍ରସ୍ତୁତ ହୋଇଗଲା । ଚାରିଟା ବେଳେ ଦୁହେଁ ମିଶି ଆଶ୍ରମ ଯିବେ । ଭୃଗୁ ଭିତରେ ଭିତରେ ପୁଲକିତ ହେଲେ । ସେ ତ ଷ୍ଟେସନରେ ପାଦ ଦେଲାବେଳୁ ଅପେକ୍ଷା କରିଛନ୍ତି ଏଇ ମୁହୂର୍ତ୍ତକୁ । ମନେ ମନେ କିଛିଟା ଚିନ୍ତିତ ବି ହେଲେ- ଅନେକ ପ୍ରଶ୍ନ, ଅନେକଙ୍କ ତରଫରୁ ତାଙ୍କ ପାଇଁ ଅପେକ୍ଷା କରିଛି, ସେ ଜାଣିଛନ୍ତି । ତାକୁ ସାମ୍ନା କରିବାକୁ ହେବ ତାଙ୍କୁ, ସବୁ କଥା ତ ସମସ୍ତଙ୍କ ଆଗରେ କହିବା ସମ୍ଭବ ନୁହେଁ । ତଥାପି.... ସାମ୍ନା ତ କରିବାକୁ ପଡ଼ିବ ।

କିଛି ସମୟ ବିଶ୍ରାମ ନେଲା ପରେ ଦୁହେଁ ପ୍ରସ୍ତୁତ ହେଲେ ଯିବା ପାଇଁ । ଠିକ୍ ସମୟରେ ଯାଇ ଭୃଗୁ ସାମନ୍ତ 'ଓଲଡ୍ ଏଜ୍ ହୋମ୍' ଆଗରେ ବ୍ରେକ୍ ଦେଲେ ଗାଡ଼ିକୁ । ଗାଡ଼ି ରହିବା ଶବ୍ଦ ଶୁଣି ଅଫିସ୍ ଭିତରୁ ଅଲେଖ ବାହାରକୁ ଆସିଲା ଉଣ୍ଡିବା ପାଇଁ, କିଏ ଆସିଲା କି ?

ନା, କେହି ନୁହେଁ- ରାଘବବାବୁ । ପ୍ରଥମେ ରାଘବ ବାବୁ ଓହ୍ଲେଇଲେ । ହେଲେ ଏଇଟା ତ ଭୃଗୁ ସାମନ୍ତଙ୍କ ଗାଡ଼ି! ଅଲେଖ ଆଶ୍ଚର୍ଯ୍ୟ ହୋଇ ଆଗେଇ ଗଲା ଆଠ ଦଶ ପାହୁଣ୍ଡ । ତା'ପରେ ଗାଡ଼ି ଭିତରୁ ଓହ୍ଲେଇଲେ ଡାକ୍ତର ସାମନ୍ତ ସମସ୍ତଙ୍କୁ ଚମକେଇ ଦେଇ । ଓହ୍ଲାଉ ଓହ୍ଲାଉ ଚାହିଁଦେଲେ ଥରେ ଚାରିଆଡ଼କୁ । ସବୁ ଯେମିତି ସେମିତି ଅଛି । ଲକ୍ଷ୍ମୀର ଝରକା ଆଡ଼କୁ ଆଖି ପହଁରିଗଲା ଅନ୍ୟମନସ୍କ ଭାବେ । ହେଲେ ଝରକା ପାଖରେ ସେଇ ଚିହ୍ନାମୁହଁ ନ ଥିଲା । ବର୍ଷା ପଖଳା ପଳାଶ ଆଉ କୃଷ୍ଣଚୂଡ଼ାର ଶାଖାରେ ତ ଫୁଲ ନ ଥିଲା, କିନ୍ତୁ ସବୁଜିମାରେ ସତେଜ ହୋଇ ସତେ ଯେମିତି ଅପେକ୍ଷା କରିଥିଲେ ତାଙ୍କର ପ୍ରିୟ ଅତିଥିଙ୍କୁ ସ୍ୱାଗତ ଜଣେଇବା ପାଇଁ ।

ଭୃଗୁ ଝାଳେଇ ଯାଉଥିଲେ ଗୋଟାଏ ଚାପା ଉତ୍ତେଜନାରେ । ଆଗେଇ ଆସୁ ଆସୁ ଅଲେଖ ଚମକି ପଡ଼ିଲା ଡାକ୍ତର ସାମନ୍ତଙ୍କୁ ଦେଖି । ଡାକ୍ତରବାବୁ!! ଅସ୍ଫୁଟ ସ୍ୱରରେ ଉଚ୍ଚାରଣ କରୁ କରୁ ପ୍ରଣାମ ଜଣେଇ ଭାବିଲା, କେହି ତ କାହିଁ ଜଣେଇ ନାହାନ୍ତି ତାଙ୍କ ଆସିବା ଖବର! ହଠାତ୍ ସେ ଭାବି ପାରିଲାନି କ'ଣ କରିବ । ଆଗ ଧାଇଁଲା ଭିତରକୁ ଖବରଟା ଜଣେଇବ ବୋଲି । ଅଫିସ୍ ଭିତରୁ ଧରଣୀ ଆସି ନମସ୍କାର ପୂର୍ବକ ଦୁହିଁଙ୍କୁ ଭିତରକୁ ଡାକିନେଲା ।

ମୁହୂର୍ତ୍ତେ ଲାଗିଲାନି ଖବରଟା ଭିତର ମହଲରେ ପହଞ୍ଚିବା ପାଇଁ । ହେମ ଶୁଣୁ ଶୁଣୁ ହାତର କାମ ଛାଡ଼ି ଧାଇଁ ଆସିଲା କେଶବା ପାଖକୁ । କେଶବା କହିଲା, ମୋତେ ଟିକିଏ ନେଇ ଚାଲ ବାବୁଙ୍କ ପାଖକୁ । କେତେ କାଳ ହେଲା ଯମିତି ଦେଖିନି ତାଙ୍କୁ । ଓହୋ..... କେଡ଼େ ଉଶ୍ୱାସ ଲାଗିଲା ମନଟା!

ଜଣେ ଜଣେ ହୋଇ ଏକାଠି ଡ୍ରଇଂରୁମ୍‌ରେ ଜମିଗଲେ ସମସ୍ତେ ଡାକ୍ତର ବାବୁଙ୍କୁ ସ୍ୱାଗତ କରିବେ ବୋଲି । ରାଜୁବାବୁ, ଶିବ ସାନ୍ତରା ଡାକି ଆଣିଲେ ସାଥିବଂଧୁଙ୍କୁ । ସୁଲତା କୌତୂହଳବଶତଃ ମୁହଁ ଦେଖେଇ ତରବର ହୋଇ ରୋଷେଇଘରେ ପଶି ଦି'କପ୍ କଫି କରି ଟ୍ରେ'ରେ ନେଇଁ ଆସିଲା ଅତିଥିଙ୍କ ପାଇଁ ।

କୁଶଳ ଜିଜ୍ଞାସା କରି ସମସ୍ତ ଅନ୍ତେବାସୀ ଏକା ପ୍ରକାର ଅଭିଯୋଗ ବାଢ଼ିଲେ । "ଏତେଦିନ ଧରି ଆମକୁ ଛାଡ଼ିଯାଇଥିଲେ ଡାକ୍ତର ବାବୁ । ହତାଶ ଲାଗୁଥିଲା । ପ୍ରିୟଜନଙ୍କୁ ହରେଇଦେବାର ଦୁଃଖ କିଛି କମ୍ ନୁହେଁ । ଯା'ହେଉ ଆମ ସ୍ନେହ ହିଁ ଆପଣଙ୍କୁ ଟାଣି ଆଣିଲା ଆମ ପାଖକୁ । ସେଇ ଯଥେଷ୍ଟ । ଶେଷ ପାହାଚରେ ଆମେ ଠିଆ ହୋଇଛୁ ତ, ଆପଣାର ମଣିଷଙ୍କୁ ପାଖରେ ନ ଦେଖିଲେ ଅସହାୟ ଲାଗେ ।"

ଅନେକଙ୍କ ଆଖି ଭାବାବେଗରେ ଛଳେଇ ଆସିଥିଲା । ପରିତ୍ରାଏ ସରମାଙ୍କ କଥା ମନେ ପକେଇଥିଲେ । ରାଘବବାବୁ କହିଲେ, ଆମେ ଯିବୁ ତାଙ୍କ ପାଖକୁ । ଭୃଗୁ ସାମନ୍ତ ନିଜର କୃତଜ୍ଞତା ଜଣେଇବାକୁ ଯାଇ କହିଲେ, ସତକଥା, ଆପଣମାନଙ୍କ ସ୍ନେହ ମୋ ପାଇଁ ଆଶୀର୍ବାଦ ସ୍ୱରୂପ ।

ସରମାଁଙ୍କୁ ସାକ୍ଷାତ୍ କରିବା ପୂର୍ବରୁ କେଶବା ଓ ହେମଲତା ସହିତ ଦେଖା କରି ପ୍ରଣାମ ଜଣେଇବାକୁ ଚାହିଁଲେ ଭୃଗୁ ସାମନ୍ତ ।

ଭୃଗୁ ସାମନ୍ତଙ୍କୁ ନିଜ ଘରେ ଦେଖି କୃତ୍ୟ କୃତ୍ୟ ହୋଇଗଲେ ସ୍ୱାମୀ ସ୍ତ୍ରୀ ଦୁହେଁ । କୃତଜ୍ଞତାର ଭେଟି ଦେଇ କେଶବା କହିଲା, ଆମ ଭଳି ଅସହାୟକଙ୍କ ପାଇଁ ଆପଣମାନେ ହିଁ ତ ଭରସା ଡାକ୍ତରବାବୁ । ଆପଣଙ୍କ ବାଟ ଚାହିଁ ବସିଥିଲୁ ଆମେ । ଫେରି ଆସିଲେ ଆପଣ । ସିଏ ଆମର ଭାଗ୍ୟ । ସରମାଁଙ୍କ ପାଇଁ ଖୁବ୍ ଦୁଃଖ ଲାଗୁଥିଲା । ଖୁବ୍ ଖୋଜୁଥିଲେ ସେ ଆପଣଙ୍କୁ ।' ଲକ୍ଷ୍ମୀ ବ୍ୟସ୍ତ ହୋଇ ପଡ଼ୁଥିଲା କେମିତି ସମ୍ଭାଳିବ କଥାରୁ କଥା ବଢ଼ୁଥିଲା.... ହେମଲତା କଫି କରି ଆଣିଲା.... । କଫି ଖାଉ ଖାଉ କେଶବାର ସ୍ୱାସ୍ଥ୍ୟ ଖବର ସହିତ ଅନ୍ୟାନ୍ୟ ଖବର ଆଲୋଚନା ଭିତରକୁ ବି ଆସିଲା । କିଛି ସମୟ କଟେଇଲେ ଭୃଗୁ ସାମନ୍ତ କେଶବା ସହିତ ।

ବିଶ୍ରାମ ନେବାକୁ ଯାଇ ଖଟରେ ଗଡ଼ପଡ଼ ହେଉ ହେଉ କେମିତି କେତାଣି ଆଖି ଲାଗିଯାଇଥିଲା ଲକ୍ଷ୍ମୀର । ଶୋଉ ଶୋଉ ଶୋଇପଡ଼ିଥିଲା ନିଦରେ । ହଠାତ୍ ନିଦଟା ଭାଙ୍ଗିଗଲା, ବାହାରର ଛୋଟମୋଟିଆ କୋଳାହଳରେ କିଏ ସବୁ କଥାବାର୍ତ୍ତା କରୁଥିଲେ । କୁହାକୁହି ହେଉଥିଲେ । କିଛି ଗୋଟାଏ ଆଲୋଚନା ଚାଲିଥିଲା ବୋଧେ । ଅଧାନିଦ ଅଧା ଚିଆଁ ଅବସ୍ଥାରେ ଶବ୍ଦମାନ କିଛି କିଛି କାନରେ ବାଜୁଥିଲା । ତାକୁ ଲାଗୁଥିଲା ସ୍ୱପ୍ନ

ଦେଖିଲା ଭଳି । ଅଲେଖର ପାଟି ଶୁଭୁଥିଲା । ଡାକ୍ତରବାବୁଙ୍କ ନାଁ ସେ ଉଚ୍ଚାରିତ କରୁଥିଲା ବାରଂବାର ତା' କଥା ଭିତରେ । କି ଆଶ୍ଚର୍ଯ୍ୟ! ଲକ୍ଷ୍ମୀର ନିଦ ଭାଙ୍ଗିଗଲା ପୂରାପୂରି । ଅଳସ ଭାଙ୍ଗି ସେ ଉଠିବସି ମୁହୂର୍ତ୍ତେ ଭାବିଲା ଓ ଶବ୍ଦକୁ ନିଶ୍ୱାର ସହିତ ଅନୁସରଣ କଲା କିଏ, କ'ଣ, କାହିଁକି କହୁଛି - କୋଉ ଡାକ୍ତରବାବୁଙ୍କ କଥା । ଅଲେଖ କହୁଥିଲା କାହାକୁ "ରାଘବବାବୁ ଓ ଠକୁର ସାମନ୍ତ ହେମ ମାଉସୀଙ୍କ ଘରେ ବସିଛନ୍ତି । କଥା ହେଇସାରି ସେ ସରମାଁଙ୍କ ପାଖକୁ ଯିବେ ।"

ଚକିତ ହେଲା ଲକ୍ଷ୍ମୀ । ହେ ଭଗବାନ! ସେ ତା'ହେଲେ ସ୍ୱପ୍ନ ଦେଖିନି । କିନ୍ତୁ ତାକୁ ଆଶ୍ଚର୍ଯ୍ୟ ଲାଗିଲା, ସେ କିମିତି ଜାଣିନି, ଠକୁର ସାମନ୍ତଙ୍କ ଆସିବା କଥା । ତାକୁ ତ କିଏ କାହିଁ କହିନି । ଭାବୁ ଭାବୁ ସେ ଅଧୀର ହେଇ ଉଠିଲା ବି । ହଠାତ୍ ତା' ଚେତନାର ଚୂତ ଡାଳରେ 'କୁହୁ' ଡାକି ଉଡ଼ିଗଲା କୋଇଲିଟିଏ । ଉଚ୍ଚକିତ ହେଲା ରାଇ ବିନୋଦିନୀ - ଭାବିଲା 'ବସନ୍ତ' ପଶି ଆସିଛି ବାଟଭୁଲି । ମାଖି ହେଇଗଲା ଆଖିରେ ଆଖିଏ ସ୍ୱପ୍ନ । ତାର ନିଭୃତ ମନ ଅରଣ୍ୟରେ କୃଷ୍ଣଚୂଡ଼ାର ମହୋତ୍ସବ ଲାଗିଲା । ଉଚ୍ଛନ୍ନ ହେଲା ମନ' ହସ ଉକୁଟିଲା ଓଠ ଫାଙ୍କରେ । ଦେଖା କରିବ ବୋଲି ଦୌଡ଼ି ଯାଉଥିଲା, ମନେ ପଡ଼ିଗଲା, ବାପାବୋଉଙ୍କ ସହିତ ସେ କଥା ହେଉଛନ୍ତି - ସମ୍ଭ୍ରମତା ବାଟ ଓଗାଳିଲା, କେମିତି ଯିବ । ବୋଉ କଣ ଭାବିବ । ତା' ଆଖିରେ ତ କିଛି ଲୁଚିବନି । ଲାଜ ମାଡ଼ିଲା, ନା, ଯିବନି । ଦୁଆର ଖୋଲିବା ଆଗରୁ ଅଟକିଗଲା ପାଦ । ଯିବନି ସେ.... କାହିଁକି ବି ଯିବ ଯେ ? ସେ କିଏ କି ? ଆପଣାର ମନେ କରିଥିଲେ, ନିଚ୍ଚେ ଜଣେଇନଥାନ୍ତେ ତାକୁ, ଫୋନ୍‌ଟିଏ ତ କରିପାରିଥାନ୍ତେ । ଅଭିମାନ ମାଡ଼ି ବସିଲା - ଫାଟି ପଡ଼ିଲା ଭାରି ମନ । ତାକୁ ନ ଖୋଜିଲା ପର୍ଯ୍ୟନ୍ତ ସେ ଯିବନି । ତା'ର ଆତ୍ମସମ୍ମାନ ନାହିଁ ? ଲକ୍ଷ୍ମୀ ବସିପଡ଼ିଲା ଖଟ ଉପରେ ଗୁମାନୀ ହେଇ ।

କଥାବାର୍ତ୍ତା ସାରି ରାଘବବାବୁ ଉଠିଲେ । "...ଏଥର ଆମେ ସରମାଁଙ୍କ ପାଖକୁ ଯିବାକୁ ହେବ । ଆମେ ଉଠୁଛୁ କେଶବା । ଆଉ କାହାର ବି ବ୍ୟସ୍ତ ହେବାର ନାହିଁ । ଏଣିକି ଆମେ ଆଉ ଛାଡ଼ିବାନି ଠକୁର ସାମନ୍ତଙ୍କୁ... କଥା ରହିଲା..." ।

ମିଠାହସର ମୁଠାଏ ଭେଟି ଦେଇ ଠକୁର ସାମନ୍ତ ଆଗେଇ ଗଲେ ସରମାଁଙ୍କ ଉଦ୍ଦେଶ୍ୟରେ ।

କ'ଣ ଭାବିଲେ କେଜାଣି, ଠିଆ ହେଇଗଲେ ଭୃଗୁ, ସରମାଁଙ୍କ ରୁମ୍ ସାମନାରେ ରାଘବବାବୁଙ୍କୁ ସଂକେତ କଲେ 'ଆପଣ ଭିତରକୁ ଯା'ନ୍ତୁ ପ୍ରଥମେ । ମୁଁ ତାଙ୍କର ପ୍ରତିକ୍ରିୟା କ'ଣ ଦେଖିବାକୁ ଚାହେଁ ।

ପରଦା ଆଡ଼େଇଲେ ରାଘବବାବୁ । ସନ୍ଧ୍ୟା ହୋଇନଥିଲା । ତେବେ ଆକାଶରେ ମେଘ ଥିଲା । ତେଣୁ ଘର ଭିତରଟା ମଳିଛିଆ ଦିଶୁଥିଲା । ସରମାଁ ପଦଚାରଣା କରୁଥିଲେ ଏପାଖ ସେପାଖ ହୋଇ । ଅନ୍ୟମନସ୍କ ଥିଲେ ନିଶ୍ଚୟ । କୁଆଡ଼କୁ ଚାହୁଁ ନ ଥିଲେ ।

କିଛି ସମୟ ଠିଆ ହୋଇ ଲକ୍ଷ୍ୟ କଲେ ଦୁହେଁ । ଭୃଗୁଙ୍କୁ ଲାଗିଲା ସରମାଁଙ୍କ ଦୃଷ୍ଟିରେ ସ୍ଥିରତା ନାହିଁ । ଏବେବି ସେ ସେଇ ଭ୍ରାନ୍ତି ଭିତରେ ଅଛନ୍ତି । ଅଥଚ ସେ ଯିବା ପୂର୍ବରୁ ତାଙ୍କର ମାନସିକ ସ୍ଥିତି ଭଲ ହୋଇ ଆସୁଥିଲା । ବୁଝିପାରିଲେ – ସେ, ସରମାଁ ପୁଣି ଆଘାତ ପାଇଛନ୍ତି । ଔଷଧ ବି ତା'ପାଇଁ ଦିଆଯାଇନି.... ଦୁଃଖ ଲାଗିଲା ତାଙ୍କୁ । ଏଥିପାଇଁ ସେ ନିଜେ ହିଁ ଦାୟୀ ।

ନିଜ ଭାବପ୍ରବଣତାର ଶିକାର ହୋଇ ଦାୟିତ୍ୱର ଖିଲାପ କରିଛନ୍ତି । ଭୁଲିଯାଇଛନ୍ତି ସେ ଜଣେ ଚିକିତ୍ସକ । ଏ କଥା ଭାବିଲାବେଳକୁ ଅପରାଧବୋଧରେ ମନ ଭାରାକ୍ରାନ୍ତ ହୋଇ ଉଠିଲା । ଦୀର୍ଘ ନିଃଶ୍ୱାସ ନେଇ ଭୃଗୁ ରାଘବବାବୁଙ୍କୁ କହିଲେ, "ଏଥର ଭିତରକୁ ଯାଇ ଆପଣ କଥାବାର୍ତ୍ତା କରନ୍ତୁ ।"

ପାଦ ବଢ଼େଇଲେ ରାଘବ ବାବୁ ଘର ଭିତରକୁ... ଡାକିଲେ... 'ସରମାଁ...'

ହଠାତ୍ ଠିଆ ହୋଇଗଲେ ସରମାଁ ଡାକ ଶୁଣି । କିଏ ? ଲକ୍ଷ୍ମୀ ?

"ନା, ମୁଁ 'ରାଘବ' ସରମାଁ । କେମିତି ଅଛ ତମେ ? କହୁ କହୁ ସୁଇଚ୍ ଟିପି ଆଲୁଅ ଜାଳିଲେ । ବିଞ୍ଚି ହୋଇଗଲା ଆଲୁଅ ।

ଆଖିରେ ପ୍ରଶ୍ନବାଚୀ ନେଇ ବିସ୍ମୟ ଦୃଷ୍ଟିରେ ଚାହିଁଲେ ସରମାଁ ଆଗନ୍ତୁକଙ୍କୁ ।

"କିଏ ଆସିଛନ୍ତି ଦେଖିଲ.... ଭୃଗୁଙ୍କୁ ସାମ୍ନାକୁ ଆଣି ପଚାରିଲେ "ଚିହ୍ନିପାରୁଛ, କିଏ ଏଇ ଭଦ୍ରଲୋକ ?"

ପାଦେ ପାଦେ ଆଗେଇ ଆସିଲେ ସରମାଁ, ଦୁହିଁଙ୍କର ଏକଦମ୍ ପାଖକୁ । ଏକାଗ୍ର ଦୃଷ୍ଟିରେ ଚାହିଁଲେ ମୁହୂର୍ତ୍ତେ । ମନକୁ ମନ କଣ ସବୁ ବିଡ଼ବିଡ଼୍ ହେଉଥାନ୍ତି – ହୁଏତ ଚିହ୍ନିବାକୁ ଚେଷ୍ଟା କରୁଥାନ୍ତି । ହଠାତ୍ କହିଲେ ଚିହ୍ନିଛି – 'ରାଘବ' । ଆଉ ଏଇ ଜଣକ... ଦୃଷ୍ଟି ସ୍ଥିର ରହିଲା ଭୃଗୁଙ୍କ ଉପରେ... ଆଉ ଅପେକ୍ଷା ନ କରି ନଇଁ ପଡ଼ିଲେ ଭୃଗୁ ମାଁଙ୍କ ପାଦ ଛୁଇଁବାକୁ ଏବଂ ଚମକି ପଡ଼ିଲେ ସରମାଁ । ଇଏ ତ ମୋ ପୁଅ ଭାର୍ଗବ...ଭୃଗୁ... ଛୋଟ ପିଲାଙ୍କ ଭଳି କୋଳେଇ ଧରି ପଚାରି ଚାଲିଲେ – "ଏତେଦିନ ଧରି କୁଆଡ଼େ ଥିଲୁ ବାବା... ମୁଁ ଚାହିଁଛି ତୋ' ଆସିବା ବାଟକୁ.... ଶୋଇନି ଏଯାଏ... ଚାହିଁଛି... ଅଣ୍ଡାଳି ପକେଇଲେ ଥରକୁ ଥର ଭୃଗୁଙ୍କ ଦେହ ମୁହଁକୁ । କିରେ ମୁହଁ କାହିଁକି ଶୁଖିଲା ଦିଶୁଛି, ଖିଆପିଆ କରୁନଥିଲୁ ନା, କାମ ବେଶୀ ପଡ଼ିଲା ? ଏବେ ଖାଇନୁ ? ? ଅନେକ ପ୍ରଶ୍ନ ଭୃଗୁଙ୍କ ପାଇଁ ।"

ଆଖି ଢଳେଇ ଆସିଥିଲା ଭୃଗୁଙ୍କର । ସ୍ନେହପ୍ରବଣ ମାତୃତ୍ୱ ଆଗରେ ତାଙ୍କ ମଥା ନଇଁ ଆସିଥିଲା । ନିଜକୁ ଅପରାଧୀ ମନେହେଲା । କହିଲେ, ମୋତେ କ୍ଷମା କର ମାଁ, ମୋର ଭୁଲ୍ ହେଇଯାଇଛି ।

ମା'ପୁଅଙ୍କର ଏଇ ମହାମିଳନକୁ ପ୍ରାଣଭରି ଉପଭୋଗ କରୁଥିଲେ ରାଘବବାବୁ । ହଠାତ୍ ନିଦରୁ ଉଠିଲା ଭଳି ବିଳିବିଳେଇଲେ ସରମାଁ । ଲକ୍ଷ୍ମୀ... ଲକ୍ଷ୍ମୀ... କିଛି ଖାଇବାକୁ ଆଣିବୁ । ପୁଅଟା ମୋର ଏଯାଏ ଭୋକିଲା ଅଛି । କୁଆଡ଼େ ଗଲା ଝିଅଟା ଏପାଖ ସେପାଖ ଚାହିଁ ଖୋଜିଲେ ଲକ୍ଷ୍ମୀକୁ ।

ହଠାତ୍ ରାଘବବାବୁଙ୍କର ମନେ ପଡ଼ିଗଲା, ସତେତ, ଏ ପର୍ଯ୍ୟନ୍ତ ଲକ୍ଷ୍ମୀ ସହିତ ଦେଖା ହେଇନି । ସେ କ'ଣ ନାହିଁ, ଯାଇଛି କୁଆଡ଼େ ? ଥରେ ଦେଖି ଆସେ... ଭାବି, ଭୃଗୁଙ୍କୁ କହିଲେ- "ମୁଁ ଟିକିଏ ଆସୁଛି ସାଂଗେ ସାଂଗେ.... ।"

ରାଘବବାବୁ ଯିବା ପରେ ସରମାଁଙ୍କୁ ପାଖରେ ବସାଇ ଅନେକ ଆଡୁ ଅନେକ କଥା ଗପିଲେ ଭୃଗୁ । ଅନେକ ପ୍ରଶ୍ନ ସରମାଁଙ୍କର, ମାତୃତ୍ୱର ଭୋକିଲାପଣ ଢୋକ ଢୋକ କରି ପିଇ ଯାଉଥିଲା, ଭୃଗୁଙ୍କ ସ୍ନେହାଙ୍କିତ ନିଛଳ କଥାକୁ । ହଠାତ୍ କଥାରେ ବାଧା ଦେଇ ଅଲେଖ ପଶି ଆସିଲା ଘର ଭିତରକୁ କହିଲା, ରାଘବ ସାର୍ ଟିକିଏ ଅଫିସ୍‌କୁ ଯାଇଛନ୍ତି । କାମ ସାରିଦେଇ ଆସିବେ, ମୁଁ ଦେଇଙ୍କୁ ଖବର ଦେଇ ଆସିଛି- ସେ ଆସୁଛନ୍ତି । ଅଲେଖ ଚାଲିଗଲା ।

ଚମକ ଲାଗିଲା ଭୃଗୁଙ୍କ ମନରେ । ଏ ଯାଏ ତ ସେ ତାକୁ ହିଁ ଅପେକ୍ଷା କରିଛନ୍ତି । ନିଶ୍ଚୟ ଅଭିମାନ କରିଛି ଲକ୍ଷ୍ମୀ ତାଙ୍କ ଉପରେ... । ସେ କ'ଣ ଶୁଣିନି ତାଙ୍କର ଆସିବା ଖବର ଏଯାଏଁ ।

ଭାବନା ଛିଣ୍ଡିଗଲା । ଦଲକାଏ ପବନ ଚିହ୍ନା ବାସ୍ନାକୁ ସାଥିରେ ନେଇଁ ବହି ଆସିଲା । ଭୃଗୁ ଦୁଆର ଆଡ଼କୁ ଚାହିଁଲେ ଆଘ୍ରାଣ କରୁ କରୁ.... ହଠାତ୍ ପ୍ରଭାତର ଶାନ୍ତ କିରଣ ଭଳି କୋଠରି ଭିତରକୁ ପଶିଆସିଲା ଲକ୍ଷ୍ମୀ ପରଦା ଆଡ଼େଇ ।

ଅପଲକ ଦୃଷ୍ଟିରେ ଚାହିଁଥିଲେ ଭୃଗୁ ସେଇ ଶାନ୍ତ ସ୍ନିଗ୍ଧ ଆଲୋକର ରମଣୀୟ ପ୍ରଭାତକୁ । ଭାବି ପାରିଲେନି କେମିତି ସ୍ୱାଗତ କରିବେ ସେଇ ପ୍ରୀତିର ପ୍ରତିମାକୁ । ମନ ଉଚ୍ଛୁଳି ଉଠୁଥିଲା ଅଥଚ ଓଠରେ ଭାଷା ସ୍ଫୁରୁନଥିଲା । କେବଳ ଚାହିଁ ରହିଥିଲେ ବିଭୋର ହେଇ.... ।

ଏଥର ପ୍ରତିମା ପାଦ ବଢ଼େଇଲା ଆଗକୁ । ପାଖକୁ ଆସି ସାମ୍ନାରେ ଠିଆ ହେଲା ସଂକଳ୍ପର କଳସ ଭଳି ଏବଂ ନଇଁପଡ଼ି ପାଦ ଛୁଇଁ ପ୍ରଣାମ କଲା ଭୃଗୁଙ୍କୁ । ଉଚ୍ଚକିତ ହେଲା ଆକାଶ । ସତେକି ଜହ୍ନ ଫୁଲିଆ ରାତିଟେ ଓହ୍ଲେଇ ଆସି ତାଙ୍କ ଭିତରକୁ

ଝିରି ଝିରି ଜ୍ୟୋତ୍ସ୍ନାରେ ଜ୍ୟୋତ୍ସ୍ନାୟିତ କରିଦେଲା । ସେ ଭିଜି ଯାଉଥିଲେ ଜ୍ୟୋତ୍ସ୍ନାରେ ଏବଂ କଦମ୍ବ ରୋମାଂଚିତ ହେଉଥିଲା କ୍ରମଶଃ । ଦୁହେଁ ଠିଆ ହେଇଥିଲେ ନିରବରେ - ସେଠି ଶବ୍ଦ ନ ଥିଲା କି ଭାଷା ନ ଥିଲା । ଆଖି କଥା କହୁଥିଲା । ସମୟ ସ୍ଥିର ହେଇ ଯାଇଥିଲା । ନୀରବତାର ମାନେ ତ ନୀରବତା ହିଁ ବୁଝେ । ଏକ ବିହ୍ୱଳିତ ମୁହୂର୍ତ୍ତ । ମହାମିଳନର ରଂଗଭୂମି ସତେ କି! ସଂପର୍କର ଉର୍ଦ୍ଧ୍ୱରେ ଆଉ ଏକ ସଂପର୍କ ଯେଉଠି ସାମାଜିକ ବଂଧନ, ପରିଚିତ ପୃଥିବୀ ତାର ପରିଚୟ ବୋଲି କିଛି ନଥାଏ - ସୃଷ୍ଟିର ଆଦି ନାରୀ, ଆଦି ପୁରୁଷ ସତେ ଯେମିତି ଆଦି ନିୟମରେ ବନ୍ଧା । ମାନ ଅଭିମାନର ସଂଘାତ ନଥିଲା । ମୋହନବଂଶୀର ଲହରିତ ରାଗର ଆରୋହ ଅବରୋହଣର ସଂଚାରୀ ଭାବ ଉଲ୍ଲସିତ କରୁଥିଲା ଦୁଇ ପ୍ରତୀକ୍ଷିତ ହୃଦୟକୁ ଏବଂ ମୁହୂର୍ତ୍ତକ ପାଇଁ ହଜିଯାଇଥିଲେ ଦୁହେଁ ଏକ ଉଚ୍ଚାଙ୍ଗ ପରିଧିରେ । ଅଥଚ ଦୁହେଁ ଥିଲେ । ଗୋଟାଏ ଅପାର୍ଥିବ ଶିହରଣ ଥିଲା ।

କିଛି ମୁହୂର୍ତ୍ତ କଟିଗଲା ଏମିତି.....

ପ୍ରଥମେ ସରମାଁ ହିଁ ନିରବତା ଭାଙ୍ଗିଲେ, "କିରେ ଦୁହେଁ ଏମିତି ଚାହିଁ ରହିଛ କ'ଣ ପଥର ଭଳି । ମୋ' ପାଖରେ ବସ । ଆଉ.....ଲକ୍ଷ୍ମୀ, ତୁ ଏଯାଏ କୋଉଠି ଥିଲୁ କି... କେତେ ଖୋଜିଲିଣି ତୋତେ... ମୋ' ପୁଅ ପରା ଆସିଛି । ଖାଇନି ଏଯାଏ.... ତୁ ବି ତା ପାଇଁ କିଛି ଆଣିନୁ.... କହିଲି ପରା ଆଣିବାକୁ ।

ସଚେତନ ହେଲା ଲକ୍ଷ୍ମୀ... ଭାବନା ଜଗତରୁ ଓହ୍ଲେଇ ଆସିଲା । ସଂକୁଚିତ ହୋଇ କହିଲା, "ସାଂଗେ ସାଂଗେ ଯାଉଛି ସରମାଁ, ନେଇ ଆସିବି" । ଉଠି ଯାଉଥିଲା.... ହଠାତ୍ ହାତଧରି ଅଟକେଇ ଦେଲେ ଭୃଗୁ । "ନା ଥାଉ, ମୋର ଭୋକ ନାହିଁ । ବରଂ ତମେ ବସ ଲକ୍ଷ୍ମୀ..... ମୋର ଯେ ଅନେକ କଥା କହିବାର ଅଛି ତମକୁ..."

ଠିଆ ହେଇଗଲା ଲକ୍ଷ୍ମୀ.... ଭୃଗୁଙ୍କ ମୁହଁକୁ ଚାହିଁଲା ପ୍ରଶ୍ନିଳ ଆଖିରେ । "କିଛି କହିବେ ମୋତେ ? ?"

କଥା ପୂରିଲାନି, ରାଘବ ବାବୁଙ୍କ ମୁହଁ ଦିଶିଲା । ପରଦା ଆଡ଼େଇ ପଶି ଆସୁ ଆସୁ କହିଲେ.... "ଆମେ ପରା କ୍ଲିନିକ୍‌କୁ ଯିବା... ତୁମ ବଂଧୁମାନେ ସେଠି ଅପେକ୍ଷା କରିଛନ୍ତି - ଫୋନ୍ କରିଥିଲେ ଡାକ୍ତର ଅଭିଜିତ୍ ।"

ଅଗତ୍ୟା ଉଠୁ ଉଠୁ ଭୃଗୁ ସରମାଁଙ୍କୁ ଲକ୍ଷ୍ୟ କରି କହିଲେ- "ମୋତେ ଯିବାକୁ ହେବ ମା', ବଂଧୁମାନେ ଅପେକ୍ଷା କରିଥିବେ । ମୁଁ ପୁଣି ଆସିବି କାଲି.... କଥା ହେବା ।"

ଦୁହିଁଙ୍କୁ ବିଦାୟ ଦେବା ପାଇଁ ଲକ୍ଷ୍ମୀ ଆଗେଇ ଗଲା ରାସ୍ତା ଯାଏ କହିବା କଥା ଯାହା, କହିପାରିଲେନି । ଅଧା ରହିଲା ସାକ୍ଷାତ୍ । ମନ ପୂରିଲାନି । ସମୟର ବିଚିତ୍ର ଖେଳ । ବେଳେବେଳେ ଏମିତି ହୁଏ । ବଂଧୁମାନଙ୍କ ସହିତ ସାକ୍ଷାତ୍ କରି ଘରକୁ

ଫେରୁ ଫେରୁ ଟିକିଏ ବିଳମ୍ବ ହେଇଯାଇଥିଲା । ବିଛଣାକୁ ଯିବା ପୂର୍ବରୁ ଭାବିଲେ, ଲକ୍ଷ୍ମୀକୁ ଫୋନ୍ କରିବେ.... ପୁଣି ମନକୁ ଆସିଲା ଯଦି ସେ ଶୋଇପଡ଼ିଥିବ, ଖରାପ ବି ଭାବିପାରେ..... ପୁଣି ଭାବିଲେ, ନା, ସେ ଫୋନ୍ ହିଁ କରିବେ କାରଣ ସମୟ କେବେ ନିଜେ ଆସି ଧରା ଦେବନି । ଏମିତି ସବୁବେଳେ କିଛି ନା କିଛି ବାହାନା କରି ବାଟ ଓଗାଳିବ - ମନର କଥା ମନରେ ରହିଯିବ ସୁଯୋଗ ଖୋଜୁ ଖୋଜୁ । ଖୋଜିଲେ ଲକ୍ଷ୍ମୀକୁ ଫୋନ୍‌ରେ ।

ଲକ୍ଷ୍ମୀ କିନ୍ତୁ ଶୋଇ ନ ଥିଲା । ମନରେ ସାମାନ୍ୟ ଟିକେ ଉଦ୍‌ବେଗ ଥିଲା ନିଶ୍ଚୟ । ତେବେ ସରମାଁକୁ ଔଷଧ ଦେଇ ନିଜ ରୁମ୍‌କୁ ଆସି କିଛି ସମୟ ବସିଗଲା ଟେବୁଲ୍ ପାଖରେ । ପଢ଼ାରେ ମନ ନ ଥିଲା କି ନିଦ ଆଖିରେ ନ ଥିଲା । ଟେବୁଲ୍ ପାଖରେ ବସି ଭାବନାର ଦୁଆର ଖୋଲିଦେଲା । ସନ୍ଧ୍ୟାବେଳର ସାକ୍ଷାତ୍‌ର ମୁହୂର୍ତ୍ତକୁ ମନେ ପକେଇବାକୁ ଯାଉଛି.... ଫୋନ୍ ରିଂ ହେଲା ।

ଲକ୍ଷ୍ମୀର ନିଃଶ୍ୱାସ ରୋକି ହେଇଗଲା ଫୋନ୍ ଧରୁଧରୁ । ଭୃଗୁଙ୍କର ଥିଲା ଫୋନ୍‌ଟା । ସେ ପାଖରୁ ସେ ପଚାରୁଥିଲେ ଶୋଇପଡ଼ିନ ତ ଲକ୍ଷ୍ମୀ ! ମୁଁ ତୁମକୁ ଡିଷ୍ଟର୍ବ କରୁନି ତ ?

ଅନେକ ଦିନ ପରେ.... ଭୃଗୁଙ୍କର ଫୋନ୍... ସେମିତି ମିଠାକଥା ନିବେଦନ କଲା ଭଳି ଅନୁରୋଧ ଠାଣିରେ, ସେଥିରେ କିଛି ଅଧିକାରପଣ ନାହିଁ, ଏକଦମ୍ ସହଜ, ଶାନ୍ତ ବିଚିତ୍ର ମଣିଷ ସତେ, ରାଗି ହୁଏନି, ଅଭିମାନ ବି କରିହୁଏନି, ହଠାତ୍ ଉତ୍ତର ସେ ଦେଇ ନ ପାରି ମୁହୂର୍ତ୍ତେ ସ୍ଥିର ହେଇଗଲା ।

"ମୋ ଉପରେ ଅଭିମାନ କରିଛ ଲକ୍ଷ୍ମୀ, ମୋତେ କ୍ଷମା କରିପାରିବନି ?"

ବରଫର ପାହାଡ଼ ତରଳିଗଲା, "ନା ନା, ସେମିତି କୁହନ୍ତୁନି । କିଛି ଭାବିନି ମୁଁ କିଛି ବି ମନେ କିରିନି । ମଣିଷ ତ ପରିସ୍ଥିତିର ଦାସ । ଏକଥା ମୁଁ ଅନୁଭବ କରିଛି ମୋ' ଛୋଟ ଜୀବନରେ ।"

"ସତ କହୁଛ ଲକ୍ଷ୍ମୀ ।"

"ମୋ' ନିଜ ଉପରେ ବିଶ୍ୱାସ ଅଛି । ମୁଁ ତ କହିଛି, ରାସ୍ତାକଡ଼ର ଦୁବଘାସ ମୁଁ ମାଟିରେ ଠିଆ ହୋଇଛି । ଯେତେ ଝଡ଼ଝଞ୍ଜାକୁ ସାମ୍ନା କରିବାର ଶକ୍ତି ଅଛି ମୋ ପାଖରେ ।"

ଅନେକ ସମୟ ପର୍ଯ୍ୟନ୍ତ ଦୁହେଁ କଥା ହେଉଥିଲେ । ମନ ଖୋଲା କଥାବାର୍ତ୍ତା । ଏ ପର୍ଯ୍ୟନ୍ତ ନିଜ ଭିତରେ ଚାପି ରଖିଥିବା ଅକୁହା କଥାକୁ ଖୋଲି ଦେଉଥିଲେ ଭୃଗୁ ଲକ୍ଷ୍ମୀ ପାଖରେ । ସେଥିପାଇଁ କୌଣସି ଭୂମିକାର ଆବଶ୍ୟକ ହେଉନଥିଲା । ସେ ଯେ ଗୋଟାଏ

ଭୁଲ୍ ବୁଝାମଣାର ଶିକାର ହୋଇ ଅଭିମାନରେ ଘର ଛାଡ଼ିଥିଲେ - ଜୀବନ ତାଙ୍କ ପାଇଁ ତୁଚ୍ଛ ମନେ ହେଉଥିଲା । ହେଲେ ଏହି ତିନି ଚାରିମାସର ଆଶ୍ରମ ଜୀବନ ତାଙ୍କୁ ଅନେକ କିଛି ଶିଖେଇଛି । ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ସେ ବୁଝିପାରିଛନ୍ତି । ଅବଶ୍ୟ ନିଜ ବିଚାରକୁ ସ୍ଥିର ରଖିଥିଲେ ହୁଏତ ପରିସ୍ଥିତି ଏଭଳି ସମ୍ବେଦନଶୀଳ ହୋଇନଥାନ୍ତା । "ଏବେ ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି, ମୁଁ କିମିତି ନିଜ ଉପରୁ ବିଶ୍ୱାସ ହରେଇଲି ଲକ୍ଷ୍ମୀ ସେତେବେଳେ ଓ କାହିଁକି ?"

"ପରିସ୍ଥିତି କେବେ, କାହିଁକି ଓ କେମିତି ଉପୁଜେ ଆମେ ଜାଣୁନା । କିନ୍ତୁ ଉପୁଜେ ଏବଂ ମଣିଷ ତାକୁ ସହେ, ଅଗତ୍ୟା । ଏଇ ଯୁଦ୍ଧ ତ ଅହରହ ଚାଲିଛି ମଣିଷ ଜୀବନରେ । ପରିସ୍ଥିତିରୁ ତ ମଣିଷ ଶିଖେ । ତା' ଭିତରୁ ନିଜକୁ ନ ବର୍ତ୍ତେଇଲେ ଜୀବନ ଆଗୁସାର ହୁଏନି, ଆପଣ ହିଁ ଶିଖେଇଛନ୍ତି ଏ କଥା ମୋତେ । ମୁଁ ତାକୁ ହିଁ ସମୟ ବୋଲି କୁହେ - ଏବଂ ସେଇ 'ସମୟ'କୁ ଧୈର୍ଯ୍ୟର ସହିତ ଅପେକ୍ଷା କରେ' କିଏ କିଏ ତାକୁ 'ଜୀବନସଂଗ୍ରାମ' ବୋଲି କୁହନ୍ତି ତ କେହି କେହି ତାକୁ 'ମହାକାଳ' ର ନାଁ ଦିଅନ୍ତି - ତେବେ ପରିସ୍ଥିତି ପାଖରେ ମଣିଷ ହାତ ଟେକିଦିଏ ଅସହାୟ ଭାବେ ଏ କଥା ସତ ।

ଭୃଗୁ ଲକ୍ଷ୍ମୀ ସହିତ କଥା କହିଲା ବେଳେ କେବଳ ଆହ୍ଲାଦିତ ହେଉ ନଥିଲେ - ନିଜ ବିଶ୍ୱାସର କାନ୍ଥ ଉପରେ ଇଟା ଥୋଇ ମଜବୁତ୍ କରୁଥିଲେ । ନିଜକୁ ଭାଗ୍ୟବାନ୍ ମନେ କରୁଥିଲେ ଯେ, ସେ ଲକ୍ଷ୍ମୀ ଭଳି ସ୍ୱାଭିମାନୀ, ବୁଦ୍ଧିମତୀ ଝିଅକୁ ଜୀବନସାଥି ଭାବେ ପାଇଛନ୍ତି । ସେ ତାଙ୍କୁ କ୍ଷମା କରିଛି ।

ଅନେକ ଦିନ ପରେ ସେଦିନ ରାତିରେ ସେ ଶାନ୍ତିରେ ଶୋଇପାରିଲେ । ଖୁବ୍ ହାଲୁକା ଲାଗିଥିଲା । ଆଗାମୀ ଭବିଷ୍ୟତର ସ୍ୱପ୍ନ ଆଙ୍କି ହେଉଯାଉଥିଲା ମନର ପୃଷ୍ଠାରେ । ଏଇ ମଣିଷର ମନ ବି କେମିତି ଅଦ୍ଭୁତ । ହତାଶାର ଛୁଆଁ ଲାଗିଲେ ଜୀବନଟା ମିଛ ମନେ ହୁଏ ଆଉ ଆଶାର କାଉଁରୀ ଛୁଆଁରେ ସ୍ୱପ୍ନ ଲମ୍ବି ଲମ୍ବି ଯାଏ ଆଗାମୀ ପାଇଁ । ମନ ତାନ୍ତ୍ରର ଭୃଗୁ ସାମନ୍ତ କେବେ ପଡ଼ାବହିରେ ପଢ଼ିଥିଲେ ସିନା, ଆଜି ନିଜ ଜୀବନରେ ତାକୁ ଉପଲବ୍ଧି କରି ଚକିତ ହୋଇଯାଇଥିଲେ ।

ସମୟ ଆଗେଇଲା, ବଡ଼ ବଡ଼ ପାହୁଣ୍ଡ ପକେଇ । ସବୁ ସହଜ, ଗତାନୁଗତିକ ମନେ ହେଲା ସମୟର କାଉଁରୀ ଛୁଆଁରେ । ଆକାଶ ନିର୍ମଳ ହୋଇଯାଇଥିଲା ।

ସବୁଦିନ ଭଳି ଜଳଖିଆ ବାଢ଼ି ବିଜୁ କହିଲା, "ଏଥର ଆମେ ସରମାଁଙ୍କୁ ଘରକୁ ନେଇଁ ଆସିଲେ କିମିତି ହୁଅନ୍ତା ଭାଇ । ଅନେକ ଥର ସେ କହିଲେଣି, ଏଠି ମୋତେ ଆଉ ଭଲ ଲାଗୁନି । କେବେ ମୋତେ ଭୃଗୁ ଘରକୁ ନେବ ? ତା' ଛଡ଼ା ଦେଉଙ୍କର

ପରୀକ୍ଷା ପାଖେଇ ଆସୁଛି । ସେ ତ ପୁଣି ଯିବେ... ଟିକିଏ ରହି ପୁଣି କହିଲା, ମୋତେ ବି ଏଠି ଏକା ଭଲ ଲାଗୁନି । ତମେ କ୍ଲିନିକ୍ ଚାଲିଗଲେ ଘର ନିଛାଟିଆ - ଫେରିଲେ ବହି ଭିତରେ ମୁହଁ ଗୁଞ୍ଜିବ...ଘର ଘର ଭଳି ଲାଗୁନି ।"

ଭୃଗୁ ହସିଲେ.... ମୁଁ ତ ମନା କରୁନି, ହେଲେ ତୁ ତାଙ୍କ ଦାୟିତ୍ୱ ଠିକ୍‌ରେ ସମ୍ଭାଳି ପାରିବୁ ତ ?

କାହିଁକି ନ ପାରିବି, ହେଲେ ଗୋଟିଏ କଥା... କହିବ କି ନ କହିବ ଭାବି ମୁହୂର୍ତ୍ତେ ଅଟକି ଗଲା ।

"କ'ଣ ସେଇ ଗୋଟିଏ କଥା... କହୁନୁ" ?

"କଥା କ'ଣ କି, ମୁଁ କ'ଣ ସବୁଦିନ ଏମିତି ଏକା ସମ୍ଭାଳୁଥିବି - ଘରକୁ ଏଥର ଭାଉଜଟିଏ ଆଣିବନି... ସାହସ କରି କହିପକେଇ ଜିଭ କାମୁଡ଼ିଲା ବିଜୁ ।"

"ଭାଉଜ କ'ଣ ବଜାରରେ ମିଳେ ଯେ, କିଣିଆଣିବି ତୋ ପାଇଁ ?"

"ନା, ବଜାରରୁ କାହିଁକି ଠିକ୍ ଜାଗାରୁ ଆଣିବ, ତମେ ଖାଲି ହଁ କୁହ । ମୁଁ ତା'ର ବ୍ୟବସ୍ଥା କରିବି ।"

"ତୁ ଯଦି ସମ୍ଭାଳି ପାରିବୁ ତ ମାଁଙ୍କୁ ନେଇ ଆସ, ମୋତେ ଖୁସି ଲାଗିବ ।" ମନେ ମନେ ହସିଲେ ଭୃଗୁ, ସ୍ୱଗତୋକ୍ତି କଲେ । "ଏ ଯାଏ ମୋର ଘର କାହିଁରେ ବିଜୁ ?"

ଆହୁରି ଚାରିଦିନ ଗଡ଼ିଗଲା । ମନକୁ ମନ ବିଜୁ ଘରକୁ ସରମାଁଙ୍କ ସୁବିଧା ପାଇଁ ସଜାଡ଼ି ଚାଲିଲା । ସେଦିନ ରାତିରେ ଖାଇଲାବେଳେ ଭୃଗୁଙ୍କୁ କହିଲା ଭାଇ କାଲି ଗଣେଶ ପୂଜା, ଭାବୁଛି, ଏ ବର୍ଷ ଗଣେଶ ପୂଜା କରିବା ଘରେ - ଆଉ ଏଇ ମଉକାରେ ମା'ଙ୍କୁ ନେଇ ଆସିବା ।" ସମ୍ମତି ଦେଲେ ଭୃଗୁ । ମନେ ମନେ ବିଜୁ ଭାବିଲା, ଏଇ ଶ୍ରୀଗଣେଶରୁ ଆରମ୍ଭ ହେବ ଶୁଭକାମ ।" ଦେଖିବା, ତମ ଅଘରା ଜୀବନକୁ ମୁଁ ଯଦି ନବାନ୍ଧିଛି... ।

ପୂଜାଦିନ ସକାଳୁ ସକାଳୁ ଲକ୍ଷ୍ମୀ, ସୁଲତା ମାଉସୀ ଓ ଅଲେଖ ସହିତ ସରମାଁଙ୍କୁ ଡାକ୍ତର ସାମନ୍ତଙ୍କ ବସାଘରକୁ ନେଇ ଆସିଲା । ସରମାଁଙ୍କୁ ବିଦାୟ ଦେବାକୁ ଯାଇ ହେମ କହିଲା, "ମାଉସୀ ଏଥର ତମର ଆଉ ଦୁଃଖ ନାହିଁ, ପୁଅ ପାଖକୁ ଯାଉଛ ଆମମାନଙ୍କୁ ଭୁଲିଯିବନି" ।

ସରମାଁଙ୍କ ଛାତି ଫୁଲି ଉଠୁଥିଲା । ନିଜ ଘରକୁ ଯାଉଛନ୍ତି ବୋଲି । ପୂଜା ଅବସରରେ ବିଜୁ ରାଘବବାବୁଙ୍କୁ ବି ନିମନ୍ତ୍ରଣ କରିଥିଲା । ସ୍ୱାମୀ ସ୍ତ୍ରୀ ଉଭୟେ ଆସିଥିଲେ

ପୂଜାରେ ଯୋଗଦେବାକୁ । ଖୁସିରେ ଚଳଚଞ୍ଚଳ ହୋଇ ଉଠିଥିଲା ଭୃଗୁଙ୍କ ବସାଘର । ସୁଲତା ଆଉ ବିକ୍ରୁ ମିଶି ରୋଷେଇ କଲେ, ଭୋଗ ସଜାଡ଼ି ଦେଲା ଲକ୍ଷ୍ମୀ ।

ଭୃଗୁଙ୍କ ପାଇଁ ଏସବୁ ନୂଆ ଅନୁଭବ ଥିଲା । ତାଙ୍କ ସାମ୍ନାରେ ଲକ୍ଷ୍ମୀ ଚଳପ୍ରଚଳ କରୁଥିଲା, ପୂଜାକାମରେ ସାହାଯ୍ୟ କରୁଥିଲା - ସେ କଳ୍ପନା କରି ପାରୁନଥିଲେ । କେମିତି ଆଚମ୍ବିତ ଲାଗୁଥିଲା ତାଙ୍କୁ । ପୁଲକିତ ହେଉଥିଲେ ସେ । ଖିଆପିଆ ସରିଲା । ବିଘ୍ନରାଜଙ୍କ ପୂଜା ଆରାଧନା ଉଲ୍ଲାସର ସହିତ ସମ୍ପନ୍ନ ହେଲା । ଧୂପ ଦୀପ ଚନ୍ଦନର ମହକରେ ବସାଘର ମହକି ଉଠିଲା - ସନ୍ଧ୍ୟା ପର୍ଯ୍ୟନ୍ତ ଗହଳି ଲାଗିଥିଲା ।

ସନ୍ଧ୍ୟା ଆଳତି ସାରି ସମସ୍ତେ ଘରକୁ ଯିବାକୁ ପ୍ରସ୍ତୁତ ହେଲେ । ସରମାଁ ଲକ୍ଷ୍ମୀର ହାତକୁ ଧରି ପକେଇ କହିଲେ, "ମାଁ ତୁ ରହିଗଲେ ଏଠି ହୁଅନ୍ତାନି ? ମୋତେ ଭାରି ଏକା ଲାଗିବ ।"

ଅଭୟା ପାଖରେ ଠିଆ ହେଇଥିଲେ, ହସି ହସି କହିଲେ, "ମାଉସୀ ଆଜି ତ ଲକ୍ଷ୍ମୀ ରହିପାରିବନି । ତମେ ତାର ବ୍ୟବସ୍ଥା କର, ପଢ଼ାସରିଲେ ସେ ଆସି ରହିବ । କିନ୍ତୁ ଆଜି ତାକୁ ନେଇଁ ମୁଁ ଛାଡ଼ିଦେବି ଆଶ୍ରମରେ ।" ସରମାଁ ହଠାତ୍ କିଛି ବୁଝି ନ ପାରି ବୋକାଙ୍କ ଭଳି ଚାହିଁଲେ । କି ବ୍ୟବସ୍ଥା ସେ କରିବେ !!

ଭୃଗୁଙ୍କ କାନକୁ କଥାଟା ବାଜିଥିଲା, ସେ ନ ଶୁଣିଲା ଭଳି ଆଗକୁ ଟିକିଏ ମାଡ଼ିଗଲେ । ଲକ୍ଷ୍ମୀ ମୁହଁରେ ମୁଠାଏ ଫଗୁ ଯେମିତି କିଏ ବୋଳିଦେଲା । ତଥାପି ସେ ଖୁବ୍ ସଂଯତ ଏବଂ ନିର୍ବିକାର ଥିଲା ଭଳି କଥାର ମୋଡ଼ ବଦଳେଇ ସମସ୍ତଙ୍କୁ ପ୍ରଣାମ ଜଣେଇଲା ।

ସମସ୍ତଙ୍କୁ ନେଇଁ ଭୃଗୁ ଗାଡ଼ିରେ ଛାଡ଼ି ଆସିବାକୁ ଗଲେ । କ୍ରମଶଃ ସ୍ୱପ୍ନ ତେଢ଼ିଲା ଲକ୍ଷ୍ମୀ ଆଉ ଭୃଗୁଙ୍କ ମନରେ ।

ଆଶାତରୁରେ ଫଗୁଣର ଛୁଆଁ ଲାଗିଲା । ରୋମାଞ୍ଚିତ ହେଲା ତରୁର ତନୁମନ । ତା' ଶାଖା ପ୍ରଶାଖାରେ ସବୁଜ ସ୍ୱପ୍ନମାନେ ଆତ୍ମପ୍ରକାଶ କଲେ । କିଛିଦିନ ଗଲା.... ଦିନେ ବିକ୍ରୁ କିଛି ଗୋଟାଏ କାମର ବାହାନା ନେଇଁ ରାଘବ ସାର୍‌ଙ୍କ ଘରକୁ ଗଲା ଏକାନ୍ତରେ କିଛି କହିବ ବୋଲି । କହିବ, ଏଣିକି ଭୃଗୁଭାଇଙ୍କୁ ସଂସାରୀ କରିବାର ବନ୍ଦୋବସ୍ତ ସେ କରନ୍ତୁ । ତାଙ୍କୁ ସଂସାର ଭିତରେ ବାନ୍ଧି ନ ରଖିଲେ, କିଏ ଜାଣେ କେତେବେଳେ ପୁଣି ମନକୁ କୋଉ ଚିନ୍ତା ଢୁକିବ, ପୁଣି ଦିନେ ସବୁ ଛାଡ଼ିଛୁଡ଼ି ଚାଲିଯିବେ ହିମାଳୟ ବୁଲିବାକୁ । ମୁଁ କ'ଣ ସବୁଦିନେ ଏମିତି ଘର ସମ୍ଭାଳୁଥିବି ?

ହସି ପକେଇଲେ ରାଘବବାବୁ "ତୋର ଆଜି କ'ଣ ହେଇଛି କିରେ ବିକ୍ରୁ, ଏଭଳି ଚିନ୍ତା ତ ତୋ ମନକୁ ଆସେନି, କ'ଣ ହେଇଛି, କିଛି କହିଛନ୍ତି ଭୃଗୁ ?"

"କିଛି କହିଥିଲେ ଭଲ ହେଇଥାନ୍ତା । ସେ କିଛି ବି କହିବେନି ମୁଁ ଜାଣେ । ଭିତରମୁହାଁ ମଣିଷଟା ସେଇଥିପାଇଁ ତ ଚିନ୍ତା । ମୋର ଭାରି ଭୟ ହେଉଛି । ଥରେ ଧୋକା ଖାଇଛି ତା'ଛଡ଼ା ତାଙ୍କ ଆଗପଛ ଭାବିବାକୁ କିଏ ଅଛି ଯେ... ମୁଁ ଜାଣେ ସେ ଆପଣଙ୍କୁ ମାନନ୍ତି, ସମ୍ମାନ ଦିଅନ୍ତି, ଆପଣ କହିଲେ ଜୋର୍ ଦେଲେ - ସେ କାଟିପାରିବେନି ଆପଣଙ୍କ କଥାକୁ । ସେଇଥିପାଇଁ ଖାସ୍ ଆଜି ଆସିଲି", ଏକା ନିଃଶ୍ୱାସରେ କହିସାରି ବିଜୁ ଦମ୍ ନେଲା । "ମୁଁ ତ ଏକଥା କହିପାରିବିନି ।"

ଶୁଣିଲେ ରାଘବବାବୁ ମନ ଦେଇ ବିଜୁର କଥା । ସେ କିଛି ଅଯଥାର୍ଥ କଥା କହୁନି । ସତକଥା ମଣିଷଟାର ଆଉ କିଏ ବି ଅଛି ତା'ଆଗତ ଭବିଷ୍ୟତ ଚିନ୍ତା କରିବାକୁ । ଘର ବାନ୍ଧିବା ବୟସ ବି ହେଲାଣି । ଗୋଟାଏ ସ୍ନେହର ବନ୍ଧନରେ ବାନ୍ଧ ହେଇଯାଇଛି ବୋଲି, ବିଜୁ ମନକୁ କଥାଟା ଛୁଇଁଲା ସିନା.... । ଟିକିଏ ଚିନ୍ତା କରି କହିଲେ "ତୁ ଠିକ୍ କହିଛୁ, ମୋ ମନକୁ ବି ଆସୁଛି ଏଣିକି ତାଙ୍କୁ ଘରମୁହାଁ କରିବାକୁ ହେବ । ହେଲେ ଆମ ପସନ୍ଦର ଝିଅ ମନକୁ ପାଇଲେ ତ... ହୁଏତ ତାଙ୍କର ନିଜ ଇଚ୍ଛା ବୋଲି କିଛି ଥାଇପାରେ... ତୁ କ'ଣ କିଛି ଜାଣିଛୁ ସେଭଳି କିଛି.... ? ସେ ତ ସମାଜର ଜଣେ ପ୍ରତିଷ୍ଠିତ ବ୍ୟକ୍ତି... କହିଲାବେଳେ ରାଘବ ବାବୁଙ୍କ ଆଖି ଆଗରେ ଲକ୍ଷ୍ମୀର ଚେହେରାଟା ଭାସି ଉଠିଲା ଏବଂ ମୁହୂର୍ତ୍ତକରେ ମନ ତାଙ୍କର ଅସୁମାରୀ ସ୍ୱପ୍ନର ଜାଲ ବୁଣି ଦେଇଗଲା ବି.... । "ମୁଁ ତ ଛୋଟ ମଣିଷ, ମୋର ଛୋଟ ଆଖି ସାର୍ । ଦେଖିନି ମୁଁ ସେଭଳି କିଛି କଥା..."

ତେବେ.... ।

"ତେବେ..... କ'ଣ କହୁନୁ, କ'ଣ ମନକୁ ଆସୁଛି ତୋର ?"

ମୁଁ ଆଉ କାହାକୁ ଦେଖିଛି ଯେ.... ଥଙ୍ଗ ଥଙ୍ଗ ହେଇ ବିଜୁ କହିଲା- "ଆମ ଦେଈଙ୍କ ଛଡ଼ା ମୁଁ କାହାକୁ ଆଉ ଜାଣିନି.... ବେଳେବେଳେ ଭାଇ ତାଙ୍କୁ ପ୍ରଶଂସା କରନ୍ତି ।" ଯାହା ସାହସ ଗୋଟେଇ କହିପକେଇଲା ବିଜୁ ରାଘବବାବୁଙ୍କ ଆଗରେ ।

ହଠାତ୍ ରାଘବବାବୁଙ୍କ ସ୍ୱପ୍ନର ଜାଲ କେବଳ ଲମ୍ବି ଗଲାନି ତ ଟାଣ ବି ଧରିଲା ଯାହା ହେଉ ପିଲାଟିର ବିଚାର ଅଛି, ଆଖିବି ଅଛି । ମନେମନେ ବିଜୁକୁ ତାରିଫ୍ କରି ରାଘବବାବୁ କହିଲେ, "ସତରେ ଆଖି ଆଗରେ ସୁନାପ୍ରତିମା ଅଛି, ମୁଁ କେମିତି ଭାବି ପାରିନଥିଲିରେ । ତେବେ ଟିକିଏ ଚିନ୍ତିତ ହେଇ କହିଲେ - ପିଲାଏ ବଡ଼ ହେଲେଣି - ସ୍ୱାଧୀନ ଭାବେ ନିଜକୁ ଗଢ଼ିଛନ୍ତି ନିଜ ଶିଘରେ ମାଟି ଖୋଳିଛନ୍ତି ତ.... ସେଇ କଥା ଭାବୁଥିଲି... ।"

ବିଜୁ ଅନୁରୋଧ କଲା, ଚେଷ୍ଟା କରନ୍ତୁ ଆପଣଙ୍କ ପ୍ରକାରେ, ମୁଁ କିଛି କହିବିନି । ବିଦାୟ ନେବାକୁ ଚାହିଁଲା ବିଜୁ, ସରମାଁ ଖୋଜୁଥିବେ ଚା' ଖିଆ ବେଳ ହେଲାଣି ତାଙ୍କୁ ବେଶି ସମୟ ଏକା ରଖିବା ଠିକ୍ ନୁହେଁ । ଭାଇ ବି ଉଠିବେଣି, ସଂଜ ହେଇଯିବ ମୁଁ ଯାଉ ଯାଉ... ।

"ଠିକ୍ ଅଛି, ତୁ ଯା', ଦେଖେ ମୁଁ କ'ଣ କରିପାରୁଛି" କହିଲେ ରାଘବବାବୁ ।

ଦି' ପହରିଆ ବିଶ୍ରାମ କରୁ କରୁ ଅଭୟାଙ୍କ ଆଖି ଲାଗିଯାଇଥିଲା । ନିଦ ଭାଙ୍ଗିଲା ପରେ, ଦେଖନ୍ତି ତ ରାଘବବାବୁ ବାହାରଘରେ କାହା ସହିତ ଗପୁଛନ୍ତି । ସେ ଆଉ ଜାଣିବାକୁ ଚାହିଁଲେନି । ସିଧା ରୋଷେଇଘରେ ପଶି ତିନି କପ୍ ଚା' କରି, ଟ୍ରେ' ରେ ଧରି ଡ୍ରଇଂରୁମ୍‌କୁ ଯାଇ ଦେଖନ୍ତି ଗେଟ୍ ବନ୍ଦ କରି ଆସୁଛନ୍ତି ରାଘବବାବୁ ।

"କିଏ ଆସିଥିଲା କି ?" ମୁଁ ଚା' ନେଇ ଆସୁ ଆସୁ... ରାଘବବାବୁଙ୍କ ହାତକୁ ଚା' କପ୍ ବଢ଼େଇ ପଚାରିଲେ ଅଭୟା ।

"ବିଜୁ ଆସିଥିଲା," ଚା' କପ୍‌ରେ ଚୁମକ ଦେଇ କହିଲେ ସେ ।

ଏଇ ଅବେଳଟାରେ ହଠାତ୍ କ'ଣ ପାଇଁ ଆସିଥିଲା ଯେ, କିଛି ଅସୁବିଧା ହେଇନି ତ ?

ଅସୁବିଧା କିଛି ନାହିଁ । ତେବେ ଗୋଟାଏ ବିଚାର ନେଇ ଆସିଥିଲା ବିଜୁ । "ମୋର ସାହାଯ୍ୟ ବି ଚାହିଁଛି ।"

"ତୁମ ସାହାଯ୍ୟ! ବିସ୍ମୟ ପ୍ରକାଶ କରି କହିଲେ ଅଭୟା, କଥା କ'ଣ ?"

"ସେମିତି କିଛି ବିଚିତ୍ର କଥା ନୁହେଁ ବରଂ ସ୍ୱାଭାବିକ । ମୋ ମୁଣ୍ଡକୁ ଆସିନଥିଲା ସେକଥା । ଦି' ଢୋକ ଚା' ପାଟିକୁ ନେଇ କହିଲେ ରାଘବବାବୁ ।" ଏଇ ଆମ ଭୃଗୁବାବୁଙ୍କ କଥା । ମଣିଷଟା ଘରସଂସାର ଆଡ଼କୁ ମନ ଦେଉନି । ବୟସ ହେଲାଣି ବିବାହ ପାଇଁ । ହେଲେ କିଏ ଅଛି ଯେ ମନେ ପକେଇବ, ବିଜୁ ମୁଣ୍ଡକୁ ପଶିଛି ଖିଆଲଟା । ସେ ତ କହିପାରିବନି, ଦାୟିତ୍ୱଟା ମୋ ଉପରେ ଲଦି ଦେଲା... ।

"ସତେ ତ । ପାଗଳ ମଣିଷ, ପୁଣି ଯଦି ମନ ସନ୍ନ୍ୟାସ ଆଡ଼କୁ ମାତିବ, ଚାଲିଯିବେ ସିଆଡ଼େ, କହିବାକୁ ତ କେହିନାହିଁ," କଥା ଯୋଡ଼ିଲେ ଅଭୟା । ଏବେ ବିଜୁ କାହା କଥା କହୁଥିଲା ଯେ, ଅଛି କିଏ ଆଖିରେ ?

"କେହିନାହିଁ ସେମିତି । ମୋର କାହିଁକି ବିଜୁ କଥା ଶୁଣି, ଆମ ଲକ୍ଷ୍ମୀ କଥା ମନକୁ ଆସିଲା । ତାର ବି ତ ବିବାହ ବୟସ ହେଇଛି- ପଢ଼ା ବି ସରିଲାଣି - କହି ଅଭୟାଙ୍କ ମୁହଁକୁ ଚାହିଁଲେ, ତାଙ୍କ ପ୍ରତିକ୍ରିୟା ଜାଣିବାକୁ । ତମେ କ'ଣ ଭାବୁଛ କହିଲ, ମୁଁ ସେମିତି କିଛି 'ଆକାଶ କଇଁଆ' - କଥା ଭାବିନି ତ ? ଲକ୍ଷ୍ମୀ ଭୃଗୁ ସାମନ୍ତଙ୍କ ଯୋଗ୍ୟ ହେବନି ?"

"ନା, ନା ସେମିତି କାହିଁକି ଭାବୁଛ ଯେ ଲକ୍ଷ୍ମୀ ଯୋଗ୍ୟା ହେବନି । ମୁଁ ତ ପୁଣି ଆର୍ଯ୍ୟ ପାଇଁ ତାକୁ ଘରକୁ ଆଣିବା ପାଇଁ ଚାହୁଁଥିଲି । ଲକ୍ଷ୍ମୀ ତ ଲକ୍ଷ୍ମୀପ୍ରତିମା, ଯାହା ଘରକୁ ଯିବ, ସେଇ ଘର ଉଜ୍ଜ୍ୱଳ ହେବ । ତେବେ, ଯା ବି ସତ ଯେ ସେମାନେ ଉଚ୍ଚ ଶିକ୍ଷିତ, ନିଜ ନିଜର ରୁଚି ଅଛି । ଆମ ପସନ୍ଦ ତାଙ୍କ ପସନ୍ଦ ନ ହେଇପାରେ"- ଅଭୟା ନିଜ ବିଚାର ଥୋଇଲେ ।

ସେଇକଥା ହିଁ ଭାବୁଛି । ହେଲେ, ମୁଁ ଯେତେଦୂର ଦୁହିଁଙ୍କୁ ଜାଣିଛି, ଦୁହିଁଙ୍କ ବିଚାର, ଦୃଷ୍ଟିକୋଣ, ପସନ୍ଦ ଅପସନ୍ଦରେ କିଛିଟା ମେଳ ଅଛି । ଭୃଗୁ ଜଣେ ଡାକ୍ତର ପୁଣି ମନସ୍ତତ୍ତ୍ୱବିତ୍, ଲକ୍ଷ୍ମୀ ଆଉ କିଛିଦିନ ପରେ ପ୍ରଶାସନିକ ସେବାରେ ଯୋଗ ଦେବ - ଅନେକ ସମୟରେ ଦୁହିଁଙ୍କ ଆଲୋଚନାରେ ମୁଁ ସାମିଲ୍ ହେଉଛି, ଦୁହିଁଙ୍କ ମତିଗତି ଏକାପ୍ରକାର । ନିଜକୁ ନିଜ ପରିଶ୍ରମର ଫଳକୁ ଦେଶ ପାଇଁ, ମାନବ କଲ୍ୟାଣ ଉଦ୍ଦେଶ୍ୟରେ ସମର୍ପଣ କରିବା ପାଇଁ ଦୁହେଁ ସଂକଳ୍ପବଦ୍ଧ । ଦୁହିଁଙ୍କର ଚିନ୍ତାଧାରାରେ ସାମଞ୍ଜସ୍ୟ ଲକ୍ଷ୍ୟ କରି ମୋତେ ଖୁବ୍ ଖୁସି ଲାଗେ । ଦୁହେଁ ଜୀବନରେ ଅନେକ ପ୍ରତିବନ୍ଧକ, ପ୍ରତିକୂଳତା ଭିତରେ ଗତି କରିଛନ୍ତି । ଦୁହେଁ ନିଜ ନିଜ କର୍ତ୍ତବ୍ୟ ଓ ଦାୟିତ୍ୱ ପ୍ରତି ନିଷ୍ଠାବାନ୍ । ତମେ ତ ଲକ୍ଷ୍ମୀକୁ ପିଲାଟି ଦିନରୁ ଦେଖିଛ । ଦୁହେଁ କର୍ମ ଜୀବନରେ ସେବାକୁ ଜୀବନର ବ୍ରତ ଭାବେ ଗ୍ରହଣ କରିଛନ୍ତି । ଆମ ଜରାଶ୍ରମ ତାର ପ୍ରମାଣ ନା, କ'ଣ କହୁଛ ଅଭୟା ?

"ଏଥିରେ କୌଣସି ସଂଦେହ ନାହିଁ । ଆମ ଜରାଶ୍ରମ ତ ଲକ୍ଷ୍ମୀ ଆଉ ହେମଲତାର ନିଃସ୍ୱାର୍ଥପର ସେବା ଏବଂ ଶ୍ରଦ୍ଧାର ଫଳଶ୍ରୁତି ।" ଗଦଗଦ ହେଇ ଅଭୟା ପ୍ରଶଂସା ଆରମ୍ଭ କରିଦେଲେ ।

ରାଘବବାବୁ ମୁହୂର୍ତ୍ତେ ନିରବ ରହି କିଛି ଭାବିଲା ଭଳି କହିଲେ- "ମୋର କାହିଁକି ମନେ ହେଉଛି ବାହାରକୁ ନ ଦିଶିଲେ ବି ଦୁହେଁ ଦିହିଁଙ୍କୁ ପସନ୍ଦ କରନ୍ତି । ଲକ୍ଷ୍ମୀ ତ ଖୁବ୍ ଶାଳୀନ । ଏତେ ଶୀଘ୍ର ତା' ମନକୁ କେହି ପଢ଼ିପାରିବେନି । ଭୃଗୁ ବି କମ୍ ଭଦ୍ର ନୁହଁନ୍ତି । ସ୍ନେହୀ ମଣିଷ । ନହେଲେ ସରମା ଭଳି ପାଗଳୀକୁ ମା'ର ଆସନରେ ବସେଇ ପାରନ୍ତେ ! ଅଭୟା ସମର୍ଥନ କଲେ ରାଘବବାବୁଙ୍କ କଥାକୁ ।"

ତା'ହେଲେ ତମେ ଗୋଟିଏ କାମ କର ଅଭୟା, ଥରେ ହେମ ଆଗରେ କଥାଟା ପକାଇ ଦେଖ, ସେ କ'ଣ କହୁଛି ? ଆଉ ମୁଁ ପ୍ରକାରାନ୍ତରେ ଭୃଗୁଙ୍କୁ ଲକ୍ଷ୍ମୀର ପ୍ରସ୍ତାବ ଦେବି । ସେମାନଙ୍କର ମତ କଣ ଜାଣିଲା ପରେ ବାକି ସବୁ । ଆଲୋଚନା ସାଂଗ କରି ଦୁହେଁ ଉଠିଲେ ମନରେ ଉତ୍ସାହ ନେଇଁ । ସ୍ୱପ୍ନକୁ କେମିତି ବାସ୍ତବ ରୂପ ଦେବେ ସେଇକଥା ହିଁ ହୁଏତ ଚିନ୍ତା କରୁଥିଲେ ସ୍ୱାମୀ ସ୍ତ୍ରୀ ଦୁହେଁ ।

ସେଦିନର ଅସହାୟ ଗରିବ ଝିଅଟିର କାକୁସ୍ଥ ଚେହେରା ରାଘବବାବୁଙ୍କ ଆଖି ଆଗରେ ଭାସି ଉଠିଲା । ସୁନ୍ଦର ଶ୍ରୀମନ୍ତ ଅଥଚ ମଉଳି ପଡ଼ିଥିବା ମୁହଁଟି ବିକଳ ହୋଇ ତାଙ୍କ ଆଡ଼କୁ ସହାୟ ପାଇଁ ହାତ ବଢ଼େଇଥିଲା- ଆଖିରେ ଆକାଶେ ସ୍ୱପ୍ନ ନେଇ । ପରିସ୍ଥିତି ଆଗରେ ସେ ଅବାକ୍ ହୋଇଯାଇଥିଲେ । "ଅଥଚ ଆଜି.... ସେଇ ଝିଅ ଲକ୍ଷ୍ମୀ, ଆକାଶ ଆଡ଼କୁ ହାତ ବଢ଼େଇଥିବା ଲକ୍ଷ୍ମୀ ସବୁ ଅସମ୍ଭବକୁ ସମ୍ଭବରେ ପରିଣତ କରି ଆଜି ସଫଳତାର ଶୀର୍ଷରେ ଆକାଶକୁ ଛୁଇଁବ - ଭାବିଲା ବେଳକୁ ପୁଲକିତ ହୋଇ ଉଠିଲେ ରାଘବବାବୁ । ସତ କହିବାକୁ ଗଲେ ଲକ୍ଷ୍ମୀ ଜୀବନର ସଫଳତା ତ ତାଙ୍କ ନିଜ ଜୀବନର ସଫଳତା ! ଏକ ଅବ୍ୟକ୍ତ ଆନନ୍ଦରେ ଆଖି ବୁଜିଲେ ରାଘବବାବୁ ।"

ଶେଷ ପରୀକ୍ଷା ଦେଇ ସାରି ଲକ୍ଷ୍ମୀ ଫେରିଆସିଲା ଦିଲ୍ଲୀରୁ । ଖୁବ୍ ଭଲ କରିଥିଲା ପରୀକ୍ଷାରେ, ତେଣୁ ମନ ଉଷତ ଥିଲା - କେବଳ ଅପେକ୍ଷା ଥିଲା ପରୀକ୍ଷା ଫଳକୁ । ପରେ ପରେ ସେ ଟ୍ରେନିଂ ପାଇଁ ଚାଲିଯିବ ।

ରାଘବ ବାବୁ ଭାବିଲେ, ଆଉ ବିଳମ୍ବ କରିବା ଠିକ୍ ହେବନି । ଏଇଟା ଉପଯୁକ୍ତ ସମୟ । ଶୁଭସ୍ୟ ଶୀଘ୍ରମ୍ । ଅଭୟା ଶୁଣି କହିଲେ "ଚାଲ ଆଜି ଯିବା ଆଶ୍ରମକୁ ।"

ଖିଆପିଆ ସାରି ଦୁହେଁ ପ୍ରସ୍ତୁତ ହେଲେ । ଦି'ପହରିଆ ବିଶ୍ରାମ ବେଳ । କେଶବା ଘରେ ହେମଲତା ବିଶ୍ରାମ କରୁଥିଲା । ଅବେଳରେ ହଠାତ୍ ଅଭୟା ମା', ତାଙ୍କ ସହିତ ରାଘବବାବୁଙ୍କୁ ଦେଖି ଅବାକ୍ ହୋଇଗଲା ହେମ । ଆରେ, ମା' ଯେ.... ବଜାର ଆଡ଼େ ବାହାରିଥିଲେ ବୋଧେ..... ଆସ ମା' ଭିତରକୁ ଆସ, ମୁଁ ଯାଏ ଚଉକି ଦି'ଟା ନେଇ ଆସେ..... ବିଛଣାରେ ଥାଇ ପ୍ରଣାମ ଜଣାଇଲା କେଶବା ଦୁହିଁଙ୍କୁ । "ନାଇଁ ଥାଉ, ତୁ ବସ, ଆମେ ଏଇଠି ଖଟରେ ବସୁଛୁ । ତୁ କିନ୍ତୁ ଆଶ୍ଚର୍ଯ୍ୟ ହୋଇଗଲୁ ଆମକୁ ଦେଖି ନା ହେମ, ମୁଁ ଜାଣିଥିଲି ପରା, ପରଦା ଆଡ଼େଇ ଘର ଭିତରକୁ ପଶୁ ପଶୁ କହିଲେ ଅଭୟା । କିମିତି ଅଛୁରେ କେଶବ" ପଚାରିଲେ ରାଘବବାବୁ ।

"ସେମିତି ଚଳୁଛି ଆଜ୍ଞା । ଠିଆ ତ ହୋଇପାରୁନି ନିଜେ ଅନ୍ୟ ପାଇଁ ବୋଝ ।" ସେମିତି କାହିଁକି ଭାବୁଛୁ । ମଣିଷ ପାଇଁ ତ ଶରୀର କଷ୍ଟ ରହିଛି । ଅନେକ ଦିନ ହେଲା ଅଭୟା କହୁଥିଲେ ଚାଲ ଯିବା, କେଶବକୁ ଦେଖି ଆସିବା । ମୁଁ ବି ବ୍ୟସ୍ତ ରହୁଛି କାମରେ... । ଆଜି ଟିକେ ଫୁରୁସତ ମିଳିଲା, କହିଲି ଚାଲ, ଏତିକିବେଳେ ହେମ ହାତରେ କାମ ନ ଥିବ, ତମେ ଦି'ପଦ କଥାବାର୍ତ୍ତା କରିପାରିବ ତା' ସହିତ ।

"ଭଲ ହେଲା ମା', ତମେ ଗପୁଥାଅ କି ମୁଁ ଚା' ଦି'କପ୍ କରି ନେଇ ଆସେ । "ହଉ ଯା' ଶୀଘ୍ର ଆସିବୁ, କଥା ଅଛି ତୋରି ପାଖରେ କହିଲେ ଅଭୟା ।"

"ଏଇ ଅଭାଗା ମଣିଷ ପାଖରେ କି କଥା ଏମିତି ଅଛି ଯେ, କଷ୍ଟ କରି ଆସିଲ ମାଁ ମୋତେ କହିଥିଲେ ତ ନିଜେ ଯାଇଥାନ୍ତି । ହେଲେ ମୋ' ଭାଗ୍ୟ, ମୋ ଏଇ ବସାରେ ପାଦ ପଡ଼ିଲା- କହୁ କହୁ ହେମ ଚା' କରିବାକୁ ଗଲା ।"

ରାଘବବାବୁ କେଶବାର ସ୍ୱାସ୍ଥ୍ୟ ସଂପର୍କରେ ଭଲମନ୍ଦ ଚାରିପଦ ପଚାରି ବୁଝିଲେ । କଥା ପ୍ରସଙ୍ଗରେ ଲକ୍ଷ୍ମୀ କଥା ପଡ଼ିଲା । ଅଭୟା କହିଲେ- "ଲକ୍ଷ୍ମୀ ଭଳି ଝିଅ ଥାଉ ଥାଉ, ତୁ ଏମିତି ହତାଶ ହେଇପଡୁଛୁ କାହିଁକି କେଶବ ?" 'ମା' ଲକ୍ଷ୍ମୀର ଭବିଷ୍ୟତ ଅଛି, ତା'ର ଏବେ କାମର ବେଳ, ତା' ଉପରେ ବୋଝ ହେବା ତ ଠିକ୍ ନୁହେଁନା । କାହାକୁ ମୁଁ କିଛି ସାହାଯ୍ୟ କରିପାରୁନି..... ବ୍ୟସ୍ତ ହେଲା କେଶବା । ଟ୍ରେରେ ଚା' ନେଇ ଆସିଲା ହେମ ।

ଚା' କପ୍ ନେଇ ରାଘବବାବୁ କହିଲେ, "ସତରେ ହେମ ତୋ' ଅଦା ଦିଆ ଚା'ର ସ୍ୱାଦ ସବୁଠୁ ନିଆରା ।" କେବଳ ହେମ ହାତର ଚା' ନୁହେଁ ସବୁ କାମ ତାର ବାରି ହେଇପଡ଼ିଲା ଭଳି, ସ୍ୱତଃକାଏ ଚା' ପାଟିକୁ ନେଇ କହିଲେ ଅଭୟା ।

ହେମ ସଂକୁଚିତ ହେଇ କହିଲା, ଚା' ଟିକକ ତ କୋଉ ଖିରି ପିଠା ବାଢ଼ିଛି ଯେ... । ଏତେ ପ୍ରଶଂସାକୁ ମୁଁ ଭାଜନ ନୁହେଁ । ମା', କ'ଣ କହିବାକୁ ଥିଲା ମୋତେ, କହୁଥିଲ..... ।"

"କହିବି ବୋଲି ତ ଆସିଛି ତୋ' ପାଖକୁ ।" ହେମ ଆଖିରେ ବିସ୍ମୟ ଫୁଟି ଉଠିଲା ।

"ଏଇ ଆମ ଲକ୍ଷ୍ମୀ କଥା..." ଥରେ ଆସିଥିଲି ତୋ' ପାଖକୁ ଲକ୍ଷ୍ମୀକୁ ମାଗିନେବି ମୋ ଘରକୁ ବୋଲି । ହେଲେ ଈଶ୍ୱରଙ୍କ ଇଚ୍ଛା ଅନ୍ୟ ପ୍ରକାରେ ଥିଲା । ଆଜି ପୁଣି ଥରେ ଆସିଛି ସେଇ ଉଦ୍ଦେଶ୍ୟରେ । ଅବଶ୍ୟ ମୋ ପାଇଁ ନୁହେଁ, ଆମ ଡାକ୍ତରବାବୁ....ଭୃଗୁ ସାମନ୍ତଙ୍କ ପାଇଁ.... କହିସାରି ସ୍ୱାମୀ ସ୍ତ୍ରୀ ଦୁହେଁ ମୁହୂର୍ତ୍ତକ ପାଇଁ ଚାହିଁ ରହିଲେ ହେମ ଆଉ କେଶବାର ମୁହଁକୁ ପ୍ରତିକ୍ରିୟା ଜାଣିବା ପାଇଁ ।

କଥାଟା ଶୁଣୁ ଶୁଣୁ ହେମ ଚମକି ପଡ଼ିଲା । ଦ୍ୱିତୀୟ ଥର ପାଇଁ ଆକାଶରୁ ସେ ଯେମିତି ଖସିପଡ଼ିଲା । ଆକାଶରୁ ନା ତା' ପାଦତଳୁ ମାଟି ଧସି ପଡୁଥିଲା ସେ ଭାବି ପାରୁନଥିଲା । ଆଉ କେଶବା ବିଛଣା ଉପରୁ ହଠାତ୍ ଉଠି ବସିଲାବେଳକୁ ଯନ୍ତ୍ରଣାରେ ଛଟପଟ ହେଇ ଶବ୍ଦ କେତୋଟି ଉଚ୍ଚାରଣ କଲା, ଆଜ୍ଞା କ'ଣ କହିଲେ ! ! ଯାହା ଶୁଣିଲା ଠିକ୍ ଶୁଣିଲା ନା ସ୍ୱପ୍ନ ଥିଲା ସେ ବି ବୁଝିପାରୁନଥିଲା ହୁଏତ ।

"ବିଶ୍ୱାସ ହେଉନି କେଶବ, ଅଭୟା ଆମ ଲକ୍ଷ୍ମୀ କଥା କହୁଛନ୍ତି । ଡାକ୍ତରବାବୁ ଖୁବ୍ ଭଲ ମଣିଷ । ଲକ୍ଷ୍ମୀ ପାଇଁ ଯୋଗ୍ୟ । ଆମେ ଅନେକଥର ଭାବିଛୁ ଏକଥା । ତମ

ଦିହିଁଙ୍କ ମତ ଜାଣିଲେ, ଡାକ୍ତରବାବୁଙ୍କୁ ପ୍ରସ୍ତାବଟା ଦିଅନ୍ତି, ରାଘବ ବାବୁ କହିଲେ । ଲକ୍ଷ୍ମୀର ବିବାହ ବୟସ ହେଲାଣି - ପଢ଼ା ବି ସରିଲାଣି ।"

ସ୍ୱାମୀ ସ୍ତ୍ରୀ ଦୁହେଁ ଅବାକ୍ ହେଇ ଚାହିଁ ରହିଲେ ଚିତ୍ରପ୍ରତିମା ଭଳି । କ'ଣ ଉତ୍ତର ଦେବେ.... କିବା ମଣିଷରେ ଲେଖା.... କେଡ଼େବଡ଼ ମଣିଷ ସେ ତାଙ୍କ ସମକକ୍ଷ ହେବାର ଯୋଗ୍ୟତା..... ଭାଗ୍ୟ କି ସାହସ କିଛି ବି ନାହିଁ.... ଝିଅକୁ ଜନ୍ମ ଦେଇଛନ୍ତି ସତ । ହେଲେ କଥା କହିଲା ଭଳି ସାହସ ତ ନାହିଁ । ଦିହେଁ ଭାବୁଥିଲେ ଏଇକଥାକୁ ଭିନ୍ନ ଭିନ୍ନ ବାଟରେ ।

ପୁଣି ପ୍ରଶ୍ନକୁ ଦୋହରେଇଲେ ରାଘବ ବାବୁ, "କ'ଣ ଭାବୁଛୁ ହେମ ? ଲକ୍ଷ୍ମୀ ବଡ଼ ହେଲାଣି ସତ ତଥାପି ଆମର କିଛି ଦାୟିତ୍ୱ ଅଛି, ଯୋଗ୍ୟ ମଣିଷ ହାତରେ ତାକୁ ସମର୍ପି ଦେବା ଆମ ଦାୟିତ୍ୱ ।" ଅବଶ୍ୟ ଲକ୍ଷ୍ମୀର ମତାମତ ନ ନେଇ ତ କିଛି ହେବନି । ତଥାପି....

ଅନେକ ସମୟ ନିରବ ରହିଲା ପରେ ସଂକୁଚିତ ହେଇ ପଥର ପ୍ରତିମା କଥା କହିଲା । ମୁଁ..... ମୋର..... ମାନେ ଆମର, କି ମତ ଆଜ୍ଞା ଆପଣ ଥାଉଁ ଥାଉଁ । ଲକ୍ଷ୍ମୀ ଯାହା ଚାହିଁବ..... ଆପଣ ଯାହା ଠିକ୍ ଭାବିବେ....." । କେଶବ କଥାକୁ ସମର୍ଥନ କରି ହେମଲତା କହିଲା, "ଆପଣ ତ ଜାଣିଛନ୍ତି ଆମ କଥା - ରାସ୍ତାକଡ଼ର ମଣିଷ ଆମେ.... ଅନ୍ୟର ଆଶ୍ରିତ..... ସିଏ ବଡ଼ଲୋକ..... ଆମ ହାତ ଆକାଶକୁ ଛୁଇଁବା ମାନେ ଲୋକହସାର କଥା..... କ'ଣ କହିବୁ..... ନିଜ ହାତରେ ଲକ୍ଷ୍ମୀକୁ ଗଢ଼ିଛନ୍ତି ଆପଣ ମୁଁ ସିନା ଜନ୍ମ ଦେଇଛି, ହେଲେ ସେ ଆପଣଙ୍କ ଝିଅ । ତାକୁ ପଚାରି... ଆପଣ ନିଷ୍ପତ୍ତି ନିଅନ୍ତୁ ।"

"ନିଜକୁ ଏତେ ଛୋଟ କରିଦେ ନା କେଶବ । ପଙ୍କରୁ ତ ପଦ୍ମର ଜନ୍ମ । ତୁ ତା'ର ଜନ୍ମଦାତା ।" ତୋତେ ବାଦ୍ ଦେଲେ ତାର ସ୍ଥିତି କାହିଁ, ହେଲେ ଗୋଟିଏ କଥା, ଲକ୍ଷ୍ମୀକୁ ହେମ ଟିକିଏ ପଚାରୁ, ତା'ର ମତାମତ । ତା'ପର ଦାୟିତ୍ୱ ଆମର । ତୁ ଚିନ୍ତା କରନା । କଥା ସରିଲା । ଅଭୟା କହିଲେ, ଈଶ୍ୱରଙ୍କ ଇଚ୍ଛା ଥିଲେ ସବୁକିଛି ଠିକ୍ ହେବ । ଏଥର ଆମେ ଉଠିବା, ଲକ୍ଷ୍ମୀ ଫେରିବା ପୂର୍ବରୁ । ସେ ତା ବାଂଧବୀ ପାଖକୁ ଯାଇଛି ।

ହେମଲତା ଗେଟ୍ ପର୍ଯ୍ୟନ୍ତ ଗଲା ଅଭୟା ମା' ଓ ରାଘବବାବୁଙ୍କୁ ଛାଡ଼ି ଆସିବା ପାଇଁ । ରାଘବବାବୁ ପୁଣି ମନେ ପକାଇ ଦେଲେ ହେମକୁ, "ନିଶ୍ଚୟ ଲକ୍ଷ୍ମୀକୁ ପଚାରିବୁ ଏବଂ ମୋତେ ଖବର ଦେବୁ ।"

ସେଦିନ ପାଇଁ ବିଦାୟ ନେଲେ ରାଘବବାବୁ ଓ ଅଭୟା ।

ତା'ର ଦିନକ ପରେ ହେମଲତାର ଫୋନ୍ ଆସିଲା । ରୋଷେଇ ଛାଡ଼ି ଆସି ଫୋନ୍ ଧରିଲେ ଅଭୟା । ହେମର କଣ୍ଠସ୍ୱରରୁ ହିଁ ସେ ଅନୁମାନ କଲେ, ଭଲଖବର ହିଁ ଶୁଣେଇବ ହେମ । ପଚାରିଲେ, କ'ଣ ଭଲଖବର ଶୁଣେଇବୁ ତୁ ହେମ ? "ଆଜ୍ଞା, ଆପଣମାନଙ୍କ କଇଲାଣ ଯେଉଁଠି ଅଛି କେମିତି ଅନ୍ୟଥା ହୁଅନ୍ତା । ମନୋଇ ଝିଅଟାର ମନ ମାନିଗଲା । କହିଲା, "ତୁ ମୋତେ ପଚାରୁଛୁ କ'ଣ, ମୁଁ କ'ଣ ତମ କଥାରେ ଅବାଧ ହେଇଛି ? ତମେ ମାନେ ଗୁରୁଜନ । ମୋର ଶୁଭାଧାୟୀ ସବୁବେଳେ ମଙ୍ଗଳ ହିଁ କାମନା କରିଆସିଛ । ମୁଁ ତ ଈଶ୍ୱରଙ୍କୁ ଦେଖିନି, ତମେମାନେ ହିଁ ମୋର ଈଶ୍ୱର । ସାର୍ ଯେତେବେଳେ କହୁଛନ୍ତି, ସେ ସବୁଆଡୁ ଭାବିଚିନ୍ତି କହୁଥିବେ । ତମମାନଙ୍କ ନିଷ୍ପତ୍ତି ହିଁ ମୋର ନିଷ୍ପତ୍ତି - ଅଲଗା କିଛି ନାହିଁ । ଯାହା ଉଚିତ୍ ମନେ କରୁଛ କର..... ବୋଉ ।"

କଥା ସାରିଲାବେଳକୁ ହେମ କଣ୍ଠସ୍ୱର ଉଚ୍ଛୁଳା ଆନନ୍ଦର ସୂଚନା ଦେଉଥିଲା । ତଥାପି ଶଙ୍କାକୁଳ ମନ ନେଇ କହିଲା.... "ମାଁ ସତରେ ମୋ ଲକ୍ଷ୍ମୀର ଭାଗ୍ୟ ଖୋଲିବ ? ଭୟ ଲାଗୁଛି ।" ନିଶ୍ଚୟ ଖୋଲିବ ମୋ' ମନ କହୁଛି, ତୁ ଏବେ ଫୋନ୍ ରଖ- ଖବରଟା ଆର୍ଯ୍ୟବାପାଙ୍କୁ ମୁଁ ଜଣେଇଦିଏ .... । ଅଭୟା ଫୋନ୍ ରଖି ରାଘବବାବୁଙ୍କ ଫେରିବା ବାଟକୁ ଅପେକ୍ଷା କଲେ । ତାଙ୍କୁ ଡର ସହୁନଥିଲା କେମିତି ଶୀଘ୍ର ଖବରଟା ଦେବେ ବୋଲି । ଏଇ ମୁଁ ଆସୁଛି ବୋଲି, କୁଆଡ଼େ ଯାଇଛନ୍ତି ଯେ, ମଣିଷଟା ବିଚିତ୍ର ଯୁଆଡ଼େ ମୁହଁ ସେଇଆଡ଼େ ଅନୁକୂଳ.... ଗରଗର ହେଇ କାମରେ ମନ ଦେଲେ ଅଭୟା ।

ଭୃଗୁଙ୍କ ଫୋନ୍‌ଟାକୁ ଥୋଇ ଦେଇ ଲକ୍ଷ୍ମୀ ତକିଆ ଭିତରେ ମୁହଁ ଲୁଚେଇଲା - ଏକୁଟିଆ କୋଠରି ଭିତରେ ବି ତାକୁ ଲାଜ ମାଡ଼ିଲା । ଗଲାକାଲି ରାତିରେ ବି ବୋଉ ଖାଇବାକୁ ବାଢ଼ି ଯେତେବେଳେ ଅସଲ କଥାଟା କହିବ ବୋଲି ବାଟ ଖୋଜିଲା, ତାକୁ କିମିତି ଅବାଗିଆ ଲାଗିଥିଲା । ସାର୍ ଆଉ ଅଭୟା ମା' ସନ୍ଧ୍ୟାବେଳେ ଆସିଥିଲେ ବୋଲି ତ କହିଥିଲା, ସେ ଜାଣେ ଅଭୟା ମା' ଆଉ ରାଘବବାବୁ କାହିଁକି ଆସିଥିଲେ ?

ସେମିତି ଖାଉ ଖାଉ ଅନ୍ୟମନସ୍କ ଭାବେ ସେ କହିଲା କାହିଁକି, ପଚାରିବି କ'ଣ ବୁଲି ଆସିଥିବେ ତ । କ'ଣ କିଛି କାମ ଥିଲା ?

"କାମରେ ଆସିଥିଲେ, କଥା ହେଲା ।"

"କି କଥା ଯେ... ?"

"ତୋ ବାହାଘର କଥା ନେଇ । ଆଚ୍ଛା ମାଁ ସତ କହିଲୁ, ତୁ ତ ବଡ଼ ହେଲୁଣି ନିଜ ଦାୟିତ୍ୱ ନେଲା ଭଳି । ଆମେ ବାପା ମା' ସତ, ହେଲେ ଆମର ବା କେତେ

ବୁଦ୍ଧି, କେତେ ବିଚାର... ସେଥିପାଇଁ ପଚାରୁଛି.... ସାର୍ କହିଥିଲେ ବୋଲି.... । ଏତେ ଗୌର ଚନ୍ଦ୍ରିକା ନ କରି ସିଧାସିଧା କହ, କଡ଼ଣ କହିଲେ ସାର୍.... ଭାରି ଦମ୍ଭରେ କହିଥିଲା କଥାକୁ ଫୋପାଡ଼ି । ଯେମିତି ବୋଉ ପାଟିରୁ ଉତୁରି ଆସିଲା "ଏଇ ଆମ ଡାକ୍ତରବାବୁମ.... ଭୃଗୁ ସାମନ୍ତ... କେମିତି ଲାଗନ୍ତି ତୋତେ ?"

ବାସ୍, ବୋଉ ପ୍ରଶ୍ନର ଉତ୍ତର ଦେଇ ସାରିଲା ବେଳକୁ, ସେ ଝାଳେଇ ଯାଇଥିଲା ଭୟ ନୁହେଁ, ତାକୁ ଲାଜ ମାଡ଼ି ବସିଥିଲା ତଣ୍ଡିକୁ । ଓହୋ, ଯାହା କହିବା କଥା କହିସାରି ସିଧା ନିଜ ରୁମ୍‌କୁ ଆସି ଚିତ୍ କରି ପଡ଼ିଗଲା ଖଟ ଉପରେ । ଏତେ ବଡ଼ ବଡ଼ ପରୀକ୍ଷାରେ ବି ସେ ଏମିତି ଝାଳେଇ ନ ଥିଲା । ସେତେବେଳେ ନିଶ୍ଚେ ତା' ମୁହଁରେ କିଏ ମେଞ୍ଚାଏ ଅବିର ବୋଳି ଦେଇଥିବ- ଆଉ ସେଇ ନାଲି ପଡ଼ିଯାଇଥିବା ମୁହଁଟା ନିଶ୍ଚେ ବୋଉ ଆଖିରେ ପଡ଼ିଥିବ । ଛିଃ ଛିଃ, କି ଲାଜକଥା, କ'ଣ ଭାବିଥିବ ବୋଉ, ନିର୍ଲ୍ଲଜ.... ନ ହେଲେ ଭାବିଥିବ ଏଇ ଝିଅଟା ମୋ ଲକ୍ଷ୍ମୀ ନୁହେଁ, ଠୋ ଠୋ ହେଇ ମୋ ମୁହଁରେ କଥା କହି ଉଠିଗଲା ତ... ।"

ହେ ଭଗବାନ, ଝିଅମାନଙ୍କୁ ଏତେ ଲାଜ କାହିଁକି ଦେଇଥାନ୍ତି ସେ କେଜାଣି । ଉତ୍ତର ନ ଦେଇ ବି ତାର ଆଉ କ'ଣ ଚାରା ଥିଲା । ତା' ମନ କଥାକୁ ତ ସେ କେବେ ଖୋଲି କହିପାରିନଥାନ୍ତା..... ଠାକୁରେ ରକ୍ଷା କରିଦେଲେ ବୋଲି ସିନା, ନହେଲେ..... ମନର ମଣିଷକୁ ପାଇବା ତା' ପାଇଁ ତ ସହଜ ନଥିଲା ।

'ଯା ବି ସତ ଯେ, ସେ ବଡ଼ ହେଲାଣି, ବଡ଼ ବଡ଼ ସମସ୍ୟାକୁ ସମାଧାନ କରିପାରିବାର ଯୋଗ୍ୟତା ତାର ଅଛି ବୋଲି ପ୍ରମାଣିତ ହେଇସାରିଲାଣି । କାଲିକୁ କାଲି ସେ ଗୋଟିଏ ଅଫିସ୍ ସମ୍ଭାଳିବ । କେତେ ମଣିଷଙ୍କ ସହିତ କେତେ ପ୍ରକାର କାରବାର କରିବ, ଏଇ ପିଲାଳିଆମି ତ ତାକୁ ଶୋଭା ଦିଶୁନି ସେ କଣ ଆଉ ପଞ୍ଚଦଶୀ ହୋଇଅଛି ?

ସେ କିନ୍ତୁ ସେଇ ମୁହୂର୍ତ୍ତରେ ପଞ୍ଚଦଶୀ ହିଁ ପାଲଟି ଯାଇଥିଲା । ସତେ ଯେମିତି ଭ୍ରମର ଆଉ ପ୍ରଜାପତି ସହିତ ମିତ ବସିବାର ବୟସ ମହୁମାଛିର ଗୁଣୁଗୁଣୁରେ ସ୍ୱର ମିଶାଇବାର ଅଥବା ନୂଆଁ ନୂଆଁ ସ୍ୱପ୍ନକୁ ଭେଟିବାର ମଖମଲି ବୟସରେ ।

ଲକ୍ଷ୍ମୀ ମନେ ପକେଇଲା, ସେ କେବେ ଥିଲା କି ପଞ୍ଚଦଶୀ ? କାହିଁ ମନେପଡୁନି ତ । ଖଣ୍ଡେ ଫ୍ରକ୍ ପାଇଁ, ବହି ସିଲଟ ପାଇଁ, କଲମଖାତା ପାଇଁ ନ ହେଲେ ସ୍କୁଲ୍ ଫିଜ୍ ପାଇଁ ମାନେ ଜୀବନଯୁଦ୍ଧକୁ ସାମ୍ନା କରୁ କରୁ କେତେବେଳେ କୋଉ ଫାଙ୍କରେ ଏଇ ମତୁଆଲା ସ୍ୱପ୍ନ ଦେଖା ବୟସଟା ଖସି ପଳେଇଛି ତା'ର ମୋଟେ କିଛି ମନେ ନାହିଁ ।

ଆଉ ଆଜି.... ଏଇ ଟିକକ ଆଗରୁ ନିଜେ ଭୃଗୁ ହିଁ ଫୋନ୍ କରି ଖବରଟା ଜଣାଇଲେ ତାକୁ । ସେ ତ ଶୁଣୁ ଶୁଣୁ ଲାଜରେ ମରିଗଲା । ମାନେ ସତରେ ନିଲ୍ଲଜ ।

କିଛି ଡାକୁଣି ନ ଥାଏ ମୁହଁରେ । ସେ ଅବଶ୍ୟ ଉତ୍ତରରେ କିଛି କହି ପାରିନଥିଲା । ରାଘବ ସାର୍ ତାଙ୍କୁ ବି ପଚାରିଥିଲେ କୁଆଡ଼େ । କହିଲେ, ତମେ ଶୋଇପଡ଼ିନ ତ ଲକ୍ଷ୍ମୀ ? 'ନା' ସେ ଉତ୍ତରଟିଏ ଦେଇ ଅପେକ୍ଷା କଲା ତାଙ୍କ କଥା ଶୁଣିବାକୁ । "ରାଘବ ବାବୁ ଆଜି ସନ୍ଧ୍ୟାରେ ଆମ ଘରକୁ ଆସିଥିଲେ ଗୋଟାଏ ସରପ୍ରାଇଜ୍ ନେଇ ।" ଶୁଣୁଶୁଣୁ ତ ମୁଁ ଚମକି ପଡ଼ିଲି । ମୋ ଜୀବନରେ ଯା'ଠୁ ବଳି ସରପ୍ରାଇଜ୍ ବୋଧେ ଆଉ କିଛି ନ ଥିଲା । ମୁଁ ଜାଣିଥିଲି ସ୍ୱପ୍ନ ସବୁବେଳେ ସ୍ୱପ୍ନ - ସେମାନେ ସବୁ ଅବଚେତନର ଅପୂର୍ଣ୍ଣ କାମନା । କ୍ୱଚିତ୍ କୋଉଠି ସ୍ୱପ୍ନ ଗଛରେ ଫଳ ଧରେ....., "ତମେ ଶୁଣୁଛ ନା ଲକ୍ଷ୍ମୀ....." ସେଇମିତି ଛୋଟ 'ହୁଁ' ଟିଏ କରି ଅପେକ୍ଷା କଲା ସେ । ଭୃଗୁ କହିଲେ... ହେଲେ ଏଇ ଟିକକ ପୂର୍ବରୁ ସ୍ୱପ୍ନ ଯେ ଚାଲି ଚାଲି ମୋ ଦୁଆରେ ଠିଆ ହେଇ କଲିଂବେଲ୍ ବଜେଇବ, ମୋର କଳ୍ପନା ଭିତରେ ନଥିଲା... ଏତେ ସହଜରେ ସ୍ୱପ୍ନ ଧରାଦିଏ ଲକ୍ଷ୍ମୀ ?

ପୁଣି ସେ କହିଲେ, "ମୁଁ ଜାଣେନା ତମର ଏଇ ଅନୁଭବ ଅଛି କି ନାହିଁ, ହେଲେ ମୋ ଅନୁଭବକୁ ମୋ ଉଲ୍ଲାସପଣକୁ ତମ ସହିତ ବାଣ୍ଟିବି ବୋଲି ଭାବି ଏଇ ଫୋନ୍ କରୁଛି - ତମେ ମୋ ଉଲ୍ଲାସରେ ଭାଗ ନେଉଛ ନିଶ୍ଚୟ ?" ଖୁବ୍ ସଂକୋଚରେ 'ହଁ' ଟିଏ କରିସାରି ଅପେକ୍ଷା କଲା ଆଉ କିଛି ଶୁଣିବାକୁ । ଭୃଗୁ କିନ୍ତୁ ଠିକ୍ ଜାଣିପାରିଲେ ମୁଁ ଜାଣେ, ତମେ କଥା କହିବନି, ଲାଜ ନା ? ଠିକ୍ ଅଛି, ଯୋଉଦିନ ଲାଜ ଭାଙ୍ଗିପାରିବ, ସେଇଦିନ ଶୁଣିବି ଯାର ଉତ୍ତର । ଆଜି ମୁଁ ଫୋନ୍ ରଖୁଛି, ତମେ ସ୍ୱପ୍ନ ସହିତ କିତ୍ କିତ୍ ଖେଳ, ଫ୍ରକ୍ ପିନ୍ଧି, ରିବନ୍ ବାନ୍ଧି । ଆଉ ଟିକିଏ ସ୍ୱପ୍ନ ରଖିଥିବ ମୋ' ପାଇଁ କିନ୍ତୁ.... ଫୋନ୍ ରଖିଲେ ଭୃଗୁ ହସି ହସି ।

ଯା' ପରେ ସେ ସତକୁ ସତ ପଞ୍ଚଦଶୀ ନ ହେଇ ତ ଉପାୟ ନାହିଁ । ହେଉପଛେ ତେରିରେ, ଏଇ ମୁହୂର୍ତ୍ତରେ ସେଇ ମତୁଆଲା, ଫ୍ରକ୍ ପିନ୍ଧା, ରିବନ୍ ବନ୍ଧା ପଞ୍ଚଦଶୀ ବୟସଟା ଫ୍ରକ୍‌ରେ ସ୍ୱପ୍ନ ଲୁଚେଇ ଆଣି ଏଇ ନିଶୂନ୍ କୋଠରି ଭିତରେ ତାକୁ କୁତ୍ କୁତ୍ କରି ଆକତାବାକ୍‌ତା କରୁଛି । ତା' ଠୁ ନିଜକୁ ରକ୍ଷା କରିବା ପାଇଁ ତେଇଶି ବର୍ଷୀୟା ଲକ୍ଷ୍ମୀ ତକିଆ ଭିତରେ ମୁହଁ ଲୁଚେଇ ଆଖି ବୁଜିଲା । ଏବଂ ହଠାତ୍ ତା'ର ମନେପଡ଼ିଲା ଭୃଗୁଙ୍କ ସ୍ନେହ ଉପହାର ନାଲି ପଥରବସା ମୁଦି - ଯାହାକୁ ସେ ସଯତ୍ନରେ ସାଇତି ରଖିଛି ସମସ୍ତଙ୍କ ଆଢୁଆଳରେ, ସମୟ ଅପେକ୍ଷାରେ । ଆଜି ଆସିଛି ସେଇ ସମୟ କେହି ଜାଣୁ ନଜାଣୁ, ସେ ତ ଜାଣୁଛି ତା' ପାଇଁ ଏଇ ମୁହୂର୍ତ୍ତଟା କେତେ ଆପଣାର, ମନେରଖିଲା ଭଳି ଦିନଟି । ମନହେଲା ତାକୁ ଥରେ ଦେଖିବ, ଛୁଇଁବ, ଅନୁଭବ କରିବ ସ୍ନେହସିକ୍ତ ମଣିଷଟାର ନିଛକ ଭଲ ପାଇବାକୁ, ତାଙ୍କର ଉପସ୍ଥିତିକୁ ।

ବିଛଣାରୁ ଉଠିଲା ଲକ୍ଷ୍ମୀ, ଆଲ୍‌ମିରା ପାଖକୁ ଯାଇ ଖୋଲିଲା ସେହି ଅଭିଜ୍ଞାନକୁ

ଯେମିତି ଉଜ୍ଜ୍ୱଳ ଦିଶୁଛି ଭୃଗୁଙ୍କ ନିଛକ ସ୍ନେହ ପ୍ରବଣ ମନ ଭଳି । ଅନେକ ସମୟ ପର୍ଯ୍ୟନ୍ତ ପାପୁଲି ଭିତରେ ବନ୍ଦୀ କରି ତାକୁ ଅନୁଭବ କଲା ନିବିଡ଼ ଭାବେ ।

ସେଇ ଦିବ୍ୟାନୁଭୂତିର ଅପୂର୍ବ ପୁଲକ ତା' ଦେହମନରେ ରୋମାଞ୍ଚ ଆଣି ଦେଉଥିଲା । ତା'ର ହୋସ୍ ନଥିଲା, ସେଇ ଅବସ୍ଥାରେ ସେ କେତେବେଳେ ଶୋଇପଡ଼ିଥିଲା ଗଭୀର ନିଦରେ । ରାତି ପାହିଲା, ତା' ନିଦ ଭାଙ୍ଗିଲାବେଳକୁ ଦେଖିଲା ମୁଦିଟି ତାର ପାପୁଲି ଭିତରେ ବନ୍ଦୀ ହୋଇ ରହିଛି । ଅପ୍ରସ୍ତୁତ ହୋଇଗଲା ଲକ୍ଷ୍ମୀ । ନିଜ ଭିତରର ପିଲାଳିଆମିକୁ ଶାସନ କରିବାକୁ ଯାଇ, କୃତ୍ରିମ ରାଗ ପ୍ରକାଶ କଲା ତର୍ଜନୀ ଦେଖେଇ ।

"ଇଯେ ମୋଟେ ଭଲକଥା ନୁହଁ ।"

ତଳୁ ସୁଲତା ମାଉସୀର ପାଟି ଶୁଭୁଥିଲା । ତରବର ହୋଇ ଲକ୍ଷ୍ମୀ ବିଛଣା ଛାଡ଼ିଲା, ବୋଉ ଆସିଯିବ ଉଠେଇବାକୁ ଏଥର ।

ଦିନ କେଇଟାରେ ଏଇ ଶୁଭଖବରଟା କ୍ରମଶଃ କାନରୁ କାନ ହୋଇ କେମିତି କ'ଣ ପ୍ରସାରିତ ହୋଇଗଲା ସଭିଙ୍କ ଭିତରେ । ଆଶ୍ରମର ଅନ୍ତେବାସୀଙ୍କ ଭିତରେ ଚାପା ଆନନ୍ଦର ଲହରି କ୍ରମଶଃ ଉଛୁଳି ଉଠିଲା ଜୁଆରିଆ ହୋଇ । ସବୁଠୁ ବେଶି ଉଛୁଳି ଉଠିଥିଲା ବିଜୁ । ତା' ଆନନ୍ଦ ତ ଚୂଡ଼ା ଭାଙ୍ଗୁଥିଲା । ସେ ଚାହୁଁଥିଲା ବାହାଘରଟା ଶୀଘ୍ର ହେଉ । ଦୋଇ ତ ଆଉ ଦିନ କେଇଟା ପରେ ଟ୍ରେନିଂ ପାଇଁ ଚାଲିଯିବେ । ସେଠୁ ଫେରିଲେ ଚାକିରି, ଅଫିସ୍ ଜଂଜାଳ – ଅନେକ କଥା ତେଣିକି । କେଇଟା ଦିନ ସେ ବୋହୂ ହୋଇ ଘରେ ରହିବେ । ଘରଣୀ ହୋଇ ଘର ସଜାଡ଼ିବେ । ଏବେ ତ ଏଇଟା ବସାଘର । ଏସବୁ ଭାବି ତା' ଆଖିକୁ ନିଦ ନଥିଲା । ଭୃଗୁଭାଇ ତ ବାଉଳା ମଣିଷ । ସରମାଁ ତ ପାଗଳୀ । ଖୁସିରେ ଗୋଡ଼ ତାଙ୍କର ତଳେ ପଡୁନି ସତ । ହେଲେ ହେବ ଯେ, କେମିତି ହେବ, କ'ଣ ହେବ । କିଏ ଅଛି ସେସବୁ ବୁଝିବାକୁ ଯେ ।

ଦିନେ, ପୁଣି ଧାଇଁଲା ସେ ଏସବୁ କଥା ବୁଝିବା ପାଇଁ ରାଘବବାବୁଙ୍କ ଘରକୁ । କେହି କଥାଟାକୁ ଗୁରୁତ୍ୱ ଦେଇ ଭାବୁନାହାଁନ୍ତି । ଅଭୟା ଶୁଣିଲେ, ବୁଝିଲେ ବି ବିଜୁ କଥାର ମର୍ମ । "ସତକଥା ତ । ବିଳମ୍ୱ କରି ଲାଭ କ'ଣ । ଭଲକାମରେ ଯଦି ହାତ ଦେଇଛ, ତାକୁ ପୂରା କର କହିଲେ ରାଘବବାବୁଙ୍କୁ । ହେମ ଆଉ ଭୃଗୁଙ୍କ ସହିତ ପରାମର୍ଶ କରି ଶୁଭଦିନଟିଏ ବାଛି ଶୁଭକାମଟିକୁ ବଢ଼େଇ ଦିଅ । କିଏ ଅଛି ଆଉ ବଡ଼ ହୋଇ ଏସବୁ ବୁଝିବାକୁ ଯେ! ଆଉ ଡେରି କରନା ।" ଅଭୟା ବି ବ୍ୟସ୍ତ ହୋଇ ଉଠିଲେ ନିଜ ଭିତରେ ।

ଲକ୍ଷ୍ମୀର ଗତାନୁଗତିକ ଜୀବନଧାରାଟି ହଠାତ୍ ଯିମିତି ଚହଲିଗଲା । କିଛି କରିବା ଆଗରୁ ତାକୁ ଭାବିବାକୁ ହେଲା । ସେ ତ ଶୃଙ୍ଖଳିତ ଥିଲା ହିଁ ନିଜ ଭିତରେ । ହେଲେ ଆଜିକାଲି ସଚେତନ ହୋଇ ଉଠୁଥିଲା ପ୍ରତିଟି ପଦକ୍ଷେପରେ । ଯେମିତି ଅଖଣ୍ଡ ସ୍ୱାଧୀନତାଟା ହଠାତ୍ ସଙ୍କୁଚିତ ହୋଇଗଲା । ନିଜ କାମ ସହିତ ଅନ୍ତେବାସୀଙ୍କ କାମ ସମ୍ଭାଳୁଥିଲା, ଅଫିସ୍ କାମ ବୁଝୁଥିଲା, ବାପାଙ୍କୁ ଡାକ୍ତରଖାନା ନେଉଥିଲା, ସାଂଗସାଥୀଙ୍କ ମେଳରେ ଗପୁଥିଲା, ଆବଶ୍ୟକ ସ୍ଥଳେ ବାହାରକୁ ଯାଉଥିଲା - ସବୁ କାମ ଠିକ୍ ଠିକ୍ ଚାଲୁଥିଲା ହେଲେ ସେଥିରେ ଉଚ୍ଛୁଳା ପଣ ନଥିଲା, ନଥିଲା କୁଆଁରୀ ମନର ବେଫିକର ଭାବ । ତାକୁ ଲାଗୁଥିଲା, ତା' ଭିତରେ କିଛି ଗୋଟାଏ ପରିବର୍ତ୍ତନ ଆସିଛି । ସମସ୍ତଙ୍କ ଆଖି ତାରି ଉପରେ ଠୁଳ ହୋଇଛି । ତା'ର ଖାଇବା, ପିନ୍ଧିବା, ଚାଲିଚଳଣକୁ ନେଇ ସମସ୍ତେ ତତ୍ପର ବିଶେଷ ଭାବେ । ସେ ଯିମିତି ଜଣେ ବିଶେଷ ଅତିଥି । ତାହା ଖାତିର ହେବା ଦରକାର - କାହିଁକି, କ'ଣ ପାଇଁ ଏଇ ଖାତିରପଣ ? ସେ ତ ନୂଆଁ ନୁହଁ, ସବୁଦିନର ଲକ୍ଷ୍ମୀ, ସମସ୍ତଙ୍କର ଲକ୍ଷ୍ମୀ । ଯାହାର ଯାହା ହେଲେ ବି ସମସ୍ତେ ତାକୁ ଖୋଜନ୍ତି ସେ ନ ହେଲେ ନଚଳେ ଅଥଚ ଏବେ ସମସ୍ତେ ଜଗିରଖି ଚଳୁଛନ୍ତି - ତାକୁ କଷ୍ଟ ହେବ ବୋଲି । ବିଶେଷ ଦାୟିତ୍ୱ ଗୁଡ଼ାକୁ ବି ନିଜେ ନିଜେ କରି ନେଉଛନ୍ତି - ବୋଉର ବ୍ୟବହାର ବି ସେମିତି ଖାପଛଡ଼ା ଲାଗୁଛି । ଏସବୁ ଦେଖି ତାକୁ ମାଡ଼ି ମାଡ଼ି ପଡୁଛି । ଭଲ ଲାଗୁନି, ସହଜ ଲାଗୁନି । କାହିଁକି ସମସ୍ତଙ୍କ ଧାରଣା ତା'ପ୍ରତି ବଦଳି ଯାଉଛି । କି ଅପରାଧ ତା'ର ? ନିଜକୁ ନିଜେ ପ୍ରଶ୍ନ କରି ବି ଉତ୍ତର ଖୋଜି ପାଏନା ଲକ୍ଷ୍ମୀ - ସମସ୍ତଙ୍କ ମନ ଭିତରେ ଆସନ ପାତି ବସିଥିବା ଲକ୍ଷ୍ମୀକୁ ଖୁବ୍ ଏକୁଟିଆ ଲାଗେ ଏଣିକି । କଥା ଛଳରେ ସେ ଦିନେ ବୋଉକୁ ପଚାରିଥିଲା, "ତମେମାନେ ମୋ ପାଇଁ ଏତେ ବ୍ୟସ୍ତ କାହିଁକି ହେଉଛ - ମୁଁ ଯେମିତି କୁଆଡୁ ଆସିଛି ଅତିଥି ଭଳି । ସହଜ ଲାଗୁନି ମୋତେ ।" ବୋଉ ତା'ର ନିତିଦିନିଆ ହସ ହସି ଦେଇ କହିଲା- "କାହିଁ ସେଭଳି କିଛି ତ ମୋ ଆଖିରେ ପଡ଼ିନି । ଏସବୁ ତୋ ମନର ଭାବନା, ଏମିତି କାହିଁକି ଭାବୁଛୁ, ତୁ ତ ସମସ୍ତଙ୍କର ଲକ୍ଷ୍ମୀ ।" ଏ କଥା କହିଲା ସିନା କେମିତି ଅଲଗା ଲାଗୁଥିଲା ବୋଉଟା । କିଛି ଭାବୁଛି ଯେମିତି ସବୁବେଳେ ।

ଏଇ ପରିବର୍ତ୍ତନର କାରଣ ଖୋଜିବାକୁ ଯାଇ ଏକାନ୍ତରେ ସେ ଅଂଧାର ସହିତ କଥା କୁହେ, ପଚାରେ, ଏମିତି କାହିଁକି ଲାଗୁଛି ତାକୁ ଯେ, ସେ ଏକା । ଅଥଚ ତା' ଭିତରେ, ବାହାରେ, ଚାରିପଟେ ଆତ୍ମୀୟସ୍ୱଜନ, ପରିଚିତ ମଣିଷଙ୍କ ଭିଡ଼ । ଅଂଧାର ଭିତରୁ ଉତ୍ତର ଆସେ ଏଇ ତ ତୋ ପ୍ରଶ୍ନର ଉତ୍ତର । ତୋ ମନଟା ବି ଆଜିକାଲି ତୋର ନୁହଁ, ଭୃଗୁଙ୍କର । ତୋ' ମନ ପ୍ରାଣ, ଚେତନା ସବୁକୁ ଭୃଗୁ ହିଁ ଆବୋରି ରହିଛନ୍ତି,

ଅଥଚ ଅନ୍ୟମାନଙ୍କ ପାଇଁ ଆଉ ସ୍ଥାନ କାହିଁ ?? ଏଣିକି ତୋର ସ୍ୱତନ୍ତ ଘରକରଣା ତୁ ଆମର କୁଣିଆ - କିଛି ଦିନ ପାଇଁ । ଚମକି ଉଠେ ଲକ୍ଷ୍ମୀ ଉତ୍ତରରେ - "ନା, ନା ସେକଥା ନୁହେଁ । ଏକଥା ତ ସେ ଚାହିଁନି । ଜଣକ ପାଇଁ ଏତେ ମଣିଷଙ୍କ ସ୍ନେହ, ଆତ୍ମୀୟତା ସଂପର୍କର ବନ୍ଧନକୁ ସେ କାଟି ପାରିବନି ତ.... ଏଇମାନଙ୍କୁ ନେଇ ତ ଜୀବନ । କେବେ ସେ ଘର କରିବ ବୋଲି ଆଜିଠୁ ସେମାନେ ମୋତେ ପର ବୋଲି ଭାବିବେ.... ହେଇପାରେନା, ସମସ୍ତେ ତାର...ଠିକ୍ ଯେମିତି ପୁରୁଣା ହେଇଗଲେ ତୋର ଛିଣ୍ଡିଯାଏ - ନୂଆଁ ତୋରର ଟାଣ ବାନ୍ଧିରଖେ ତାର ସବୁ ଭାବ ଭାବନା, ସ୍ୱପ୍ନକୁ । ନୂଆ କଥା, ନୂଆ ବିଚାର, ନୂଆ ଚିନ୍ତା, ପଶେ ତା' ଭିତରକୁ, ଏକ ନୂଆ ପୃଥିବୀର ଚିତ୍ର ଆଙ୍କୁ ଆଙ୍କୁ ସମୟ ଆଗେଇ ଚାଲେ..... ।"

ବାହାଘର ପାଇଁ ଶୁଭଦିନ ବାର ତାରିଖକୁ ନେଇ ସମୟ ନିର୍ଘଣ୍ଟ ଠିକ୍ ହେଲା ବୋଲି ରାଘବବାବୁ ଓ ଅଭୟା ଦିନେ ଜରାଶ୍ରମକୁ ଯାଇ ହେମଲତା ଓ କେଶବାବୁ ଜଣେଇ ଦେଇ ଆସିଲେ । ଅଭୟା ଗଲା ପରେ ହଠାତ୍ ହେମଲତାକୁ ଚାରିଆଡ଼ ଯିମିତି ଶୂନ୍ୟଶୂନ୍ୟ ଲାଗିଲା, ଛାତି ଭିତରଟା ଧଡ଼ ଧଡ଼ ହେଇଗଲା ମୁହୂର୍ତ୍ତକ ଲାଗି । ଏତେଦିନର ଦମ୍ଭିଲା ଟାଣପଣ ଉପରେ କିଏ ଯେମିତି ହାତୁଡ଼ି ପିଟି ଦେଇଗଲା ଯେତେସବୁ ଦୁଃଖ, ଅଭାବ, ଅସୁବିଧା ଭିତରେ ବି ସେ ଭାଙ୍ଗି ପଡ଼ିନଥିଲା ଏଇ ଲକ୍ଷ୍ମୀ ମୁହଁକୁ ଚାହିଁ । ଲକ୍ଷ୍ମୀ ଏବେ ବଡ଼ ହେଇଛି ସତ, ସକ୍ଷମ ହେଇଛି, ସମର୍ଥ ବି ହେଇଛି । ସବୁ ନିଜେ କରିପାରିବ ତଥାପି ସେମାନଙ୍କ ପାଇଁ ତ ସେଇ ଥିଲା ଭରସା, ତାକୁ ଛାଡ଼ିଦେଲେ ତ ସେମାନେ ଅସହାୟ । ଆଗକୁ ଚାଲିବା ପାଇଁ ସେ ଅଣ୍ଟାରେ ପଣତ ଭିଡୁଥିଲା କେବଳ ଏଇ ବଳଟେନାକୁ ଝିଅଟା ପାଇଁ । ଯାହା ବି କରୁଥିଲା, କରିବାକୁ ଚାହୁଁଥିଲା ସବୁରି ମୂଳରେ ଥିଲା ଲକ୍ଷ୍ମୀ । ସେ କେମିତି ମଣିଷ ହେବ, ଦି'ଅକ୍ଷର ପାଠ ପଢ଼ିବ, ଚାରିଜଣରେ ଜଣେ ହେଇ ଠିଆ ହେବ - ପାଠ ଦି' ଅକ୍ଷର ପଢ଼ିଥିଲେ ଭବିଷ୍ୟତ ଅଂଧାର ହେବନି । ବଞ୍ଚିବାର ରାହା ଖୋଜି ପାଇବ, ଏଇ ଆଶାରେ, ଏଇ ଭାବନା ନେଇ ଦିନରାତି ସ୍ୱାମୀ ସ୍ତ୍ରୀ ଦୁହେଁ ସବୁ କଷ୍ଟକୁ ତୁଚ୍ଛ ମନେ କରି ଆସୁଥିଲେ; ଲକ୍ଷ୍ମୀ ମୁହଁ ଶୁଖିଗଲେ ତା' ଦେହରୁ ପୋଷେ ରକ୍ତ ଶୁଖି ଯାଉଥିଲା । କେମିତି କଟିଗଲା ଏଇ ଚବିଶ ବର୍ଷ ଚାହୁଁ ଚାହୁଁ ଭାବିଲେ ଆଶ୍ଚର୍ଯ୍ୟ ଲାଗେ ତାକୁ । ଏଯାଏ ପାଖରେ ତା'ର ଲକ୍ଷ୍ମୀ ଥିଲା । ଲକ୍ଷ୍ମୀ ନାଁରେ ନିଦ ଯାଉଥିଲା, ଲକ୍ଷ୍ମୀ ନାଁରେ ତା'ର ରାତି ପାହୁଥିଲା । ଆଜି ସେ ତାଠୁ ଅଲଗା ହେଇ ନୂଆଁ ଘର କରିବାକୁ ଯିବ, ଭାବିଲାବେଳକୁ, ମନ ଉଦାସ ହେଇଗଲା ଅସହାୟ ଲାଗିଲା, ଖାଁ ଖାଁ କଲା ଛାତି ଭିତରଟା ପୁଷମାସର କ୍ଷେତ ଭଳି । ସେ ଯେମିତି ସବୁକିଛି ହରେଇ ଦେଉଛି । ଭାବୁ ଭାବୁ ଆଖିରୁ ଲୁହ ଝରିପଡ଼ିଲା, କଇଁ କଇଁ ହେଇ କାନ୍ଦି ଉଠିଲା

ମମତାମୟୀ ମାଁର ବିକଳ ପ୍ରାଣ । ଦୁଃଖରେ ନୁହେଁ ଆନନ୍ଦରେ ବିଭୋର ହେଇ - ଝିଅ ତା'ର ଘର କରିବ, ଏତେ କଥା ତ ସେ କଳ୍ପନା କରିନଥିଲା ଆଗରୁ ନା, ସେଇଥିପାଇଁ ତା'ର ଏଇ ଆବେଗପ୍ରବଣତା ।

କେଶବା ବୁଝିଲା, ହେମର ଭାବାବେଗ ତା' ଭିତରକୁ ବି ସଂକ୍ରମଣ କଲା - ତଥାପି ବୁଝେଇଲା "କାହିଁକି କାନ୍ଦୁଛୁ ହେମ, ଝିଅ ଆମର ଘର କରିବ, ସଂସାର ପାତିବ ଆମର ଖୁସି ହେବା କଥା । ସିଏ ଯୋଉଠି ଥିଲେ ବି ଆମର । ସେ ଖୁସିରେ ରହିବ, ନାଁ କରିବ - ସିଏ କ'ଣ କମ୍ କଥା । କେତେଜଣଙ୍କ ଭାଗ୍ୟରେ ଏମିତି ସୁଖ ଥାଏ । କାନ୍ଦନା, ଆମେ ଆଉ କେତେ ଦିନର ଯେ...! ଲୁହ ପୋଛି ପକା - ଖୁସି ହ", କଲ୍ୟାଣ କର, ତା'ର ଉନ୍ନତିରୁ ଉନ୍ନତି ହେଉ । କେଶବା ଆଖି ବି ଓଦା ହେଇଆସିଲା ଆନନ୍ଦାତିଶଯ୍ୟରେ । ମନକୁ ମନ ସ୍ୱଗତୋକ୍ତି କଲା ଭଳି କହିଲା - ଲକ୍ଷ୍ମୀ ମୋର ସତରେ ଲକ୍ଷ୍ମୀଟିଏ । କାଲି ପରି ଲାଗୁଛି ତାର ଜନ୍ମ... ଏତେଟିକେନାକୁ ଝିଅର ଗାଲରେ କଳା ଟାଇମନ୍ଦା - କିଏ କେତେ ପ୍ରକାରେ କହିଥିଲେ - ରାହାସପୁର ଜମିଦାର ଘର ସା'ନ୍ତାଣୀ କିନ୍ତୁ ଯାହା କହିଥିଲେ, ଆଜିକୁ ସତ ଫଳିଲା , "ଲକ୍ଷ୍ମୀପ୍ରତିମାରେ କେଶବା, ଇଏ ସାଧାରଣ ଝିଅ ନୁହେଁ, ଦେଖିବୁ ଏ' ଝିଅ ତୋତେ ଶ୍ରୀସଂପଦ ଆଣିଦେବ ଦିନେ ।" ମନେଅଛି ନା ହେମ...."

ହେମ ମୁଣ୍ଡ ଟୁଙ୍ଗାରିଲା ଲୁହ ପୋଛୁ ପୋଛୁ । କେଶବା ପୁଣ କହିଲା ଶିରୀ ସଂପଦ ଆଣୁ କି ନ ଆଣୁ, ଝିଅ ଆମର ମଣିଷର ପରି ମଣିଷ ହୋଇଛି । ରାଇଜ ଯାକରେ ତା ନାଁ ଡାକ, ଭାବିଲେ ମୋ' ଛାତି ଫୁଲି ଉଠୁଛି ଅପାରଗ ଙ୍କ କେଶବାର ଝିଅ ଲକ୍ଷ୍ମୀ.... ସତକୁ ସତ ଆକାଶକୁ ଛୁଇଁଛି..... ଭାବାବେଗରେ କୋହ ଉଠିଆସିଲା ତା'ର । ସବୁକିଛି ସମ୍ଭବ ହେଇଛି କେବଳ ରାଘବବାବୁଙ୍କ ପାଇଁ ନା, ନ ହେଲେ ଆମେ କିଏ ? ? ଆହୁରି ବଡ଼ ହେବ ଲକ୍ଷ୍ମୀ, ଆହୁରି ବଡ଼ ହେବ.... ।

ସ୍ୱାମୀ ସ୍ତ୍ରୀ ଦୁହେଁ, ନିଜ ନିଜର ଭାବାବେଗକୁ ବାଣ୍ଟି ନେଇଥିଲେ ।

ଲକ୍ଷ୍ମୀର ବାହାଘର ଖବର ଜରାଶ୍ରମ ଭିତରେ ଆନନ୍ଦର ଜୁଆର ସୃଷ୍ଟି କଲା । ସମସ୍ତେ ଖୁସି ମନପ୍ରାଣରେ । ସକାଳରୁ ସଂଜ ଯାଏ ଅନ୍ତେବାସିନୀ ଆଈ, ମାଈଁ, ନାନୀ, ମାଉସୀ, ଖୁଡ଼ୀମାନଙ୍କ ଅବସର ବେଳକୁ ପ୍ରକାର ପ୍ରକାର କଳ୍ପନା ଜଳ୍ପନାର ଖୋରାକ ବି ଯୋଗେଇ ଦେଲା । ତା' ସହିତ ବର୍ତ୍ତମାନର କଳ୍ପନା ଭିତରେ ଅତୀତ ଢିଙ୍ଗ ଉଠି ଅବସାଦର ମାହୋଲ ବି ସୃଷ୍ଟି କରୁଥିଲା । ଲକ୍ଷ୍ମୀ ସମସ୍ତଙ୍କର ପ୍ରିୟ ଥିଲା ଯାଉଣୁ ଆସୁଣୁ ରାତି ପାହିଲାଠୁ ରାତି ପର୍ଯ୍ୟନ୍ତ ସମସ୍ତେ ଲକ୍ଷ୍ମୀକୁ ଖୋଜୁଥିଲେ । ତା' ସହିତ ଗୋଟାଏ ଅନ୍ତରୀଣ

ଭାବଗତ ସଂପର୍କ ଯୋଡ଼ି ହେଇଯାଇଥିଲା ସଭିଙ୍କର । ଅଥଚ ଏବେ ସେ ଚାଲିଯିବ, ତାଙ୍କ ପାଖରୁ ଦୂରେଇ ଯିବ, ଭାବିଲାବେଳକୁ ଉଦାସ ହେଇ ଯାଉଥିଲେ ସମସ୍ତେ । ସେ ଚାକିରି କରିବାକୁ ଯାଉ ଅଥବା, ସଂସାର କରିବାକୁ ଯିବା ତ ନିଶ୍ଚିତ ।

ରାଜୁ ପରିଡ଼ାଏ ବୁଝେଇ ଦେଲେ, "ଏଇଟା ତ ସଂସାରର ନିୟମ ଶାବକପକ୍ଷୀର ଡେଣା ଜାଗିଲେ, ସ୍ୱାଭାବିକ ଭାବେ ସେ ଉଡ଼ିଯିବ, ତା' ପାଇଁ ଯେ ପୂରା ଆକାଶଟା ଅପେକ୍ଷା କରି ରହିଛି - ସେମିତି ଆମ ପାଇଁ ବି ଲକ୍ଷ୍ମୀ ତ ଝିଅ - ତାର ଦୁଇକୂଳ ପୁଣି କର୍ମକ୍ଷେତ୍ର ପ୍ରଶସ୍ତ - ଘର ସହିତ ବାହାର ଦୁନିଆ । ଦାୟିତ୍ୱପୂର୍ଣ୍ଣ ଚାକିରି - ଯେମିତି ହେଲେ ବି ସେ ଆମଠୁ ଦୂରକୁ ଯା'ନ୍ତା । ଆମେ ଖୁସି ହେବା କଥା - କଲ୍ୟାଣ କରିବା କଥା - ତା'ଜୀବନ ସଫଳ ହେଉ ସ୍ୱପ୍ନ ସାର୍ଥକ ହେଉ । ଝିଅ ଜୀବନର ମାନେ ତ ଏଇୟା । ବାପ ଘରେ ଜନ୍ମ ହେଇ ବଡ଼ ହେବ, ଶିକ୍ଷା ସଂସ୍କାର ଘରକରଣା ଶିଖିବ - ସମୟ ଆସିଲେ ଆଉ ଗୋଟିଏ ଘରକୁ ଯାଇ ତାକୁ ସବୁ କାମରେ ଲଗେଇବ - ସଂପର୍କ ତିଆରିବ - ମଣିଷ ଗଢ଼ିବ ।"

"ତା'ତ ସତ, ନିଶାନାନୀ କହିଲା, ଲକ୍ଷ୍ମୀ ଭଳି ଝିଅ ଯୁଆଡ଼େ ଗଲେ ବି ସୁଖୀ ହେବ । ସଭିଙ୍କୁ ଆପଣାର କରିବା ଗୁଣ ତା' ପାଖରେ ଅଛି । ସବୁଠି ଆଦର ପାଇବ ।" ଟିକିଏ ଚିନ୍ତାକଲା ଭଳି ରାଣୀ ଆଇ କହିଲା, "ଠିକ୍ ଯେ, ଆମେ ଏକା ହୋଇଗଲେ, ଲକ୍ଷ୍ମୀ ଭଳି ଝିଅ ଆଶ୍ରମ ପାଇଁ ଗୋଟିଏ ସଂପତ୍ତି । ଆଉ ସେଭଳି କେହି ହେବେନି । କିଏ ବୁଝିବ ଆମମାନଙ୍କ କଥା କେଜାଣି ?"

"[illegible] କାମ କେବେ ଅଟକେ, ସବୁ ଚାଲିଥାଏ ତା' ବାଟରେ, ଜଣେ ଗଲେ ଆଉ ଜଣେ ଆସେ, କେବେ ଶୂନ୍ୟସ୍ଥାନ ରହେନି । ତେବେ ଜଣେ ଜଣେ ଥା'ନ୍ତି - ଗଲା ପରେ ବି ଅନ୍ୟର ହୃଦୟରେ ଆସନ ପାତି ବଞ୍ଚି ରହନ୍ତି ସବୁଦିନ ପାଇଁ କହିଲେ ଶିବ ସାନ୍ତରା ।"

ଭଲ ମଣିଷଟିକୁ, ପ୍ରିୟ ମଣିଷଟିକୁ ପାଖରୁ ଛାଡ଼ିଲାବେଳେ ମନ ଥୟ ଧରେନା, ଉଦାସ ଲାଗେ, ଅବୁଝା ହୁଏ ଏମିତି । ଖାଲିପଣ ମାଡ଼ିବସେ ସବୁଠି । ଆଉ ଚାଲିଗଲା ପରେ... ହଜିଯିବା ଦରବକୁ ଖୋଜିହେଲା ଭଳି ମନ ବାଇଆ ବାତୁଳ ହୋଇ ଖୋଜିହୁଏ ହଜିଲା ଦିନକୁ... ଖେଦାକ୍ତ ହୁଏ... ମନେହୁଏ, ଯିଏ ଥିଲା, ସେଇ ଏକା ଭଲ, ତା' ଭଳି ଆଉ କେହି ହେଇନପାରନ୍ତି - ସେ ଭିନ୍ନ, ସେ ନିଆରା- ତା'ତୁଳନା ସେ ନିଜେ.... । ଏଇ ତ ନିୟମ ସଂସାରର ।

ବାହାଘର ନିକଟେଇ ଆସିଲା । ସଭିଙ୍କ ମନରେ ଉଲ୍ଲାସ – ସମସ୍ତେ ଚାହୁଁଥିଲେ, ବାହାଘର ଜାକଜମକରେ ହେବ । ଲକ୍ଷ୍ମୀ ସମସ୍ତଙ୍କର ପ୍ରିୟ । ତା'ଛଡ଼ା ଏଇ ମଉକାରେ ଦିନ ଦି'ଟା ତ, ଖୁସି ଉଲ୍ଲାସରେ କଟିବ । ବିଶେଷ କରି ଅଭୟାଙ୍କର ତ ଏଭଯା ଇଚ୍ଛା ଥିଲା । ଆର୍ଯ୍ୟ ବାହାଘର ସେ ନିଜ ଇଚ୍ଛାମତେ କରିପାରିଲେନି । ଆଜି ଯେତେବେଳେ ରାଘବବାବୁ କନ୍ୟାଦାନ କରିବେ, ଏବଂ ଭୃଗୁ ସାମନ୍ତ ଭଳି ଜ୍ୱାଇଁ ଘରକୁ ବରଣ ହେଇ ଆସିବ, ଏମିତି ସେମିତି ବାହାଘରଟାଏ ତ ଭଲ ଲାଗିବନି, ସୁନ୍ଦର ଦିଶିବନି – ତାଙ୍କର ଅପୂର୍ଣ୍ଣ ଇଚ୍ଛାକୁ ସେ ପୂରଣ କରିବାକୁ ଚାହାଁନ୍ତି ।

ଲକ୍ଷ୍ମୀ କିନ୍ତୁ ଚାହିଁଲାନି, ଚାହିଁଲେନି ଭୃଗୁ – ଘଟାଟୋପ ବାହାଘର ଆମର ଦରକାର ନାହିଁ । ସାଧାରଣରେ ଯାହା ହୁଏ ତାହା ହିଁ ହେବ । ଆମେ ତ ସାଧାରଣ । ମନ୍ଦିରରେ ହେଲେ ଖୁବ୍ ଭଲ । ଆଇନତଃ ରେଜିଷ୍ଟ୍ରେସନ୍ ଅଛି । ଅଯଥା ଖର୍ଚ୍ଚାନ୍ତ ସହିତ ପରିଶ୍ରମର ଆବଶ୍ୟକତା ନାହିଁ ବରଂ ତୁମମାନଙ୍କ କଲ୍ୟାଣ ଆଉ ଆଶୀର୍ବାଦ ଆମ ଜୀବନ ପାଇଁ ଏକାନ୍ତ ଆବଶ୍ୟକ, ସବୁଠୁ ମୂଲ୍ୟବାନ୍ । ଖୁସି ତ ନିଜ ଭିତରର । ସେଥିପାଇଁ ବାହାର ଜାକଜମକର ଆବଶ୍ୟକତା ନାହିଁ –ବୁଝେଇଦେଲେ ଭୃଗୁ । ଶେଷରେ ଲକ୍ଷ୍ମୀର ଯୁକ୍ତିକୁ କେହି କାଟିପାରିଲେନି ।

"ତାହା ହିଁ ହେଉ । ତା' ଖୁସି ହିଁ ଆମ ଖୁସି" – ସମସ୍ତେ କହିଲେ । ଏବଂ ଆଶ୍ଚର୍ଯ୍ୟର କଥା ହେଲା, ଏଇ ସମସ୍ତଙ୍କ ଭିତରେ ଆଉ ଦୁଇଟି ପ୍ରାଣୀ ଅଫୁରନ୍ତ ଆନନ୍ଦରେ କୁରୁଳୁ ଥିଲେ ନିଶ୍ଚୟ ଅନ୍ତଃକରଣରେ । ଅଥଚ ସେମାନଙ୍କର କିଛି କହିବାର ନଥିଲା କରିବାର ନଥିଲା, ଅଭିଳାଷ ନ ଥିଲା, ଦାବୀ ନଥିଲା କି ଅଧିକାରପଣ ବୋଲି କିଛି ନଥିଲା। –କେହି ତାଙ୍କ ଇଚ୍ଛା ଅନିଚ୍ଛାକୁ ଅପେକ୍ଷା ବି ରଖିନଥିଲେ । କାହିଁକି ବି ରଖିଥାନ୍ତେ ଯେ, ଯେତେବେଳେ ଏତେ ମଣିଷ ଝିଅଟା ପାଇଁ ବ୍ୟସ୍ତ ସେମାନେ ଆଉ ଅଧିକା କ'ଣ ଭାବନ୍ତେ ! ଇୟେ କ'ଣ କମ୍ କଥା ବଡ଼ ଭାଗ୍ୟ ନେଇ ଜନ୍ମ ହେଇଛି ଲକ୍ଷ୍ମୀ ସତରେ । ତାଙ୍କ ନିଜର ବୋଲି କ'ଣ ଅଛି, କ'ଣ ଦେଇଥାନ୍ତେ, କ'ଣ କରିପାରନ୍ତେ– ଯାହା ଥିଲା ନିଜର ବୋଲି, ତାକୁ ତ ସମର୍ପି ଦେଇଛନ୍ତି ଲୋକ-କଲ୍ୟାଣ ଯଜ୍ଞରେ, ଏକଥା ମଧ ସେମାନଙ୍କୁ ଜଣାନଥିବ ହୁଏତ – ସେଇ ନିରଭିମାନୀ କର୍ମଯୋଗୀ ମଣିଷ ଦି'ଟା ଆଉ କେହି ନୁହେଁ, ଲକ୍ଷ୍ମୀର ଗର୍ଭଧାରିଣୀ ମା' ହେମଲତା ଆଉ ବାପ କେଶବା । ସର୍ବସାଧାରଣ ହେଇ ବି କେଡ଼େ ଗରୀୟାନ୍ ସେମାନେ ବିଚାରରେ, କେଡ଼େ ମନ, କେଡ଼େ ହୃଦୟ । କଥାରେ କହି ହେବନି, ଭାଷାରେ ବୁଝେଇ ହେବନି ଅଥଚ ଅନୁଭବରେ ବୁଝିହେବ ।

ସମସ୍ତଙ୍କ ଗହଣରେ ବସି ଭାବୁଥିଲେ ରାଘବବାବୁ । ଲକ୍ଷ୍ମୀ ବାହାଘର ନେଇଁ ଆଲୋଚନା ଚାଲିଥିଲା – କିଏ କେତେ ପ୍ରକାରେ କହୁଥିଲେ, ଅଥଚ ସଭିଙ୍କ ଭିତରେ

ବସିଥିବା ହେମ ଆଉ କେଶବା କେବଳ ଢୁଲୁଢୁଲୁ ହେଇ ଚାହିଁଥିଲେ - ପଦୁଟିଏ ବି ତାଙ୍କ ପାଟିରୁ ବାହାରିନଥିଲା - ମନର ଆନନ୍ଦାତିଶଯ୍ୟ ଫୁଟି ଉଠୁଥିଲା ମୁଖମଣ୍ଡଳରେ । କେଡ଼େ ଭାଗ୍ୟବାନ୍ ମଣିଷ ଦି'ଟା ! ! ସାଧାରଣ ହୋଇ ବି ଅସାଧାରଣ ! ! ମନେ ମନେ ପ୍ରଣାମ କଲେ ରାଘବବାବୁ- "ତମେ ପ୍ରଣମ୍ୟ" ଶେଷରେ ବିଚାର ଆଲୋଚନା ସାଂଗ ହେବାକୁ ବସିଲା ତଥାପି ସମସ୍ତଙ୍କ ଭିତରେ କିଛି ଗୋଟାଏ ଭାବନା ଉଭାରି ଉଠୁଥିଲା ବୋଲି ଜଣା ପଡୁଥିଲା ଚାପା ଗୁଂଜନରୁ । ରାଘବବାବୁ ପ୍ରଶ୍ନ କଲେ ରାଜୁ ପରିଡ଼ାଙ୍କୁ - ମନରେ କିଛି ରହିଗଲା କି ପରିଡ଼ାଏ ? କ'ଣ ଭାବୁଛନ୍ତି ?

"ସେମିତି କିଛି ନୁହେଁ, ତେବେ ଆମ ସମସ୍ତ ଅନ୍ତେବାସୀଙ୍କର ଇଚ୍ଛା ଥିଲା - ଲକ୍ଷ୍ମୀର ବାହାଘର ଏଇଠି, ଆଶ୍ରମରେ ହେଉ - ଲକ୍ଷ୍ମୀ ଆମ ସମସ୍ତଙ୍କ ଝିଅ- ତାକୁ ଆମେ ଏଇଠୁ ଶାଶୂଘରକୁ ଛାଡ଼ିବୁ, ଆମ ସମସ୍ତଙ୍କ କଲ୍ୟାଣ ନେଇ ଆମ ଗହଣରୁ ସେ ଯିବ ନୂଆ ସଂସାରକୁ ତା'ର ।"- କହିଲେ ରାଜୁ ପରିଡ଼ା ।

"ଏଇ କଥା ତ ..... ସେଇୟା ହିଁ ହେବ କହିଲେ ରାଘବବାବୁ । ସମସ୍ତେ ବି ସମର୍ଥନ କଲେ କଥାକୁ ।

ସେଦିନ ଘରକୁ ଯିବା ବାଟରେ ଅଭୟାଙ୍କୁ ବୁଝେଇ ଦେଲେ ରାଘବବାବୁ - ଝିଏ ସମସ୍ତଙ୍କର, ସମସ୍ତଙ୍କ ଭିତରେ ବାଣ୍ଟି ହେଇଯାଇଛି, ତାକୁ ଗୋଟିଏ ପଣତକାନି କେବେ ଘୋଡ଼େଇ ରଖିପାରିବନି ଅଭୟା । ଯଶୋଦା ରଖିପାରିନଥିଲେ କି ଦେବକୀ ପାରିନଥିଲେ - ନୟନ ପିତୁଳା କୃଷ୍ଣଙ୍କୁ ନିଜ ପଣତ ଉହାଡ଼ରେ । ଲୋକାର୍ପଣ କରି ଦେଇଥିଲେ ତୁମେ ହେମଲତା ଆଉ କେଶବାକୁ ଦେଖିଲ ତ.... କେତେ ଉଦାର, ନିଃସ୍ୱାର୍ଥପର ।

ଆଉ କୋଉ କାମ ବାକି ରହିଲା ଭାବୁ ଭାବୁ, ତରବର ହୋଇ ପ୍ୟାଡ଼ଲ୍ ମାରିଲା ବିଜୁ ସାଇକଲରେ । ସଂଜ ହେଇ ଆସୁଛି । ସୁଲତା ମାଉସୀକୁ ନେଇ ସେ ମାର୍କେଟ୍ ଯିବ । ଆହୁରି ପାଏ ବାଟ ରହିଲାଣି ଜରାଶ୍ରମ । ସରମାଁ ଏତିକି ବେଳକୁ ମନେ ପକେଇଲେ, ଶଙ୍ଖା ସିନ୍ଦୂର ଅଳତା ନାହିଁ ଡାଲାରେ, ବୋହୂକୁ କ'ଣ ଦେଇ ଡାକି ଆଣିବୁ - ଯା' ଶୀଘ୍ର । ଅଥଚ ସେ ଏସବୁ କିଛି ଜାଣିନି ।

ରାତି ପାହିଲେ ବାହାଘର । ତାକୁ ନିଃଶ୍ୱାସ ମାରିବାକୁ ତର ନାହିଁ ସପ୍ତାହେ ହେଲା । ଜଣେ ମଣିଷ ସିଏ, କେତେ ଆଡ଼କୁ ହେବ । ଅବଶ୍ୟ ନିଜ ପ୍ରକାରେ ଘରଟାକୁ ସଜାଡ଼ି ଦେଇଛି । ଭାଇଙ୍କର କେତେଜଣ ମାତ୍ର ଡାକ୍ତରବଂଧୁଙ୍କୁ ନିଜେ ଯାଇ ସସ୍ତ୍ରୀକ ନିମନ୍ତ୍ରଣ କରି ଆସିଛି ଯେତେବେଳେ, ସେମାନଙ୍କୁ ତ ସାଧ ମତେ କିଛି ଚର୍ଚ୍ଚା କରିବାକୁ

ହେବ । ବଜାର ସଉଦା, କିଛି ରୋଷେଇ ବ୍ୟବସ୍ଥା ବି କରିଛି ରାଘବବାବୁଙ୍କ ପରାମର୍ଶ ନେଇ । ଭାଇଙ୍କର ମାନସମ୍ମାନକୁ ତ ଦେଖିବାକୁ ହେବ – କେହି ଯେମିତି ନ କୁହନ୍ତି । ଗୁରୁଜନ ନଥିବା ଘରୁ କି ମର୍ଯ୍ୟାଦା ଜଣେ ଆଶା କରିବ – ସେଥିପାଇଁ ସେ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଛି । ତଥାପି କୋଉଠି କ'ଣ ଅଡୁଆ ରହିଯାଇଥିବ । ଅସଲ ବେଳକୁ ଖୋଜା ପଡ଼ିବ – ଏଇ ଯେମିତି ମନେ ପକେଇଲେ ସରମାଁ । ଅବଶ୍ୟ ସରମାଁ ଆଜିକାଲି ସ୍ୱାଭାବିକ ଆଚରଣ କରୁଛନ୍ତି । ତାଙ୍କ ବ୍ୟବହାର ବି ସ୍ୱାଭାବିକ ଲାଗୁଛି – ଇଏ ବି ଗୋଟାଏ ଶୁଭ ସୂଚନା । ଭାରି ଖୁସି ଅଛନ୍ତି ବୋହୂ ଘରକୁ ଆସିବ ବୋଲି । ଯା'ହେଉ ଈଶ୍ୱରଙ୍କ କରୁଣା । କାମ ଆଉ କଣ ବାକି ରହିଲା, ମନେ ପକଉ ପକଉ କେତେ ଚିନ୍ତା ପଶି ଆସୁଛି ମୁଣ୍ଡକୁ । ସ୍ୱାଭାବିକ କଥା ବାହାଘରଟା ହେବ । କ'ଣ ସୋଜା କଥା । ଘରଟାକୁ କି ଗାଡ଼ିକୁ ଟିକେ ସଜେଇବ ବୋଲି ବସିଥିଲା ଯେ, ଭାଇ ବିରକ୍ତ ହେଲେ – "କିଛି ତ ଆଡ଼ମ୍ବର ହେବନି ଆମର । ତୁ ଏ ସବୁ ବନ୍ଦ କଲୁ" । କ'ଣ ଆଉ କରିଥାନ୍ତା ସେ । ମଣିଷଟା କେମିତି ବିଚିତ୍ର ଧରଣର ଉଦାସିଆ । ଭାବନା ଅଟକିଲା ବିହୁର ।

ଆଗରେ ଜରାଶ୍ରମ । ସାଇକଲ୍‌ରୁ ଓହ୍ଲାଇ ଗେଟ୍ ଭିତରକୁ ପଶିଲା ସେ । ଶୀଘ୍ର ଶୀଘ୍ର କାମ ସାରିବାକୁ ହେବ ତାକୁ ।

ରାତି ପାହିଲାବେଳକୁ ଜରାଶ୍ରମ ଭିତରୁ ଯୋଡ଼ି ମହୁରୀର ବିଳମ୍ବିତ ଲହର ଭାସି ଆସିଲା ଶୁଭବିବାହର ମାଙ୍ଗଳିକ ସୂଚନା ଦେଇ । ଆଶ୍ରମ ଭିତରେ ପ୍ରାୟ ସମସ୍ତେ ତତ୍‌ପର ହୋଇ ଉଠିଥିଲେ ଲକ୍ଷ୍ମୀକୁ ବାଡୁଅ ପାଣି ଗାଧେଇବା ପାଇଁ । ହୁଳହୁଳି ଓ ଶୁଭଶଙ୍ଖ ଧ୍ୱନି ଭାସି ଆସୁଥିଲା ଆଶ୍ରମ ଭିତରୁ ।

ରାଣୀ ଆଈ, ନିଶା ନାନୀ, ସାବିତ୍ରୀ ଖୁଡ଼ୀ, ଶୋଭା ମାଉସୀ ଉଷା ମାଉସୀଙ୍କ ମୁରବିଆନା କାମ ବରାଦିଆ ପାଟି ମଝି ମଝିରେ ଶଙ୍ଖଧ୍ୱନି ସହିତ ମିଶି ପରିବେଶକୁ ଉତ୍ସବ ମୁଖର କରି ତୋଳୁଥିଲା । ଯଦିଓ ନିମନ୍ତ୍ରିତ ଅତିଥି କେହି ନଥିଲେ ତେବେ ବି ଆଶ୍ରମ ଭିତରେ ଗହଳ ଚହଳ ଲାଗିଥିଲା ବୋଲି କି କଣ ତାର ନିତିଦିନର ସନ୍ନ୍ୟାସୀ ଭାବଟା କଟି ଯାଇଥିଲା । ନହେଲେ ଯୋଗାସନରେ ବସିଥିବା ଜରାଶ୍ରମ ଆଜି ଯୋଗ ଭାଙ୍ଗି ସହଜ ସାଧାରଣ ହୋଇଯାନ୍ତା କିମିତି ! ଲକ୍ଷ୍ମୀ ତ ସଭିଙ୍କର ପ୍ରିୟପାତ୍ରୀ । ତେଣୁ ସେ କିମିତି ବିବାହ ଉତ୍ସବରେ ସହଯୋଗ ନ କରିବ ଯେ !

ଗେଟ୍ ପାଖରେ ପୂର୍ଣ୍ଣକୁମ୍ଭ ଥୋଇ ଅଲେଖ, ଧରଣୀ, ସୁକାନ୍ତ, ରାଜୁ ପରିଡ଼ା, ଶିବସାନ୍ତାରାଙ୍କ ସହିତ ଅନ୍ୟ ଅନ୍ତେବାସୀ ବର ଓ ବରପକ୍ଷକୁ ଅପେକ୍ଷା କରିଥିଲେ । ନିଜେ ରାଘବବାବୁ କନ୍ୟାପିତାର ସାଜରେ ପ୍ରସ୍ତୁତ ଥିଲେ ବରକୁ ବରଣ କରିବା ପାଇଁ ।

ଅଭୟା, ହେମଲତାକୁ ନେଇ ଚାହିଁ ବସିଥିଲେ ବରଣ ଡାଲା ଧରି । ଅଭୟା ଜବରଦସ୍ତ ହେମକୁ ନୂଆ ଶାଢ଼ୀ ପିନ୍ଧେଇ ଦେଇଥିଲେ । ସେ ମନା କରୁଥିଲା । ରାଣୀ ଆଈ, ନିଶାନାନୀ, ବି ପାଟି କଲେ, ତୋ' ଝିଅ ବାହାଘର, ନୂଆଁ ଖଣ୍ଡେ ପିନ୍ଧି ଦିଅଁ ଦେବତାଙ୍କୁ ପୂଜା ଦେବୁନି - ଇଏ କି କଥା, ପିନ୍ଧିବୁ ନା । ସେମିତି କେଶବାକୁ ବି ବାଧ କରି ନୂଆଁ ପିନ୍ଧେଇଥିଲେ ରାଘବବାବୁ । ସେ କିନ୍ତୁ ବାହାରକୁ ନଯାଇ, ବିବାହ ବେଦୀ ପାଖରେ ଅପେକ୍ଷା କରିଥିଲା ଅଜସ୍ର କଲ୍ୟାଣ ଧରି । ଇଏ ତ ତା' ଜୀବନର ଶ୍ରେଷ୍ଠ ମହୋତ୍ସବ । ତା' ପାଇଁ ତ କଳ୍ପନାତୀତ । ସଭିଙ୍କ ଭିତରେ ଉତ୍ସୁକତା ଭରି ରହିଥିଲା । କେତେବେଳେ ଡାକ୍ତର ସାମନ୍ତ ବରବେଶରେ ଆସି ପହଞ୍ଚିବେ ! ସେ ତ ଆଉ ସବୁଦିନର ଡାକ୍ତରବାବୁ ନୁହଁନ୍ତି ! ସେଇଥିପାଇଁ ଏତେ ଉତ୍ସୁକତା, ଏତେ ଉତ୍କଣ୍ଠା ।

ଲକ୍ଷ୍ମୀର ଭାବନା କିନ୍ତୁ ଭିନ୍ନ ପ୍ରକାରେ ଥିଲା । ବଡ଼ିଭୋର୍‌ରୁ ନିଶାନାନୀ, ଶୋଭାଖୁଡ଼ୀ, ଉଷା ମାଉସୀ ହେରିକା ତାକୁ ବାଡୁଅ ପାଣି ଗାଧେଇ ଦେଇଥିଲେ । କନ୍ୟାବାସ ପିନ୍ଧି ଚମତ୍କାର ଦିଶୁଥିଲା ସେ । ରାଣୀ ଆଈ ରଜନୀଗନ୍ଧାର ଗଜରା ମାଳଟିଏ ଆଣି ଶୋଭା ହାତକୁ ବଢ଼େଇ ଦେଇ କହିଲା - 'ପିନ୍ଧେଇ ଦେ ଲକ୍ଷ୍ମୀ ଜୁଡ଼ାରେ ।'

ଲକ୍ଷ୍ମୀକୁ କନ୍ୟା ସଜେଇ ଯେଝା ଚାଲିଗଲେ ନିଜ ନିଜ କାମ ସମ୍ଭାଳିବାକୁ । ଲକ୍ଷ୍ମୀ ଏକୁଟିଆ ବସି ବସି ଭାବିବାକୁ ଲାଗିଲା, ଓଲଟେଇ ଗଲା ନୂଆ ପୁରୁଣା ପୃଷ୍ଠା ସବୁକୁ । କେତେ ଘଟଣା, କେତେ ସ୍ମୃତି ଆଉ ଅନୁଭୂତିରେ ଭରା ହେଇଛି ତା ଜୀବନ ପୃଷ୍ଠା ସବୁ ସତେ! ଆଜିର ଏଇ ସକାଳ ତା' ଜୀବନର ଆଉ ଏକ ମୋଡ଼ - ଏଣିକି ଆଉ ପ୍ରକାରେ ଚାଲିବ ଜୀବନଧାରା । ପୁଣି କିଛି ନୂଆ ଅନୁଭୂତି , ନୂଆ ବିଚାର ଲେଖି ହେଇଯିବ ଖାଲି ପୃଷ୍ଠାରେ । ଜାଣେନା, ଏଇ ନୂଆ ଅଧ୍ୟାୟ କେଉଁ କାହାଣୀ କହିବ, କି କଥା ବଖାଣିବ । ଆସୁଥିବା ଜୀବନ ତ ଆଉ ଗୋଟା ହେଇ ରହିବନି । ତା'ର ଦୁଇଟା ପୃଥିବୀ ହେବ - ତାକୁ ଦି'ଭାଗ ହେବାକୁ ପଡ଼ିବ । ପାରିବ ତ ? ନିଜକୁ ପ୍ରଶ୍ନ କରି ହଡ଼ବଡ଼େଇ ଗଲା ଲକ୍ଷ୍ମୀ । ସତେ ତ! ସେ ଆଜିଯାଏ ସମସ୍ତଙ୍କର ଲକ୍ଷ୍ମୀ ହେଇ ରହିଛି, ସମସ୍ତଙ୍କ ପାଇଁ, ସମସ୍ତଙ୍କ ଭିତରେ ସେ ବଞ୍ଚିଛି, ଆଉ ଆଜି ତା'ପାଇଁ ଭିନ୍ନ ଏକ ବ୍ୟକ୍ତିଗତ ଜୀବନର ନିହ ପଡ଼ିବାକୁ ଯାଉଛି, ତା'ର ଆଉ ଗୋଟିଏ ପରିଚୟ ଯୋଡ଼ି ହେଇଯିବ ଭୃଗୁଙ୍କ ସହିତ । ସେ ପାରିବ ତ, ଦୁଇ ପୃଥିବୀର ଭାରକୁ ସମାନ ଭାବରେ ସମ୍ଭାଳି ପାରିବ ତ ? ଭୃଗୁ ତାକୁ ଉଚିତ୍ ମାର୍ଗ ନିଶ୍ଚୟ ଦେଖେଇବେ ।

"ଭାବନା ଭିତରକୁ ଭୃଗୁ ପଶି ଆସିଲେ, ପଶି ଆସିଲା ସାତ ଫରୁଆ ଭିତରେ ସଂପାଦିଥିବା ଭୃଗୁଙ୍କର ନାଲି ପଥରବସା ମୁଦି । ଗଲା ରାତିରେ ଫୋନ୍ କଲାବେଳେ ଭୃଗୁ ହିଁ ମନେ ପକେଇ ଦେଇଥିଲେ ସେଇ ମୁଦି କଥା ।" ଅନେକ ଦିନ ହେବ, ବନ୍ଧୀ

ହୋଇ ରହିଛି ମୋ' ଭଲ ପାଇବାର ସନ୍ତକଟି । ଏଥର ତାକୁ ମୁକ୍ତ କରିବାରେ ତ କିଛି ଅସୁବିଧା ନାହିଁ । ବନ୍ଦ ସିନ୍ଦୂକ ଭିତରେ ସେ ଅଣନିଃଶ୍ୱାସୀ ହୋଇଯାଉଥିବ ଲକ୍ଷ୍ମୀ ।

"... ରାତିଟା ପାହୁ, ଆଲୁଅ ଝଲମଲ ସକାଳରେ ତମରି ହାତରେ ସେ ମୁକ୍ତି ପାଇବ । ପ୍ରତୀକ୍ଷାରେ ବି ତ ଥ୍ରୀଲ୍ ଅଛି..." କହିଥିଲା ଲକ୍ଷ୍ମୀ । ହୀରାଟିଆ ସକାଳରେ ସେ ଆହୁରି ଉଜ୍ଜଳି ଉଠିଲା ଭାବୁଭାବୁ । ଭାବନା ଭିତରେ ରୋମାଞ୍ଚିତ ହେଲା ଏବଂ ତା'ର ଇଚ୍ଛା ହେଲା ଥରେ ନିରୋଳାରେ ମୁଣିଟିକୁ କାଢ଼ି ଅନୁଭବ କରିବ ଭୃଗୁଙ୍କୁ ତାଙ୍କ ଅନୁପସ୍ଥିତିରେ ।

ହଠାତ୍ ଭାବନା ଛିଣ୍ଡିଗଲା ବାନ୍ଧବୀ ରେଣୁ ଆଉ ସୁଷମାଙ୍କ ପାଟିଶୁଣି । ଖୁସିର ଫୁଲଝରି ଫୁଟେଇ ରେଣୁ କହିଲା, ବାଃରେ ଲକ୍ଷ୍ମୀ, ହଳଦୀରଙ୍ଗର ଶାଢ଼ୀରେ ତୁ ତ ଠିକ୍ ହଳଦୀବସନ୍ତ ସାଜିଛୁ... ହେଲେ ଏକୁଟିଆ ବସି କ'ଣ ଭାବୁଛୁ ଯେ, ସାଥୀ ହଳଦୀବସନ୍ତ କଥା ? ସୁଷମା ତା' ଗାଲ ଟିପି କହିଲା । ତାଙ୍କ ପଛେ ପଛେ ସୁଲତା ଚା କପ୍ ଆଣି ବଢ଼େଇ ଦେଇ କହିଲା, "ଏତେ ଡେରି କାହିଁକି ହେଲା ଝିଅ, କାଲିରୁ ଆସିବା ପାଇଁ କହିଥିଲି ନା... ଯା ହେଉ ଖୁସି ଲାଗିଲା ଆସିଲ... ତମେମାନେ ଗପୁଥାଅ, ବର ଆସିବା ବେଳ ହେଲେ ଡାକିନେବି ।" ବ୍ୟସ୍ତ ହୋଇ ସୁଲତା ତଳକୁ ଓହ୍ଲେଇଗଲା ।

## ॥ ୧୩ ॥

ବାହାଘର ଦିନ ସକାଳୁ ସକାଳୁ ଭୃଗୁଙ୍କ ବସାଘରେ ଛୋଟକାଟର ଗହଳି ଭିତରେ ଉଚ୍ଛୁଳି ଉଠୁଥିଲା । ଭୃଗୁଙ୍କର ଚାରି ଛ'ଜଣ ଡାକ୍ତର ବଂଧୁଙ୍କ ବ୍ୟତୀତ, ବିଶେଷ କେହି ନିମନ୍ତ୍ରିତ ଅତିଥି ନଥିଲେ । ସେମାନେ ସସ୍ତ୍ରୀକ ଆସିଥିଲେ ଏବଂ ବିଜୁ ଗାଁରୁ ତା' ବୋଉ ଓ ଭାଇ ଭାଉଜ ଆସିଥିଲେ । ନ ଆସିଥାନ୍ତେ ବି କେମିତି, ବାବୁଙ୍କ ବାହାଘର, ସରମାଁ ତ ଅଛନ୍ତି । ତେବେ ଏଇ ଦିନେ ଦି'ଦିନ ହେଲା, ତାଙ୍କଠି ଅସ୍ୱାଭାବିକ ଭାବେ କିଛିଟା ପରିବର୍ତ୍ତନ ଲକ୍ଷ୍ୟ କରିଛନ୍ତି ଭୃଗୁ । ଏତେ ଗହଳ ଚହଳ ଭିତରେ ବି ମଝିରେ ମଝିରେ ସେ ଏକୁଟିଆ ବସି କ'ଣ ସବୁ ଯେମିତି ଭାବୁଛନ୍ତି । ଦୂର ଆକାଶକୁ ଚାହିଁ ଦୀର୍ଘଶ୍ୱାସ ଛାଡୁଛନ୍ତି । ଏଇ ଭାବାନ୍ତରକୁ ବିଜୁ ବି ଲକ୍ଷ୍ୟ କରିଛି ଏବଂ ସତର୍କ ଅଛି ।

ବାହାଘର ଦିନ ଭୋର ଟ୍ରେନ୍‌ରେ ଆସି ଆର୍ଯ୍ୟ ଓ ପୁଲୋମା ପହଞ୍ଚିଛନ୍ତି । ସେମାନେ ସିଧା ଘରକୁ କି ଜରାଶ୍ରମକୁ ନ ଯାଇ ଭୃଗୁ ସାମନ୍ତଙ୍କ ବସାରେ ହିଁ ଓହ୍ଲେଇଛନ୍ତି; ରାଘବବାବୁ ଓ ଅଭୟାଙ୍କ କହିବା ପ୍ରକାରେ । କାରଣ ଆର୍ଯ୍ୟ, ପୁଲୋମାକୁ ତରବର କଲା, "ଶୀଘ୍ର ଶୀଘ୍ର ନିଜର ନିତ୍ୟକର୍ମ ସାରିନିଅ ପୁଲୋମା, ନଚେତ୍ କେତେବେଳେ ଶୁଭ ମୁହୂର୍ତ୍ତ ଗଡ଼ିଯିବ, ମୋତେ ଜାଣି ହେବନି । ବାପାଙ୍କ ତାଗିଦ୍ ଯେମିତି ଠିକ୍ ସମୟରେ ବର ଆଶ୍ରମରେ ପହଞ୍ଚେ । କଫି ଖିଆ ସାରି ଉଠିଲା ପୁଲୋମା, ନିଜ କାମ ସାରିବାକୁ । ଟିକିଏ ଟିକିଏ ଓଡ଼ିଆ କହିପାରିଲାଣି ସେ ଏଣିକି । ତେଣୁ ବିଶେଷ ଅସୁବିଧା ଲାଗୁନଥିଲା ତାକୁ । ଆର୍ଯ୍ୟକୁ ବେଶି ସମୟ ଲାଗିଲାନି ନିଜକୁ ପ୍ରସ୍ତୁତ କରିବାକୁ । ଏଥର ଭୃଗୁଙ୍କ ପାଳି, ତାଙ୍କୁ ସଜେଇବାକୁ ପଡ଼ିବ ।

କପାଳରେ ଚନ୍ଦନ ଟିପା ଦେବାକୁ ଅଗୁରୁଚନ୍ଦନର ଗିନା ଧରି ଭୃଗୁଙ୍କ ସାମ୍ନାରେ ଠିଆ ହେଲା ପୁଲୋମା – ମନା କରିପାରିଲେନି ଭୃଗୁ । 'ଜୀବନରେ ଥରୁଟିଏ ସାଜିବାକୁ ପଡ଼ିବ ଆପଣଙ୍କୁ ।'

ଯତ୍ନର ସହିତ ଭୃଗୁଙ୍କୁ ବରବେଶରେ ସଜେଇବାରେ ଆର୍ଯ୍ୟ ଓ ପୁଲୋମା ଲାଗି ପଡ଼ିଲେ । ଡାକ୍ତର ବଂଧୁମାନେ ବି ସାହାଯ୍ୟ କରୁଥାନ୍ତି । ବରର ସାଜ ପୋଷାକ, କପାଳରେ ଚନ୍ଦନ ଟିପା, ଗଳାରେ କର୍ପୂର ମାଳା – ଚମତ୍କାର ଦିଶୁଥିଲେ ଭୃଗୁ ସାମନ୍ତ । ବିଜୁ ରଜନୀଗନ୍ଧାର ଗଜରା ହାରଟିଏ ଜଣେ ଡାକ୍ତରବଂଧୁଙ୍କ ହାତରେ ବଢ଼େଇଦେଲା ଭୃଗୁଙ୍କୁ ପିନ୍ଧେଇ ଦେବା ପାଇଁ ।

ଏଥର ବର ଓ ବରଯାତ୍ରୀ ପ୍ରସ୍ତୁତ । ବିଜୁ ଗାଁରୁ ଆସିଥିବା ଭାଉଜ ଓ ତା' ବୋଉ ବନ୍ଦାପନା ସାମଗ୍ରୀ ଆଣି ଥୋଇଲେ । ଘିଅ ଦୀପ ଓ ପୂର୍ଣ୍ଣ କୁମ୍ଭ ଆଣି ଥୋଇଲା ବିଜୁ । ଆର୍ଯ୍ୟ ପୁଲୋମା ହାତକୁ ଶଙ୍ଖ ବଢ଼େଇ ଦେଲା । ସମସ୍ତେ ହୁଳହୁଳି ଦେଲେ- ଆରମ୍ଭ ହେଲା ବନ୍ଦାପନା ପର୍ବ ।

ସରମାଁ ବନ୍ଦାପନା କଲେ ପ୍ରଥମେ । ଦୁଧଭାତ ପାଟିରେ ଦେବାକୁ ଯାଇ, ହଠାତ୍ ଅଟକି ଗଲେ ମୁହୂର୍ତ୍ତେ ଭୃଗୁଙ୍କ ମୁହଁକୁ ଚାହିଁ ଏବଂ ବିଚିତ୍ର ଏକ ପ୍ରଶ୍ନ କଲେ ଭୃଗୁଙ୍କୁ- "ତୋତେ ଦୁଧଭାତ ଖରାପ ଲାଗେନି ତ ପୁଅ ?"

"ହଠାତ୍ କାହିଁକି ଏ ପ୍ରଶ୍ନ କଲେ ମା' ? ଓଲଟା ପ୍ରଶ୍ନ କଲେ ଭୃଗୁ ସରମାଁଙ୍କୁ ।

"ଭାର୍ଗବଙ୍କୁ ତ ମୋଟେ ଭଲ ଲାଗେନି କ୍ଷୀର ଖାଇବାକୁ । କ୍ଷୀର ଦେଖିଲେ ମୁହଁ ଆଡ଼େଇ ନିଏ, ସେଇଥିପାଇଁ ପଚାରିଲି ।" ଉତ୍ତର ଦେଲେ ସରମାଁ । ଚମକି ଉଠିଲେ ଭୃଗୁ ନିଜ ଭିତରେ । ସରମାଁ ନିଜ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଛନ୍ତି – ଶୁଭ ସୂଚନା ନିଶ୍ଚୟ । ତେବେ ଏଇ ସନ୍ଧିକ୍ଷଣଟାକୁ ସତର୍କ ରହିବାକୁ ପଡ଼ିବ । ଯେମିତି ମନରେ ତାଙ୍କର କୌଣସି ଆଘାତ ନ ଲାଗେ । ନିଜକୁ ସହଜ ଓ ସ୍ୱାଭାବିକ କରିବାକୁ ଯାଇ ଭୃଗୁ କହିଲେ ତମ ସ୍ନେହ ଆଉ କଲ୍ୟାଣ ଏଥିରେ ମିଶିଛି ଯେତେବେଳେ, ମୋତେ ନିଶ୍ଚୟ ଭଲ ଲାଗିବ ମା' କହି ସରମାଁଙ୍କ ପାଦଛୁଇଁ ପ୍ରଣାମ କଲେ । ପାଖରେ ଠିଆ ହେଇଥିଲା ବିଜୁ – ଚକିତ ହେଲା । ଦେଇଙ୍କ ପାଦ ଏ ଘରେ ନପଡୁଣୁ ତ ଏଇ ଶୁଭ ସଂକେତ – ପାଦ ପଡ଼ିଲେ ଏ ଘର ହସି ଉଠିବ ନିଶ୍ଚୟ – ମନେ ମନେ ସ୍ୱଗତୋକ୍ତି କରୁ କରୁ ହାତଯୋଡ଼ିଲା ବିଜୁ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ।

ବାଜା ନଥିଲା, ରୋଶଣି ନ ଥିଲା ବରଯାତ୍ରୀଙ୍କ ଆଡ଼ମ୍ବ ଆଟୋପ କିଛି ନ ଥିଲା; ଶଂଖ, ହୁଳହୁଳିର ପବିତ୍ର ଧ୍ୱନି ଭିତରେ, ଅନ୍ତରଂଗ କେଇଜଣ ବଂଧୁ, ପରିଜନଙ୍କ ଗହଣରେ ଗାଡ଼ିରେ ବସିଲେ ଭୃଗୁ ସାମନ୍ତ । ସରମାଁଙ୍କ ଆଖିରୁ ଲୁହ ଗଡ଼ି ଆସିଲା,

ହୁଏତ ଆନନ୍ଦାଶ୍ରୁ ଥିଲା ତାଙ୍କର ବନ୍ଦାପନା କରି ନିଜେ ପୁଅକୁ ଗାଡ଼ିରେ ବସେଇ ବସିଲେ ପାଖରେ । ବାଟସାରା କିନ୍ତୁ ସେ ନୀରବ ଥିଲେ । ଗାଡ଼ିର ଗତି ସହିତ ଚେତନାରେ ଚିଆଁ ଲାଗୁଥିଲା ହୁଏତ ଏବଂ ସମଭାବରେ ଭାବନାର ଗତି ବି ତୀବ୍ର ହେଉଥିଲା । ହୁଏତ ମନେପଡ଼ିଯାଉଥିଲା ଅତୀତର କିଛି ଘଟଣା, ଦୁର୍ଘଟଣା, ଅନୁଭୂତିର କିୟଦଂଶ, ଅଥବା ହଜେଇ ଦେଇଥିବା ସେଇ ଅନ୍ତରଂଗ ମଣିଷ, ପୁଅ ଭାର୍ଗବ, ଯିଏ ଥିଲେ ଆଜି ଏଇ ଭୃଗୁ ଭଳି ଦିଶୁଥାନ୍ତା । ଏମିତି ବରବେଶ ସାଜି ବୋହୂ ଆଣି ଦିଅନ୍ତା । ସେମାନେ କେହି ଆଉ ଫେରିବେନି... ମନେ ମନେ ଗୁଣୁଗୁଣେଇ ସରମାଁ । ପାଖରେ ବସି ଲକ୍ଷ୍ୟ କରୁଥିଲେ ଭୃଗୁ, କହିଲେ "କିଏ କହିଲା ଫେରିବାନି.....ସମସ୍ତେ ଫେରିଆସିବା", ତମେ ପରା ବୋହୂ ଆଣିବା ପାଇଁ ଯାଉଛ... ?

ସେମିତି ଅନ୍ୟମନସ୍କ ଭାବେ ଛୋଟ ହୁଁ ଟିଏ କରି ରାସ୍ତାର ଗହଳି ଆଡ଼କୁ ଦୃଷ୍ଟି ଦେଲେ ସରମାଁ ହୁଏତ ଭାବୁଥିଲେ ସମସ୍ତେ ଫେରିଲେ ବି ଭାର୍ଗବ ଆଉ ଫେରିବନି ମୁଁ ଜାଣେ.... ।

"ଦେହ ଭଲ ଲାଗୁନି ମା', କ୍ଳାନ୍ତ ଦିଶୁଛ ଯେ.... ବ୍ୟସ୍ତ ହେଇ ପଚାରିଲେ ଭୃଗୁ ଏବଂ ପଛରେ ବସିଥିବା ବିଜୁକୁ କହିଲେ ମା'ଙ୍କ ଔଷଧ ଖାଇବା ସମୟ ହେଇଗଲାଣି... ଦେଇ ଦେ' ।" ବିଜୁ ସାଂଗେ ସାଂଗେ ଆଦେଶ ପାଳନ କଲା । ବରକର୍ତ୍ତା କେହି ନ ଥିଲେ, ଏଇ ବାହାଘର ସରମାଁ ହିଁ ଥିଲେ କର୍ତ୍ତା । କର୍ତ୍ତାର ଭୂମିକା ସେ ତୁଲାଇ ଥିଲେ । ଭୃଗୁଙ୍କୁ ନେଇଁ ଗାଡ଼ି ପହଞ୍ଚିଗଲା 'ସୁଧାମୟୀ ଓଲଡ୍ ଏଜ୍ ହୋମ୍'ର ଗେଟ୍ ସାମ୍ନାରେ ।

ସମବେତ ଅନ୍ତେବାସୀଙ୍କ ଭିତରେ ଆନନ୍ଦର ଲହରି ଖେଳିଗଲା । ଶଙ୍ଖ ଓ ହୁଳହୁଳି ଧ୍ୱନି ମଧ୍ୟରେ ବରକୁ ସ୍ୱାଗତ ଜଣେଇଲେ ସମସ୍ତେ । କନ୍ୟାପିତା ରାଘବବାବୁ ଭୃଗୁଙ୍କ ହାତଧରି ବରଣ କରିଆଣିଲେ । ଅଭୟା ଓ ହେମ ବନ୍ଦାପନା କରି ବିବାହମଣ୍ଡପକୁ ନେଇ ଆସିଲେ ଭୃଗୁଙ୍କୁ । ବିବାହ କର୍ମ ଆରମ୍ଭ ହେଲା । ଲକ୍ଷ୍ମୀ ବେଦୀକୁ ଆସିଲା ଅନନ୍ତ ଆଶା ଓ ଅଖଣ୍ଡ ବିଶ୍ୱାସକୁ ପଣତରେ ବାନ୍ଧି ।

ହେମଲତା ଆଉ କେଶବୀର ମନପକ୍ଷୀ ଅସୀମ ଉଲ୍ଲାସରେ ଆକାଶର ଅଗଣାରେ ଏପାଖରୁ ସେପାଖ ଡେଣାମେଲି ଉଡୁଥିଲା । ଆର୍ଯ୍ୟ ଓ ପୁଲୋମା ଅତିଥିଙ୍କ ଚର୍ଚ୍ଚାରେ ଲାଗି ପଡ଼ିଥିଲେ । ବିଶେଷ ଅତିଥି ଭାବେ ନିମନ୍ତ୍ରିତ ହେଇ ଆସିଥିବା ଶ୍ରୀପଦବାବୁ ଦ୍ୱିଗୁଣ ଉତ୍ସାହରେ ସାହାଯ୍ୟ କରୁଥିଲେ ଆର୍ଯ୍ୟଙ୍କୁ । ପରିଚୟ କରାଇ ଦେଉଥିଲେ ଜରାଶ୍ରମର ଅନ୍ୟାନ୍ୟ କର୍ମକର୍ତ୍ତା ଏବଂ ଟ୍ରଷ୍ଟିମାନଙ୍କ ସହିତ । ଶ୍ରୀପଦ ବାବୁଙ୍କ ଭୂମିକା ବି କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନଥିଲା ।

କନ୍ୟାଦାନର ସମୟ ହେଲା । ରାଘବବାବୁ ବେଦୀ ପାଖରେ ହୁଇଲ୍‌ଚେୟାର୍

ଆଶ୍ରୟରେ ଥିବା କେଶବାକୁ ନିଜ ପାଖକୁ ଡାକି ଆଣିଲେ, ହେମ ବି ପାଖରେ ଥିଲା । ତା' ହାତକୁ ଧରି କହିଲେ.... ଟିକିଏ କଷ୍ଟ କରି ନଈଁପଡ଼ରେ କେଶବା ଦୁହେଁ ମିଶି କନ୍ୟାଦାନ କରିବା, ଏକାଠି ପାଣି ଟେକିଦେବା ଶଙ୍ଖରେ.... ତୋ' ହାତ ବଢ଼େଇ ଦେ...... ।

"ମୁଁ.... ? ମୁଁ ଆଉ କାହିଁକି.... ସଂକୁଚିତ ହୋଇ କହିଲା କେଶବା । ସବୁ ତ ଆପଣ କରିଛନ୍ତି । ମୁଁ ଆଉ କ'ଣ କଲି ବାପର କର୍ତ୍ତବ୍ୟ ଯେ..... ।"

"ତୁ ଆଉ କ'ଣ କରିଥାନ୍ତୁ, ଲକ୍ଷ୍ମୀ ଭଳି କନ୍ୟାରତ୍ନକୁ ଦେଶଦଶର କଲ୍ୟାଣ ପାଇଁ ସମର୍ପି ଦେଇଛୁ.... ଏଇ କ'ଣ କମ୍ କଥା...... ! ଆ'.... ବଢ଼େଇ ଦେ' ହାତ.... ।" କହିଲେ ରାଘବବାବୁ । କେଶବା ସୁନାପୁଅ ପରି ବଢ଼େଇ ଦେଲା ହାତ.... ପୁରୋହିତଙ୍କ ପବିତ୍ର ମନ୍ତୋଚ୍ଚାରଣ ଭିତରେ ଲକ୍ଷ୍ମୀର ଜୀବନ ଯୋଡ଼ି ହୋଇଗଲା ଭୃଗୁସାମନ୍ତଙ୍କ ଜୀବନ ସହିତ ଜନ୍ମ ଜନ୍ମାନ୍ତର ପାଇଁ ।

ଆଉ ଲକ୍ଷ୍ମୀ ସେଇ ପବିତ୍ର -ଚିରନ୍ତନ-ମନ୍ତ୍ରର ଶାବ୍ଦିକ ଛନ୍ଦରେ ନିଜ ଚିନ୍ତାଚେତନାକୁ ମିଶାଇ ଦେଇ ସ୍ୱୟଂ ପରିପୂର୍ଣ୍ଣା ହୋଇଯାଉଥିଲା ଓଢ଼ଣା ତଳେ । ଏବଂ ଭାବୁଥିଲା, ତା' ଉପରେ ଏତେ ମଣିଷଙ୍କ ବିଶ୍ୱାସ, ଆଶା ଓ ଭରସା ସହିତ ଅଜସ୍ର କଲ୍ୟାଣ ରହିଛି - ତାର ମର୍ଯ୍ୟାଦା ରକ୍ଷା କରିପାରିବ ତ ସେ ! ଜୀବନକୁ ମହୋତ୍ସବମୟ ନକରି, ତପସ୍ୟାରେ ପରିଣତ କରିବାକୁ ହେବ । ଭାବନାରେ ବାଧା ଦେଇ ପୁରୋହିତ ବିବାହ ସଂପନ୍ନର ଉଦ୍‌ଘୋଷଣା କଲେ ଏବଂ ପୁଲୋମା ତାକୁ ଉଠାଇନେଲା ଘର ଭିତରକୁ । ଆର୍ଯ୍ୟ ସହିତ ଭୃଗୁ ମଧ ଘର ଭିତରକୁ ଗଲେ ବିଶ୍ରାମ ନେବା ପାଇଁ ।

ଲକ୍ଷ୍ମୀକୁ ଘର ଭିତରକୁ ନେଇଁ ପୁଲୋମା ଭୃଗୁଙ୍କ ଡାକ୍ତର ବଂଧୁଙ୍କ ପତ୍ନୀମାନଙ୍କ ସହିତ ପରିଚୟ କରାଇଦେଲା । ତା' କଫିର ଆସର ଭିତରେ କିଛି ସମୟ ପରସ୍ପର ମଧ୍ୟରେ ଭାବର ଆଦାନପ୍ରଦାନ ଚାଲିଲା । ଆଳାପ ବେଶ୍ ଅନ୍ତରଙ୍ଗ ଥିଲା । ଲକ୍ଷ୍ମୀର ବ୍ୟବହାରରେ ସମସ୍ତେ ମୁଗ୍ଧ ହୋଇଥିଲେ ।

ସେପଟେ ବିଶ୍ରାମ କକ୍ଷରେ ବି ଭୃଗୁଙ୍କୁ ଘେରି ରହିଥିଲେ ନିମନ୍ତ୍ରିତ ଅତିଥିମାନେ । ଆର୍ଯ୍ୟ ସେମାନଙ୍କ ସହିତ ବେଶ୍ ଆଳାପ ଆଲୋଚନାରେ ମଜି ଯାଇଥିଲା । ସମୟ ମୋଟେ ଜଣାପଡୁନଥିଲା । ରାଘବବାବୁ ସେମାନଙ୍କ ଭିତରେ ପଶି ମନେପକେଇ ଦେଲେ ଯେ, "ସନ୍ଧ୍ୟା ହେବା ପୂର୍ବରୁ ଆମକୁ କନ୍ୟାବିଦା କରିବାକୁ ପଡ଼ିବ ଆର୍ଯ୍ୟ; ସେଥିପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ତୁ ଯାଇ ହେମଲତାକୁ ଏକଥା ଜଣେଇଦେଇ ଆସ ।" ବାପାଙ୍କ ଆଦେଶ ପାଳନ କରିବା ପାଇଁ ଆର୍ଯ୍ୟ ଉଠିଗଲା ଆସରରୁ ।

ଦିନ ପ୍ରାୟ ସରିସରି ଆସୁଥିଲା ।

ଦିନ ତମାମର ଖୁସିବାସି, ହର୍ଷ ଉଲ୍ଲାସ ଭିତରେ ଭାବିବା ପାଇଁ ମୁହୂର୍ତ୍ତେ ବି ସମୟ ନ ଥିଲା କାହା ପାଖରେ । ସମସ୍ତେ ପ୍ରାୟ କିଛି ନା କିଛି କାମରେ ବ୍ୟସ୍ତ ଥିଲେ । ବିଶେଷ କରି ହେମଲତା । ସମୟ ଟିକିଏ ମିଳିଲେ ଝିଅଟା ପାଖରେ ବସି ଦି'ପଦ କଥା କହିବାକୁ ମନ ଥିଲେ ବି ସମ୍ଭବ ହେଉନଥିଲା । ସମୟ କି, ଅତିଥି କେହି ସେ ସୁଯୋଗ ଦେଉନଥିଲେ । କାମର ଫାଙ୍କରେ କେତେବେଳେ ଟିକିଏ ଲକ୍ଷ୍ମୀ ବସିଥିବା ଦୁଆର ମୁହଁରେ ଟିକିଏ ଚାହିଁଦେଇ ଆସୁଥିଲା । ଚନ୍ଦ୍ରଉଦିଆ ଝିଅ ତାର କନ୍ୟା ସାଜି ରାଜରାଣୀ ଭଳି ଦିଶୁଛି । ଆଉ ମାତ୍ର କେଇଟା ଘଣ୍ଟା ପରେ ତାକୁ ବିଦାୟ ଦେବାକୁ ହେବ । ତା' ଘର ସେ କରିବ । ସମୟ ସୁବିଧା ହେଲେ ମୁହଁ ମାରିଯିବ ବାପାବୋଉଙ୍କ ପାଖରେ । ଆଉ ଚାକିରିରେ ପଶିଲେ ତ ଛାଡ଼ । ନିଜ ପାଇଁ ବି ସମୟ ନଥିବ ସରିଲା ହେମଲତାର ଝିଅ ସରାଗ । ଭାବିଲା ବେଳକୁ ତା ମା' ମନ ଆନ୍ଦୋଳିତ ହେଉ ଯାଉଥିଲା । ଅନ୍ୟମାନଙ୍କ ଆଖିରୁ ନିଜ ଲୁହକୁ ଲୁଚେଇ ପୋଛି ଦେଉଥିଲା ସେ ଚୁପ୍‌ଚାପ ।

ଲକ୍ଷ୍ମୀର ସ୍ଥିତି ବି ଠିକ୍ ସେଇଯା ଥିଲା । ଏତେ ଦାୟିତ୍ୱ ସଂପନ୍ନ ଝିଅଟା, ଆଜି କେମିତି କେଜାଣି ଅତି ସାଧାରଣ ଝିଅଟିଏ ହେଇଗଲା । ସାଂଗସାଥିଙ୍କ ଗହଣରେ ସିନା ହସିମଜି କଥା କହୁଥିଲା, ହେଲେ ନିଜ ଭିତରର ଭାବାନ୍ତରକୁ ସେ ଯେ ଘୋଡ଼େଇ ପାରୁନଥିଲା, ଆଉ କିଏ ବୁଝୁନବୁଝୁ ଅଭୟା ବୁଝିପାରୁଥିଲେ । ଯେତେ ପାଠ ପଢୁ, ଯେତେ ଜ୍ଞାନୀମାନୀକୁ ବୁଦ୍ଧି ବଳରେ ଶାସନ କରୁ, ଝିଅ, ଝିଅ ମନରେ ନରମ - ଭାବପ୍ରବଣ । ଏଇ ତ ହେମ ମଝିରେ ମଝିରେ ଆସି ଦୁଆର ମୁହଁରେ ଠିଆ ହେଇ ମୁହୂର୍ତ୍ତେଲେଖା ଚାହିଁଦେଇ ଯାଉଛି । ଲକ୍ଷ୍ମୀ ଠିକ୍ ଲକ୍ଷ୍ୟ କରିଛି ତା' ବୋଉର କାନ୍ଦୁଣୁ ମାନ୍ଦୁଣୁ ଚେହେରା ଆଉ ଲକ୍ଷ୍ମୀ ମୁହଁର ରଂଗ ବଦଳିଯାଉଛି । ଆହା! ଅଭୟାଙ୍କୁ ବି ବିକଳ ଲାଗିଲା । ଲକ୍ଷ୍ମୀ ପାଖକୁ ଉଠିଯାଇ କହିଲେ - ଦୁଃଖ କରୁଛୁ କି ମାଁ, ଇଏ ତ ଝିଅ ଜୀବନର କଥା । ସବୁରି ଜୀବନରେ ଏଇ ମୋଡ଼ ଆସେ । ଜନ୍ମ ହେଲା ଷଠୀଘର ଦିନେ ଅଚିହ୍ନା ହେଇଯାଏ - ଆଉ ଜଣକ ଅଗଣାର ଚଉରା ମୂଳେ ଦୀପ ଜାଳି ସେଇ ଘରର ମଂଗଳ କାମନା କରେ ନିଃଶ୍ୱାସ ଥିବା ଯାଏ । ଅଭୟାଙ୍କ ଆଖି ଓଦା ହେଇ ଆସିଲା କହୁ କହୁ ।

ଅଭୟାଙ୍କ ଭାବାବେଗ ଲକ୍ଷ୍ମୀ ମନକୁ ସଂକ୍ରମି ଆସିଲା । ସେ ତ ଜାଣୁଛି, ବୋଉ କାନ୍ଦୁଛି । ତା' ଆଖିର ଲୁହକୁ କେବେବି କାହା ଆଗରେ ଦେଖାଏନି । ପିଲାଦିନରୁ ସେ ଦେଖିଆସିଛି ଏ ସ୍ୱଭାବ ।

ଲକ୍ଷ୍ମୀ ଭାବିଲା, ଆଜି ରାତି ପାହିଲା ବେଳକୁ ବୋଉ ଏକା ହେଇଯିବ । ସେ

ନ ଥିବ ତା' ପାଖରେ । ବୋଉକୁ ଛାଡ଼ି ସେ କେବେ ରହିନି ପ୍ରାୟ । ସୁଖଦୁଃଖ ଅଭାବ ଅସୁବିଧା ସବୁବେଳେ ସେ ପାଖରେ ଅଛି ବୋଉର । ସେ ଯେ ଆଉ ତା' ପାଖରେ ଏଣିକି ନଥିବ, ଏମିତିକା ସମୟକୁ ସେ ହୁଏତ କଳ୍ପନା କରି କାନ୍ଦୁଛି ନିଶ୍ଚୟ । ପୁଣି ତା' ସହିତ ଆଶ୍ରମର ସମସ୍ତ ଦାୟିତ୍ୱ ତା' କାନ୍ଧରେ ରାତି ପାହିଲେ ବୟସର ଶେଷ ପାହାଚରେ ଠିଆ ହେଇଥିବା ମଣିଷମାନେ ଏଣିକି ତାକୁ ନଖୋଜି ବୋଉକୁ ଖୋଜିବେ । ବାପା ବି ତ ରୋଗୀଣା, ତାଙ୍କ କଥା ବି ବୁଝିବ.... ବୋଉଟା ଜୀବନର ବୋଝ ବୋହି ବୋହି ନଇଁଗଲାଣି । ବୁଢ଼ୀ ଦିଶୁଛି କେତେ.... ଭାବିଲା ବେଳକୁ ଲକ୍ଷ୍ମୀର ଛାତି ଭିତରଟା ଥରି ଉଠିଲା । ଦଳି ଚକଟି ହେଇଗଲା ପେଟ ଭିତରଟା ।

ଅନେକ ଦିନ ପରେ ଲକ୍ଷ୍ମୀ ଏକାନ୍ତ ଭାବେ ନିଜକଥା, ନିଜ ପରିବାର କଥା ଭାବିବାକୁ ଯାଇ ବ୍ୟସ୍ତବିବ୍ରତ ହେଇ ପଡ଼ିଲା - ନହେଲେ ଅନ୍ୟମାନଙ୍କ ଦୁଃଖ ଦୁର୍ଦ୍ଦଶା ଦେଖୁ ଦେଖୁ, ଆପଣା ଦୁଃଖ କଷ୍ଟ ଖୁବ୍ ଛୋଟ ଲାଗେ । ଭାବେ ଅନ୍ୟମାନଙ୍କଠୁ ସେମାନେ ତ ସୁଖରେ ନ ହେଲେ ବି ଭଲରେ ହିଁ ଅଛନ୍ତି - ଭାବିଲେ ସାହସ ଲାଗେ ।

ଅଥଚ ଆଜି, ଏଇ ମୁହୂର୍ତ୍ତଟା ତାକୁ ଏମିତି କାହିଁକି ଦୁର୍ବଳ କରିଦେଉଛି କେଜାଣି !

"କ'ଣ ଏତେ ଭାବୁଛୁ ମ....କାହାକଥା ? ବଡ଼ ଝାଙ୍କଟିଏ ଦେଇ ରେଣୁ ତା' ଭାବନାକୁ ଟିକିଏ ଚିମୁଟି ଦେଲା । ତୋ ସେଲ୍‌ଫୋନ୍‌କୁ କେତେଟା ମେସେଜ୍ ଆସିଲାଣି... ଥରେ ଦେଖିଲୁଣି ?" ସୁରମା ଆଖିମାରି କହିଲା, 'କାହା କଥା ଭାବିବ ଆଉ...କହି ସେଲ୍‌ଫୋନ୍‌ଟା ବଢ଼େଇ ଦେଲା ଲକ୍ଷ୍ମୀ ହାତକୁ, 'ନେ ଦେଖ୍' ।

ସତକୁ ସତ ମେସେଜ୍ ଭିତରେ ଭୃଗୁଙ୍କର ମେସେଜ୍‌ଟିଏ ଥିଲା ଲକ୍ଷ୍ମୀ ପାଇଁ । "ମୁଁ ଅପେକ୍ଷା କରିଛି ଲକ୍ଷ୍ମୀ ତମ ପାଇଁ...... ତମେ ପ୍ରସ୍ତୁତ ତ ?" ଫଟୁ ଫଟୁ ହସିଦେଲା ଲକ୍ଷ୍ମୀ ଫିକ୍ କରି । ସବୁ ଭାବାବେଗକୁ ପୋଛି ଦେଇ ମନେ ମନେ କହିଲା - ଭାରି ରୋମାଣ୍ଟିକ୍ ହେଇଗଲେଣି ଡାକ୍ତରସାହେବ ତା'ହେଲେ ।

ବିଦାୟବେଳା । ରାଘବବାବୁ ସମସ୍ତଙ୍କୁ ତରବର କଲେ । ଏଥର ଯିବା । ଗୋଧୂଳି ଲଗ୍ନ ଗଡ଼ିଯାଉଛି । ଆଉ ଡେରି କରିବା ଉଚିତ୍ ହେବନି ।

ଜଣ ଜଣ କରି ଲକ୍ଷ୍ମୀ ଅନ୍ତେବାସୀଙ୍କ ପାଖକୁ ଯାଇ ବିଦାୟ ମାଗିଲା । ଅଶ୍ରୁଳ ନୟନରେ ଖୁସି ମନରେ ହିଁ ବିଦାୟ ଦେଲେ ସମସ୍ତେ - 'ଯା' ମା' ଯା' ଖୁସିରେ ଯା' ସୁଖରେ ଘରସଂସାର କର । ଯୋଉ ବଡ଼ ମନ, ବଡ଼ ହୃଦୟ ନେଇଁ ଆମ ଭଳି ଅସହାୟଙ୍କ ଆଡ଼କୁ ହାତ ବଢ଼େଇ ଥିଲୁ, ସେଇ ମନ ତୋର ଚିରଂଜୀବୀ ହେଉ । ତୋ' ଚଲାପଥରେ ଫୁଲ ବରଷୁ । ବଡ଼ରୁ ବଡ଼ ହ' ମା', ଏଇ ସ୍ନେହ ଟିକକ ଛଡ଼ା ଆଉ କ'ଣ ଅଛି ଆମ ପାଖରେ ତୋତେ ଦେବାକୁ ଯେ ।

ରୋମାଂଚିତ ହେଲା ଲକ୍ଷ୍ମୀ ! ଏତେ ସ୍ନେହ, ଭଲପାଇବା ତା'ପାଇଁ ଥିଲା ଏଠି ସେ ତ କଳ୍ପନା କରିନଥିଲା ! ଏତେ ହୃଦୟ ତାକୁ ବାନ୍ଧି ରଖିଥିଲେ, ଅଥଚ ଏଇ ଭାବର ସଂପର୍କକୁ ଛିଣ୍ଡେଇ ସେ ଯିବ କେମିତି ! ପେଟ ଭିତରୁ କୋହ ସବୁ ଉତୁରି ଆସିଲେ ଲୁହ ହେଇ ।

ନିଶାନାନୀ ଲକ୍ଷ୍ମୀ ହାତରେ କନକାଞ୍ଜଳି ଦେଇ କହିଲା, "ବୋଉ ପଣତରେ ଅଳାଡ଼ି ଦେଇ ତା' ଋଣରୁ ମୁକ୍ତ ହେଇ ଯା' ମା'....."

କନକାଞ୍ଜଳିକୁ ହାତରେ ଧରି ଲକ୍ଷ୍ମୀ ମନେ ମନେ ଉଚ୍ଚାରଣ କଲା, ମୁଁ ତୋତେ କିଛି ଫେରେଇପାରୁନି ବୋଉ, କିମିତି ଫେରେଇବି, କୋଉଟାକୁ ଫେରେଇବି କହ.... ଗୋଟାପଣେ ମୁଁ ଟା ଯେ ତୋର, ତୋ ହାତ ତିଆରି...... ତୋରି ଦିଆ ରକ୍ତମାଂସରେ ଗଢ଼ା ଏଇ ଶରୀର, ତୋ ଠୁ ଅମୃତ ପିଇ ବଢ଼ିଛି.... ତୋରି ହାତଧରି ଚାଲି ଶିଖିଛି, କଥା କହିଛି....ଚିନ୍ତା, ଚେତନା, ବିଚାର ସବୁ ତ ତୋଠୁ ଆଣିଛି – କୋଉଟାକୁ ଫେରେଇବି, ଯାହାକୁ ଫେରେଇଲେ ବି ତ ମୁଁ ନିଃସ୍ୱ ହେଇଯିବି ବୋଉ । ତା'ଛଡ଼ା ଏତେ ମଣିଷଙ୍କ କଲ୍ୟାଣ, ଭଲପାଇବାକୁ ସଜାଡ଼ି ସଂପାଦି, ଯୋଗାଡ଼ି ମୋ ପଣତରେ ବାନ୍ଧି ଦେଇଛୁ, କେମିତି ଫେରେଇବି..... କିଛି ଦେଇପାରୁନି.... ସବୁ ନେଇଯାଉଛି ସାଂଗରେ... ମୁଁ ଋଣୀ ତମ ସମସ୍ତଙ୍କ ପାଖରେ...ଭାବବିହ୍ୱଳ ହେଇ ପଡୁଥିଲା ଲକ୍ଷ୍ମୀ । ନିଜେ ସରମାଁ ହିଁ ତା' ହାତକୁ ଧରି ହେମ ପଣତରେ ଅଳାଡ଼ି ଦେଇ କହିଲେ ଚାଲ ମାଁ ଏଥର ଆମ ଘରକୁ ଯିବା । କୃଷ୍ଣଚୂଡ଼ାର ଶାଖାରୁ କଇଁଳପାତି ଦି'ଟା ଡକାଡକି ହେଇ ଉଡ଼ିଗଲେ । ହୁଳହୁଳିର ଲହଡ଼ି ଭିତରେ ଲକ୍ଷ୍ମୀ ଯାଇ ଗାଡ଼ିରେ ବସିଲା । ଆଶ୍ରମର ସମସ୍ତେ ଚାହିଁଥିଲେ ଓଦା ଆଖି ନେଇ ଲକ୍ଷ୍ମୀର ଗାଡ଼ି ଅଦୃଶ୍ୟ ହେବା ଯାଏ ।

ହଠାତ୍ ସବୁ ନିଶୂନ୍, ନିଛାଟିଆ ନିଃସ୍ତବ୍ଧ । ସମୟଟା ସ୍ଥିର ହେଇଗଲା ଯିମିତି । ସମସ୍ତଙ୍କୁ ଫ୍ରିଜ୍ କରିଦେଇଗଲା ଲକ୍ଷ୍ମୀ । ଏମିତିକି 'ସୁଧାମୟୀ ଓଲଡ୍ ଏଜ୍ ହୋମ୍' ଟା ବି ମୁହୂର୍ତ୍ତକ ଲାଗି ସ୍ଥବିର ପାଲଟିଗଲା । ଏମିତି ଦିନ ନଥିଲା, ଏଇ ଜରାଶ୍ରମରେ ଲକ୍ଷ୍ମୀ ନାହିଁ ଭାବିବାକୁ । ଆଉ କିଏ ଥାଉ କି ନ ଥାଉ, କାହା ପାଟି ଶୁଭୁ କି ନ ଶୁଭୁ ସକାଳୁ ରାତି ଶୋଇଲାଯାଏ 'ଲକ୍ଷ୍ମୀ' ଡାକ ଶୁଭୁଥିବ । କିଏ ନା କିଏ, ତାକୁ ଖୋଜୁଥିବ ଆଉ ସେ ଏ ପାଖରୁ ସେ ପାଖ, ଉପରୁ ତଳ ହେଇ ଧାଉଁଥିବ ଚରଖି ଭଳି । ସବୁଠି ତାର ଉପସ୍ଥିତି । ସବୁଠି ସେ ଥିବ । ବିଗତ କିଛି ବର୍ଷ ଧରି, ଜରାଶ୍ରମ ପ୍ରତିଷ୍ଠା ହେବା ଦିନରୁ 'ଲକ୍ଷ୍ମୀ' ଆଶ୍ରମକୁ ଚଳଚଂଚଳ କରି ରଖିଥିଲା । ଅତଏବ, ତାର ଅବର୍ତ୍ତମାନ, ଏଇ ମୁହୂର୍ତ୍ତରେ ଯେ ସମସ୍ତଙ୍କୁ ଏକ ନିଶୂନ୍ ଶୂନ୍ୟ ଇଲାକାର ଅନୁଭବ ଆଣି ଦେଇଛି ସଭିଙ୍କ ମନରେ ଏଥିରେ ସଂଦେହ ନାହିଁ । ଆଶ୍ରମରୁ ଯେମିତି ଜୀବନ ଛାଡ଼ିଯାଇଛି ।

ହେମଲତା ତ ସେଇଠି, ସେଇ ଭୂଇଁ ଉପରେ ବସିପଡ଼ିଲା ଲଥ୍ କରି - ସବୁ ତାକୁ ଅଂଧାର ଦିଶିଲା" ସତେ ଯେମିତି ଆଖିରୁ ଆଲୁଅ ହଜିଗଲା - ଶୂନ୍ୟ ଲାଗିଲା ଛାତି ଭିତରଟା । କେଶବା ମୂକ ହୋଇଯାଇଥିଲା । ଅସହାୟ ବି ମନେ କଲା ନିଜକୁ - ହେଲେ କିଛି ସମୟ ପରେ ନିଜ ଭାବନାକୁ ଗୋଟେଇ ନେଇ ଭାବିଲା, ସେ ଏମିତି ବୋକାଙ୍କ ଭଳି କ'ଣ ଭାବୁଛି । ଝିଅ ତାର ଏଘରୁ ଯାଇ ଅନ୍ୟଜଣକ ଅଗଣାରେ ଲୀଳାଖେଳା କରିବ । ତା' ଘର ଚଉରାମୂଳେ ସଂଜବତି ଜାଳିବ - ସଂସାର ତା'ର ଲମ୍ବି ଲମ୍ବି ଯିବ ତେଣିକି କେଡ଼େ ଖୁସିର କଥା । ସୁଖର ଦିନ ଆସୁଛି ତା' ପାଇଁ । ଅଥଚ ଛାତି ଭିତରଟା ତା'ର ଏମିତି ଶୂନ୍ୟ ଲାଗୁଛି କାହିଁକି ଯେ! ସଚରାଚର ତ ଏମିତି ଘଟେ । ଝିଅ ସେ, ଘୁ'ଆଡ଼େ ଗଲେ ବି ଦୀପ ଜାଳିବ, ଆଲୁଅ କରିବ ଘର । ଆଉ ତା ଝିଅ ତ ଲକ୍ଷ୍ମୀ ସତରେ । ସେ ଖୁସି ହେବା କଥା... ସେ ଖୁସି ହେବ... ଗାମୁଛାରେ ଓଦାଆଖିକୁ ପୋଛି ଡାକ ପକେଇଲା ହେମକୁ... "ଏମିତି ଶୂନ୍ୟକୁ ଚାହିଁ ବସିଛୁ କଣ ମ... ଆସୁନ୍ତୁ, ମୋତେ ଘର ଭିତରକୁ ନେଇଁଯିବୁ... ।"

ପଶ୍ଚିମ ଆକାଶ ସିନ୍ଦୂରିତ ଥିଲା । ହୁଏତ ପ୍ରତୀଚି ହାତରୁ ଖସି ପଡ଼ିଥିଲା ସିନ୍ଦୂର ଫରୁଆ । ଗାଡ଼ି ଠିଆ ହେଲା ଭୃଗୁ ସାମନ୍ତଙ୍କ ଘର ଆଗରେ ।

ଘିଅ ଦୀପ ଜଳୁଥିଲା ରୁଖା ଉପରେ । ପୂର୍ଣ୍ଣକୁମ୍ଭ ଥୁଆ ହୋଇଥିଲା ବଧୂବରଣ ପାଇଁ । ହୁଳହୁଳି ସହିତ ଶୁଭଶଂଖ ବାଜି ଉଠିଲା । ଆଗେଇ ଆସିଲା ପୁଲୋମା ବରକନ୍ୟାଙ୍କୁ ଗାଡ଼ି ଭିତରୁ ଓହ୍ଲେଇ ଆଣିବାକୁ ।

ଆରମ୍ଭ ହେଲା ବନ୍ଦାପନା ପର୍ବ । ଏବଂ ଗୃହ ପ୍ରବେଶର ଶୁଭଲଗ୍ନ..... ଏଥର ନିଜେ ଭୃଗୁ ଦି'ପାଦ ଆଗକୁ ଯାଇ ଘର ଦୁଆରେ ମୁହଁରେ ଠିଆ ହୋଇ ସ୍ୱାଗତ ଜଣେଇଲେ ଲକ୍ଷ୍ମୀକୁ । "ଆସ ଲକ୍ଷ୍ମୀ... ଘର ଭିତରକୁ ଆସ.... ମୋର ଏଇ ଘର ଅନେକ ଦିନରୁ ଅପେକ୍ଷା କରିଛି ତୁମକୁ.... ତା' ଆଖିରେ ନିଦ ନାହିଁ, ତମେ ଆସିବ ବୋଲି, ଆସ... ।" ହାତ ବଢ଼େଇ ଦେଲେ ଭୃଗୁ ଲକ୍ଷ୍ମୀ ଆଡ଼କୁ । ଓଢ଼ଣା ତଳେ ଲକ୍ଷ୍ମୀ ରୋମାଂଚିତ ହେଲା । ଲକ୍ଷେ କଦମ୍ବର ରୋମାଂଚ ନେଇଁ ଭୃଗୁଙ୍କ ହାତଧରି ନିଜ ଅଳତା ପିନ୍ଧା ପାଦକୁ ବଢ଼େଇ ଦେଲା ଘର ଭିତରକୁ... ପ୍ରତୀକ୍ଷିତ ସ୍ୱପ୍ନର ଫୁଲଝରିମାନେ ଫୁଟି ଉଠିଲେ ଉରଳା ହୋଇ ।

ପୁଲୋମା ବାଟ ଜଗି ବସିଥିଲା ଦୁଆର ମୁହଁରେ । ହସି ହସି କହିଲା- "ଏଠି କିନ୍ତୁ ମୋ ଭୂମିକା ବଦଳିଗଲା ଭାଉଜ..... ମୋ' ପାଉଣା ଦେଇ ତମେ ଘର ଭିତରକୁ ପାଦ ବଢ଼ାଅ... ।"

ଲକ୍ଷ୍ମୀ ଉଲ୍ଲସିତ ହୋଇ ନିଜ ଆଙ୍ଗୁଠିରୁ ମୁଦି କାଢ଼ି ପିନ୍ଧେଇ ଦେଲା ପୁଲୋମାକୁ । ଭୃଗୁ ଲକ୍ଷ୍ୟ କଲେ ତାଙ୍କ ନାଲିପଥର ବସା ମୁଦିଟା ଲକ୍ଷ୍ମୀ ଆଙ୍ଗୁଠିରେ ଝଟକି ଉଠି ସତେ ଯେମିତି କହୁଛି, ମୋ' ପ୍ରତୀକ୍ଷାର ଅନ୍ତ ହେଲା ଏଥର ।

ନବବଧୂ ଲକ୍ଷ୍ମୀ ଗୃହ ପ୍ରବେଶ କଲା ଗୋଧୂଳିର ଅଳତା ସିନ୍ଦୂରରେ ଗାଧୋଇ ହୋଇ । ଏ ଜୀବନର ଆଉ ଗୋଟିଏ ମୋଡ଼ ।

ଲମ୍ୱା ଦୀର୍ଘଶ୍ୱାସଟିଏ ନେଲା ଲକ୍ଷ୍ମୀ । "ପୁଲୋମା ଭୃଗୁଙ୍କ ପଢ଼ାଘର - ଲାଇବ୍ରେରୀରେ ଲକ୍ଷ୍ମୀକୁ ବସେଇ ଦେଇ ପଚାରିଲା "କ୍ଳାନ୍ତ ଲାଗୁଛି ନା, ଟିକିଏ ବିଶ୍ରାମ ନିଅ' ଅତିଥିମାନଙ୍କ କଥା ବୁଝି ସାଂଗେ ସାଂଗେ ମୁଁ ଆସୁଛି - ଅଡୁଆ ଲାଗିବ ଏକା ବସିବା ପାଇଁ ତୁମକୁ ? ଅବଶ୍ୟ ଏଣିକି ତ ଏ ଘର ତମର ।" "ନା, ମୁଁ ବସିଛି - ତମେ ଯାଅ ।" ପୁଲୋମା ଚାଲିଗଲା ତରବର ହୋଇ ।

ପୁଲୋମା ଚାଲିଗଲା ପରେ ନିଜକୁ ମୁହୂର୍ତ୍ତେ ସ୍ଥିର କରିନେଇଁ ଚାହିଁଲା ଚାରିଆଡ଼କୁ ସେ । ସମ୍ଭ୍ରାନ୍ତ କୋଠରିଟି । ଭୃଗୁଙ୍କ ଲାଇବ୍ରେରି, ପାଖକୁ ବହି ଆଲମାରି, ଟେବୁଲ୍ ଚେୟାର୍‌କୁ ଛାଡ଼ି ଆହୁରି ଦି'ଟା ଗଡ଼ରେଜ୍ ଆଲମାରି ଗୋଟିଏ ଛୋଟ ଡିଭାନ୍ - ଯୋଉଠି ସେ ବସିଛି । ଗେଷ୍ଟରୁମ୍ ବି ହୋଇପାରେ । ଅନ୍ୟ କୋଠରିଗୁଡ଼ାକୁ ସେ ଦେଖିନି, ଅତିଥିମାନେ ଅଛନ୍ତି ।

ଇଏ ଭୃଗୁଙ୍କ ସଂସାର । ଏଣିକି ତାର ସଂସାର ହେବ । ଭୃଗୁଙ୍କ ହାତଧରି ଏଥର ସେ ବାଟ ଚାଲିବ - ତାଙ୍କ ସୁଖଦୁଃଖକୁ ଭାଗ କରିନେବ । ସଂସାର ପାତିବାର ବ୍ୟାକରଣ ଇଏ - ଆସିଲା ବେଳେ ସମସ୍ତେ ପଢ଼େଇଛନ୍ତି ଏକଥା ତାକୁ । ସେ ତ ନିଜେ ଦେଖିଆସିଛି ବାପାବୋଉଙ୍କୁ ।

ଲକ୍ଷ୍ମୀ ଭାବିଲା, ଜୀବନର ଏଇ ନୂଆଁ ମୋଡ଼ରେ ଠିଆ ହୋଇ ଭାରତର ବଡ଼ା ବଡ଼ା ବୁଦ୍ଧିମାନ୍ ବୁଦ୍ଧିମତୀଙ୍କ ଭିତରୁ ଜଣେ ହୋଇ ନୁହଁ ଜଣେ ସାଧାରଣ ଝିଅଟିଏ ଭଳି, ଭାବିଲା... ଠିକ୍ ତ ଦି'ଟା ଅଲଗା ମଣିଷ ସଂସାର ପାତିବାକୁ ଗଲାବେଳେ ପାଦ ସଂଗେ ପାଦ ମିଶାଇ ନ ଚାଲିଲେ ସଂସାରର ଚିରାଚରିତ ଛନ୍ଦ ଯେ ବେଛନ୍ଦ ହୋଇଯିବ, ବେସୁରା ଶୁଭିବ ଜୀବନ ସଂଗୀତ, ଏଥିରେ ସନ୍ଦେହ ନାହିଁ । ସଂସାର ବୁଝାମଣା ଉପରେ ଠିଆହୁଏ । ବିଶ୍ୱାସ ପରସ୍ପର ପ୍ରତି ବିଶ୍ୱାସ ସେଇ ମୂଳଦୁଆକୁ ମଜଭୁତ୍ କରେ । ଲକ୍ଷ୍ମୀର ଭାବନା ମୁହୂର୍ତ୍ତେ ଅଟକି, ନିଃଶ୍ୱାସ ନେଇ ଭାବିଲା, ସେ କ'ଣ ଏଇ ଗତାନୁଗତିକ ସ୍ୱାମୀ-ସ୍ତ୍ରୀ-ପୁଅଝିଅ - ସଂସାରର ଚାରିକାନ୍ଥ ଭିତରେ ଥାଇ ଭଲ ସ୍ତ୍ରୀ ଭଲ ମାଁଟିଏ ହେବାର ସ୍ୱପ୍ନ ଦେଖିଥିଲା, ନା, ଉଚ୍ଚପଦସ୍ଥ ଅଫିସରଟିଏ ହୋଇ ଉପରିସ୍ଥଙ୍କ ନିର୍ଦ୍ଦେଶ କାର୍ଯ୍ୟକାରୀ କରି ମାସ ଶେଷରେ ଆଖି ବୁରୁଶିଆ ଦରମା ନେଇଁ ସୁଖଶାନ୍ତିରେ ଜୀବନ ବିତେଇବାର ଆଶାପୋଷଣ କରିଥିଲା ? ?

ନିଜକୁ ଏ ପ୍ରଶ୍ନ କରି, ଉତ୍ତର ଖୋଜୁଖୋଜୁ ଠିଆ ହୋଇଗଲା ସେ ଭାବନା ବାଟରେ । ହଠାତ୍ ତା'ଭିତରର ମୁକ୍ତ ସ୍ୱାଧୀନ ଚିନ୍ତାର ନାରୀଟି ବ୍ୟସ୍ତ ବିକଳ ହୋଇ ତା' ସାମ୍ନାରେ ଆସି ଠିଆ ହୋଇ କହିଲା "ପ୍ଲିଜ୍, ମୋତେ ବାନ୍ଧିଦିଅନା ଏମିତି, ମୁଁ ଅଣନିଃଶ୍ୱାସୀ

ହୋଇଯିବି । ତମେ କ'ଣ ଜାଣିନ ମୋ' ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ କ'ଣ... ମୋ ସଂକଳ୍ପ ଯେ ଭିନ୍ନ... ଏଇ ସୁଖ ଏ ନିଶ୍ଚିନ୍ତତା ମୋତେ ଯଦି କାବୁ କରିନିଅନ୍ତି, ମୋହଗ୍ରସ୍ତ କରିଦିଅନ୍ତି... ମୋର ଭୟ ହେଉଛି.... ।"

"କାହିଁକି, ଭୟ କାହିଁକି ? ନିଜ ଉପରେ ତୋର ବିଶ୍ୱାସ ନାହିଁ ? ବିବାହଟା ଜୀବନର କ'ଣ ଶେଷ କଥା ? ଇଏ ତ ଜୀବନଚର୍ଯ୍ୟାର ଗୋଟାଏ ଶୃଙ୍ଖଳିତ ଦିଗ ମାତ୍ର । ସ୍ୱାଭାବିକ ଭାବେ ଆସେ.... ।"

ଲକ୍ଷ୍ମୀର ଭାବନା ଛିଣ୍ଡିଗଲା । ଶୀତରାତିର ଘର ଭିତରକୁ ପଶିଆସିଲା ଲଘୁ କୋଳାହଳର ଉଷ୍ମତା । ପୁଲୋମା ସହିତ ଆର୍ଯ୍ୟ, ରାଘବବାବୁ ଓ ଅଭୟା ପଶି ଆସିଲେ କଥା ଲହରେ । ତାଙ୍କ ପଛରେ ଭୃଗୁ ମଧ ।

"ଲକ୍ଷ୍ମୀ ସସମ୍ଭ୍ରମେ ଓହ୍ଲେଇପଡ଼ିଲା ଖଟ ଉପରୁ ଏବଂ ପ୍ରଣାମ ଜଣେଇଲା ପାଦ ଛୁଇଁ ରାଘବସାର୍ ଓ ଅଭୟା ମାଁଙ୍କୁ । ସାମନ୍ତ ପରିବାରର ବୋହୂ ଲକ୍ଷ୍ମୀର ଏହା ଥିଲା ପ୍ରଥମ ପ୍ରଣାମ । ମନଭରି କଲ୍ୟାଣ କଲେ ଦୁହେଁ.... ।" ତୋ' ଜୀବନର ଚଲାପଥ ପୁଷ୍ପିତ ହେଉ ମାଁ, ପ୍ରତିଟି ସୋପାନରେ ସଫଳତା ଅର୍ଜନ କର, ତୋ ସ୍ୱପ୍ନ' ଫଳବତୀ ହେଉ, ହେଉ ଆକାଶ ଛୁଆଁ ।"

ନୂଆଘର, ନୂଆ ସଂସାରକୁ ପରଖିବାକୁ ସମୟ ପାଇନଥିବୁ ଆହୁରି, ତଥାପି କାହିଁକି ଭାବିଲି ଘରକୁ ଫେରିବା ପୂର୍ବରୁ ତୋତେ ଥରେ ଦେଖିଯାଏ...କିଛି ଅସୁବିଧା ହେଉନି ତ ମାଁ..... ?

ନିରବରେ ମୁଣ୍ଡ ହଲେଇ କହିଦେଲା ଲକ୍ଷ୍ମୀ 'ନା' ।

ମୁଁ ଜାଣେ ତୁ ସବୁଠି ନିଜକୁ ଖାପଖୁଆଇ ନେବୁ । ତେବେ ଆଗାମୀ ସକାଳ ତୋ ପାଇଁ ନୂଆ ସକାଳ ହେବ ଅନେକ ଅନେକ ନୂଆଁ ସଂଦେଶ ନେଇଁ ଆସିବ । ଅନେକ ଦାୟିତ୍ୱ....ଉଠାପକା ଲମ୍ବା ରାସ୍ତା....ତୁ ସାମ୍ନା କରିପାରିବୁ ତାକୁ । ତୋର ନିଷ୍ପତ୍ତି ନେବାରେ କେବେ ଭୁଲ୍ ହେବନି, ତେବେ, ନୂଆ ସଂସାର, ବାହାରେ ଯେ ଗୋଟାଏ ବଡ଼ ସଂସାର, ବଡ଼ ପରିବାର ତୋ ପାଇଁ ଅପେକ୍ଷା କରିଛି ତାକୁ କେବେ ଭୁଲିବୁନି ମା' । ତୋ ଆତ୍ମବିଶ୍ୱାସ ଉପରେ ମୋର ଭରସା ଅଛି । ମୁଁ ତ ତୋତେ ପିଲାଟି ଦିନୁ ଦେଖିଆସିଛି, ଦେଖିଆସିଛି ମଧ ତୋ' ଭିତରର ସେଇ ଆତ୍ମଯୋଦ୍ଧାଟିକୁ, ଯିଏ ଅହରହ ପ୍ରତିକୂଳ ପରିସ୍ଥିତି ସହିତ ଲଢ଼ିଆସିଛି; କେବେ ହାରିନି, ଆଗକୁ ବି କେବେ ହାରିବନି ସେ, ଭାରି ସ୍ୱାଭିମାନୀ ତ !

ଏଣିକି ତୁ ଆଉ ଏକା ନୁହଁ - ସାଂଗରେ ସାଥୀ ଅଛି ଲଢ଼ିବା ପାଇଁ । ଭୃଗୁ ତୋର ଉପଯୁକ୍ତ ଜୀବନସାଥୀ, ତୋର ମାର୍ଗଦର୍ଶକ । ତୋ ପାଇଁ ଜୀବନଯାତ୍ରା ସହଜ ହେଇଯିବ

ତାଙ୍କ ଭଳି ଦକ୍ଷ ସାଥୀ ଥିଲେ । ଭୃଗୁଙ୍କ ଆଡ଼କୁ ଚାହିଁ ହସି ହସି କହିଲେ, ମୁଁ କ'ଣ କିଛି ଭୁଲ୍ କହିଛି ? ଆମ ଲକ୍ଷ୍ମୀ ତ ହୀରାଟିଏ..... ଆବେଗରେ ତାଙ୍କ କଣ୍ଠ ରୁଦ୍ଧ ହେଇଗଲା, ଭୃଗୁ ଆଉ ଲକ୍ଷ୍ମୀର ହାତକୁ ଏକାଠି ଧରି କହିଲେ ସୁଖୀ ହୁଅ ଦୁହେଁ । ତୁମ ଭିତରର ସୂକ୍ଷ୍ମ ଚେତନା, ବିଶ୍ୱଚେତନାକୁ ଉଦ୍‌ବୁଦ୍ଧ କରୁ..... ଏହା ହିଁ ମୋର କାମନା..... ତୁମ ଦୁହିଁଙ୍କୁ ଏକାଠି ଦେଖି ମୁଁ ଆଜି ଖୁବ୍ ଆନନ୍ଦିତ । ଭଲ ଲାଗୁଥିଲା ଭୃଗୁଙ୍କୁ ଲକ୍ଷ୍ମୀର ପ୍ରଶଂସା ଶୁଣିବାକୁ ମନେ ମନେ ସେ ପୁଲକିତ ହେଉଥିଲେ । ଏଥର ଭୃଗୁ ଆଉ ଲକ୍ଷ୍ମୀ ଦୁହେଁ ପ୍ରଣାମ କଲେ ଅଭୟା ଓ ରାଘବବାବୁଙ୍କୁ, ଆଶୀର୍ବାଦ ଭିକ୍ଷା କରି । ସବୁବେଳେ ଅଛି ଆମ ଆଶୀର୍ବାଦ ତୁମ ସହିତ..... ।

ଚତୁର୍ଥୀ ହୋମ ସରିଲା । ସମସ୍ତେ ଯିବା ପାଇଁ ଉଦ୍ୟତ ହେଲେ । ଭୃଗୁ ସେମାନଙ୍କୁ ବିଦାୟ ଦେବା ପାଇଁ ଆଗେଇ ଗଲେ । ଲକ୍ଷ୍ମୀ ରହିଲା । ଅବଶ୍ୟ ଭୃଗୁଙ୍କର ସ୍ୱତନ୍ତ୍ର ଅନୁରୋଧରେ ପୁଲୋମା ସେମାନଙ୍କ ସହିତ ଘରକୁ ନ ଯାଇ ରହିଗଲା ଲକ୍ଷ୍ମୀକୁ ଏକା ଲାଗିବ ବୋଲି । କେବଳ ସେମାନଙ୍କୁ ବାଟୋଇ ଦେବା ପାଇଁ ବାହାର ପର୍ଯ୍ୟନ୍ତ ଗଲା ।

ସମସ୍ତେ ଚାଲିଗଲା ପରେ ଲକ୍ଷ୍ମୀକୁ ସତରେ ନିଛାଟିଆ ଲାଗିଲା - ଘରର ଅନ୍ୟମାନେ ବାହାରଘରେ ବସି ଗପ ଜମେଇଥିଲେ । ମଝିରେ ମଝିରେ ବିଲୁର ପାଟି ଶୁଭୁଥିଲା ଯାହା । ନୂଆ ପରିବେଶ, ପୁଣିଥରେ ଲକ୍ଷ୍ମୀକୁ ଭାବନା ଜଗତକୁ ନେଇଁଗଲା । ମନେପଡ଼ିଲା ଆଶ୍ରମ - ଆଶ୍ରମର ଅନ୍ତେବାସୀ, ସିନ୍ଧୁଆଈର ଔଷଧ ଖାଇବା ବେଳ ହେଇଯାଇଥିବ - ନିଧି ମଉସାଙ୍କୁ ଇଞ୍ଜେକସନ୍ ଦେବା କଥା ଖାଇବା ପୂର୍ବରୁ - ରାଣୀଆଈ କାଶୁଥିଲା - ଆଉ ବୋଉ ଏଇ କାମ ଜଂଜାଳ ଭିତରେ ବାପାଙ୍କ ଖବର ନେଇଥିବ କି ନାହିଁ..... ସୁଲତା ମାଉସୀର ଅଣ୍ଟା ଧରିଥିଲା.... କ'ଣ କରୁଥିବେ ସମସ୍ତେ କେଜାଣି...ବ୍ୟସ୍ତ ଲାଗିଲା ନିଜକୁ ଖୋଜୁଥିବେ ତାକୁ ସମସ୍ତେ ନିତିଦିନର ରୁଟିନ୍ କାମ ସବୁ ନିଶ୍ଚୟ ଏପାଖ ସେପାଖ ହେଇଯାଇଥିବ । ହେଇଯିବ ମଧ ଏଇ କିଛିଦିନ ପୁଣି ନୂଆ ଅଭ୍ୟାସରେ ପଡ଼ିଲା ପର୍ଯ୍ୟନ୍ତ । ସେ କିନ୍ତୁ ସମସ୍ତଙ୍କୁ କାନେ କାନେ କହି ଆସିଥିଲା ଅଲେଖକୁ ଦେଖେଇ ଆସିଥିଲା କୋଉଠି କ'ଣ ଅଛି.... ମନେଥିଲେ ତ, ତାକୁ ଲାଗିଲା, ଦୌଡ଼ିଯାଇ କାମ ସାରି ଆସନ୍ତା ହେଲେ । ହେଲେ କେମିତି ଯିବ ? ସେଇ ସ୍ୱାଧୀନତା ଟିକକ ତ ସେ ସକାଳର ଯଜ୍ଞକୁଣ୍ଡରେ ଆହୂତି ଦେଇ ଆସିଛି । ଭାବନାର ତୀବ୍ରତା ଭିତରେ ତା'ର ଦାୟିତ୍ୱବୋଧସଂପନ୍ନ ମନଟା ଅସ୍ଥିର ହେଇଉଠିଲା କ୍ଷଣିକ ପାଇଁ ଏବଂ ଭାବିଲା, ହୁଏତ ଯାରି ନାଁ ବନ୍ଧନ । ସଂସାରୀର ଏଇ ନୂଆ ଅନୁଭୂତିକୁ ଅନୁଭବ କଲା ଲକ୍ଷ୍ମୀ ନିଜ ଭିତରେ ପ୍ରଥମ ଥର ପାଇଁ । ସମସ୍ତ ସୁବିଧା, ସୁଯୋଗ ଥିଲେ ବି, ସମ୍ଭବ ହେଲେ ବି, କାହିଁକି କେଜାଣି ଗୋଡ଼ କାଢ଼ି ହୁଏନା ବାହାରକୁ । ଆପେ ଇଚ୍ଛା ବନ୍ଦ ହେଇଯାଏ,

କାହାର ଆଦେଶ ନିର୍ଦ୍ଦେଶକୁ ଯେମିତି ଅପେକ୍ଷା..... ଏଣିକି ଅନେକ କଥା ପାଇଁ ଅପେକ୍ଷା ହିଁ କରିବାକୁ ହେବ । ସଂସାରଟା ବୁଝାମଣାର ।

ଲକ୍ଷ୍ମୀର ଦାୟିତ୍ୱସଂପନ୍ନ ମନଟା ନିଜକୁ ନିଜେ ଆଶ୍ୱାସିଲା । ସବୁ ହିଁ ହେବ; ସମୟ ସବୁକିଛି ସଜାଡ଼ିଦେବ । କାହା ଅବର୍ତ୍ତମାନରେ କେବେ କ'ଣ କିଛି ଅଟକି ଯାଏ ? ଚାଲେ.... ତା' ନିଜ ବାଗରେ । ତଥାପି ଲକ୍ଷ୍ମୀର ଇଚ୍ଛା ହେଲା, ଫୋନ୍‌ଟିଏ କରି ବୁଝିନେବା ଉଚିତ୍ ହେବ । ହେଲେ ତା'ର ଫୋନ୍..... ମୋବାଇଲ୍‌ଟା ସେ କୋଉଠି ରଖିଛି କେଜାଣି ମନେ ପକେଇ ପାରୁନଥିଲା ହଠାତ୍ । ଆଶ୍ରମରେ ଛାଡ଼ି ଆସିନି ତ ଆଉ.... ପୁଲୋମାକୁ ପଚାରିଲେ ହୁଅନ୍ତା.... ହେଲେ ସିଏ ବି କୋଉଠି ଅଛି କେଜାଣି.... ଛାଡ଼ । ସେଇ ଅପେକ୍ଷାର କଥା ପୁଣି ।

ଠିକ୍ ଏତିକି ବେଳକୁ ଭୃଗୁ ଆସି ପହଞ୍ଚିଲେ । ଲକ୍ଷ୍ମୀ ଅନ୍ୟମନସ୍କ ଥିଲା । ହଠାତ୍ ଜାଣିପାରିଲାନି ଭୃଗୁଙ୍କ ଉପସ୍ଥିତିକୁ । ଲକ୍ଷ୍ମୀ ମୁହଁରେ ଚିନ୍ତାର ଛାଇ ଦେଖି "କ'ଣ ଭାବୁଛ ଲକ୍ଷ୍ମୀ.... କିଛି ଅସୁବିଧା..." ପ୍ରଶ୍ନ କଲେ ଭୃଗୁ ।

ଚମକି ପଡ଼ିଲା ଲକ୍ଷ୍ମୀ ନିଜ ଭିତରେ । ଭୃଗୁଙ୍କୁ ପାଖରେ ଦେଖି କହିଲା- "ନା ନା ଅସୁବିଧା କିଛି ନାହିଁ, ପୁଲୋମାକୁ ଖୋଜୁଥିଲି.... ମୋ ସେଲ୍‌ଫୋନ୍‌ଟା...."

ନିଜ ଫୋନ୍‌କୁ ବଢ଼ାଉ ବଢ଼ାଉ ପଚାରିଲେ- 'ହଠାତ୍ ଫୋନ୍‌ର ଆବଶ୍ୟକତା.....,' ଆଶ୍ରମକୁ ଥରେ ଫୋନ୍ କରି ବୁଝିନିଅନ୍ତି ଅଲେଖ ଠିକ୍ ସମୟରେ ଯାହାକୁ ଯାହା ଇଞ୍ଜେକସନ୍ ଔଷଧ ଦେବା କଥା, ଦେଇଛି କି ନାହିଁ..... ବାସ୍.... ସେଇଥିପାଇଁ । ଚକିତ ଲାଗିଲା ଭୃଗୁଙ୍କୁ । ଲକ୍ଷ୍ମୀର ଦାୟିତ୍ୱବୋଧ ସତରେ ତାଙ୍କୁ ମୁଗ୍ଧ କରିଥିଲା । ତଥାପି ହସି ହସି ଲଘୁ ମନ୍ତବ୍ୟ କରୁ କରୁ କହିଲେ ସତରେ ତମେ ଅଦ୍ଭୁତ ଝିଅ, ଅନ୍ତତଃ ଏଇ ଦିନ ଦି'ଟା ପାଇଁ ତମର କର୍ମକ୍ଷେତ୍ର ଏବଂ ଦାୟିତ୍ୱ ଯେ ବଦଳି ଯାଇଛି, ତମର ବୋଧେ ମନେ ନାହିଁ ।"

ଫୋନ୍ କରିସାରି ଲକ୍ଷ୍ମୀ ଉତ୍ତର ଦେଲା, "ବୟସ୍କ ମଣିଷମାନେ ତ, ଠିକ୍ ସମୟରେ ଔଷଧ ନ ଦେଲେ, ଅଡୁଆ ହେବ.... ସଜାଡ଼ିବାକୁ ଯାଇ ଆମେ ହିଁ ତ ହଇରାଣ ହେବା, ସେଇଥିପାଇଁ ଚିନ୍ତା ଲାଗୁଥିଲା ।"

ଭୃଗୁ କୌଣସି ଉତ୍ତର ନ ଫେରେଇ ମୁଗ୍ଧ ଅଥଚ ବିସ୍ମୟ ଆଖିରେ କେବଳ ଚାହିଁଥିଲେ ଆଗରେ ବସିଥିବା ତାଙ୍କର ପ୍ରିୟତମାକୁ... ଯିଏ ସାଧାରଣ ହେଇ ବି ଅସାଧାରଣ ମନେହେଉଥିଲା ସେଇ ମୁହୂର୍ତ୍ତରେ ।

ରାତିର ବୟସ ବଢୁଥିଲା କ୍ରମଶଃ । ଘରର ପରିବେଶ ଶାନ୍ତ ଓ ନିରବ ଥିଲା ।

ଦିନଯାକର କ୍ଳାନ୍ତି ସଭିଙ୍କ ଆଖିରେ ନିଦର ଅଞ୍ଜନ ବୋଳି ଦେଇଥିଲା । ଅଷ୍ଟମୀର ଫାଳିକିଆ ଜହ୍ନ ବାହାରେ ଜ୍ୟୋସ୍ନା ଅଜାଡ଼ି ଦେଉଥିଲା ।

ନିଜେ ଭୃଗୁ ଲକ୍ଷ୍ମୀର ହାତଧରି ଡାକିନେଲେ ତାଙ୍କ ନିଜ କୋଠରିକୁ । କୋଠରି ଭିତରଟା ରଜନୀଗଂଧାର ମହକରେ ମହକି ଉଠି ରୋମାଂଚିତ କରୁଥିଲା ଦୁଇ ହୃଦୟକୁ । ଘର ଭିତର ଝରକା ଖୋଲି ଭୃଗୁ କହିଲେ, ଦେଖୁଛ ଲକ୍ଷ୍ମୀ ଜହ୍ନ କିମିତି ଜ୍ୟୋସ୍ନା ଅଜାଡୁଛି ବସୁଧା ଛାତିରେ । ମୁଁ ଜାଣେ, ଜହ୍ନ ଆଉ ଜହ୍ନରାତି ତମର ଖୁବ୍ ପ୍ରିୟ, ଅଥଚ ଦେଖ, ମୁଁ ଚାହିଁଲେ ବି ତମକୁ ଆଜି ଏଇ ଜହ୍ନରାତିକୁ ଉପହାର କରି ଦେଇପାରୁନି । ଏଇ ଘରେ ସେଇ ସୁବିଧା ନାହିଁ....କହି ମୁହୂର୍ତ୍ତେ ଅଟକି ଯାଇ ପୁଣି କହିଲେ, ତଥାପି ଭଏ 'ଘର', ତମେ ହିଁ ତ ମୋତେ ଭେଟି ଦେଇଛ । ଏକ ପରିପୂର୍ଣ୍ଣ 'ଘର' ।

ଲକ୍ଷ୍ମୀ ମନପ୍ରାଣ ଦେଇ ଶୁଣୁଥିଲା ଭୃଗୁଙ୍କ କଥା ଏବଂ ହଜିଯାଇଥିଲା ନିଜ ଭିତରେ, ହଠାତ୍ ଭୃଗୁଙ୍କ ପାଟିରେ ତା'ର ଭେଟି ଦେବା କଥା ଶୁଣି ଆଶ୍ଚର୍ଯ୍ୟ ଚକିତ ହେଇ ତାଙ୍କ ମୁହଁକୁ ଚାହିଁଲା କିଛି ବୁଝିନପାରି.... କେଉ ଘର କଥା କହୁଛନ୍ତି ଭୃଗୁ..... ?

ମିଠାହସର ପାଖୁଡ଼ା ଝରାଇ ଭୃଗୁ କହିଲେ, ହଁ ତମେ ହିଁ ଦେଇଛ ଲକ୍ଷ୍ମୀ । ଏଇଟା ଆଉ ବସାଘର ନୁହଁ, 'ଘର' - ଆମ ଘର, ଆମ ଦୁହିଁଙ୍କ ଘର । ଆଗରୁ ମୁଁ ଯାଯାବର ଥିଲି, ଘର ନ ଥିଲା ତମେ ଆସିଲ ଏ ଘର ପରିପୂର୍ଣ୍ଣ ହେଇଗଲା ତା' ଗୃହଲକ୍ଷ୍ମୀକୁ ପାଇ । କେବଳ ଘର ବୋଲି ତ କହିବିନି ତା' ସହିତ ମା' ଭାଇ, ବଂଧୁ କୁଟୁମ୍ବ ସ୍ନେହଶ୍ରଦ୍ଧା ଆତ୍ମୀୟତା ସବୁକିଛି ମିଳିଗଲା ମୋତେ.... ଆବେଗରେ କଣ୍ଠରୁଦ୍ଧ ହେଇ ଆସୁଥିଲା ତାଙ୍କର ଭାବପ୍ରବଣ ହେଇ ପଡୁଥିଲେ ସେ ।

ଜାଣ ଲକ୍ଷ୍ମୀ ବେଳେବେଳେ ଏମିତି ସମୟ ଆସେ ମଣିଷ ନ ଚାହିଁ ମଧ ତାକୁ ଆଶାତୀତ ଭାବେ ଅନେକ କିଛି ମିଳିଯାଏ, ସେ ଛୋଟ ହେଉ କି ବଡ଼ କିଛି - ଆଉ ସେଇ ପାଇବାଟା ମନରେ ଯୋଉ ଆନନ୍ଦ ଭରିଦିଏ, ତାର ମାପ ନାହିଁ, ମାପି ହୁଏନା - ଠିକ୍ ସେମିତି ମୋ ଜୀବନରେ ତମେ ।

ମୋ ଭଳି ପରିଚୟ ଶୂନ୍ୟ, ଆଗପଛ ନଥିବା ମଣିଷଟି 'ପରିପୂର୍ଣ୍ଣ ଘର'ର ସ୍ୱପ୍ନ ଦେଖିବା ଯଥାର୍ଥ ହେଉ କି ନ ହେଉ, ଭୟ ଲାଗୁଥିଲା । ଆଜି କିନ୍ତୁ ସେଇ ଭୟ ମୋର ଦୂର କରି ଦେଇଛ ତମେ । ମୁଁ ଆଶ୍ୱସ୍ତ ହୋଇଛି । ସେଇ ଆନନ୍ଦକୁ ପ୍ରକାଶ କରିବା ପାଇଁ ଭାଷା ନାହିଁ ମୋ ପାଖରେ... କହୁ କହୁ ଆବେଗରେ ସେ ଲକ୍ଷ୍ମୀକୁ ଜଡ଼େଇ ଧରିଲେ....

ଏଇ ଆକସ୍ମିକତାରେ ଲକ୍ଷ୍ମୀ ସଂକୁଚିତ ହେବା ସଂଗେ ସଂଗେ ରୋମାଂଚିତ ହେଲା । ଏଥର ସେ ବୁଝିପାରିଲା ଭୃଗୁଙ୍କ କଥାର ବ୍ୟଞ୍ଜନା- ସ୍ନେହସ୍ନିଗ୍ଧ କଣ୍ଠରେ କହିଲା

– ଆଗପଛ ପରିଚୟର ତ ପ୍ରଶ୍ନ ନାହିଁ ଏଠି – ତୁମ ଉଜ୍ଜ୍ୱଳ ପୁରୁଷାର୍ଥ ହିଁ ତମର ଏକାନ୍ତ ପରିଚୟ । ଆଉ ସେଇ 'ପରିଚୟ'ର ବିକଶିତ ରୂପ ହିଁ ମୋର ଜହ୍ନ ଆଉ ଜହ୍ନରାତି । ଯାହାକୁ ମୁଁ ମୋ ଜୀବନ ସହିତ ଜଡ଼େଇ ନେଇଛି । ସେଠି ସେ ସହସ୍ର ଜହ୍ନରାତିର ଚନ୍ଦ୍ରିକା ଢାଳୁଛି ନିତି.... ଆଲୋକିତ କରୁଛି ମୋ ଭିତର ବାହାର ଆଉ ଚେତନ ଜଗତକୁ । ଆକାଶର ଜହ୍ନ ତ ଅନେକ ଦୂରରେ ମୋ' ଜହ୍ନ ତ ମୋ ଅନ୍ତର ଭିତରେ.... ।

ପ୍ରଲୁବ୍ଧ ହେଉଥିଲେ ଭୃଗୁ ଲକ୍ଷ୍ମୀର ମହୁବୋଳା ଅନ୍ତରଂଗତାରେ । ହଠାତ୍ ମାର୍ଗଶିରର ଶୀତୁଆ ପବନ ପଶି ଆସିଲା ଝରକା ଦେଇ... ଲକ୍ଷ୍ମୀର ମୁଣ୍ଡରୁ ଓଢ଼ଣା ଖସିପଡ଼ିଲା.... ଶିହରି ଉଠିଲା ସେ.... ଝରକା ବନ୍ଦ କରିବା ଆଗରୁ ହଠାତ୍ ଆଲୁଅ ମଉଳିଗଲା ବାହାରେ । ଟେନାଏ କଳାମେଘ ଭିତରେ ମୁହଁ ଲୁଚେଇଲା ଫାଳିକିଆ ଜହ୍ନଟା । ହେଲେ ଘର ଭିତରେ, ଲକ୍ଷ୍ମୀର ମନ ଅଗଣାରେ ଚମକି ଉଠିଲା ଚଂପଳ ଚନ୍ଦ୍ରିକାର ଅମିୟ କିରଣ ।

ରାତି ନିବିଡ଼ରୁ ନିବିଡ଼ ହେଉଥିଲା କ୍ରମଶଃ.....

କଜଳପାତିର ଡାକରେ ନିଦ ଭାଙ୍ଗିଲା ଲକ୍ଷ୍ମୀର । ଧଡ଼ପଡ଼ ହେଇ ଉଠିବସିଲା ସେ । ମନେ ପଡ଼ିଗଲା ଏ ଘରେ ସେ ନୂଆ ବୋହୂ । ଆଜିର ସକାଳ ତାର ପହିଲି ସକାଳ । ନୂଆ ସକାଳର ବାସ୍ନାକୁ ପ୍ରାଣଭରି ଆଘ୍ରାଣ କରୁ କରୁ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ିଲା – ଜୀବନଯାତ୍ରାର ଏଇ ନୂଆ ଚଲାପଥକୁ ଅକ୍ଳେଶରେ ପାରି ହେବା ପାଇଁ ସାହସ ଦିଅ ପ୍ରଭୁ । ଯେମିତି ମୋ ସଂକଳ୍ପରୁ ମୁଁ ବିଚ୍ୟୁତ ନ ହୁଏ ।

ବିଛଣାରୁ ଉଠି ଲକ୍ଷ୍ମୀ ଝରକା ଖୋଲିଲା । ସେତେବେଳକୁ ସିନ୍ଦୂରା ଫାଟି ଆସୁଥିଲା – ନାଲିଚା ଦିଶୁଥିଲା ଆକାଶ । ନୂଆ ସୂର୍ଯ୍ୟଙ୍କୁ ପ୍ରଣାମ ଜଣେଇବା ପାଇଁ ଆଖି ବୁଜିଲା ସେ । ହୁଏତ କାମନା କରୁଥିଲା ତା'ର ଆଗାମୀ ଜୀବନ ହୀରାଟିଆ ସକାଳରେ ପରିଣତ ହେଉ ।

ଭୃଗୁଙ୍କ ନିଦ ବି ଭାଙ୍ଗି ଆସିଲା । ନିଦ ମଳମଳ ଆଖିରେ ଅଳସ ଭାଙ୍ଗୁ ଭାଙ୍ଗୁ ଚାହିଁଲେ ଲକ୍ଷ୍ମୀ ଝରକା ପାଖରେ ଠିଆ ହେଇ ଆକାଶକୁ ଚାହିଁଛି ପ୍ରଣାମ ମୁଦ୍ରାରେ । ଅପୂର୍ବ ଦିଶୁଛି ତା'ର ନିଦଭଙ୍ଗା ବାସି ମୁହଁ । କୋଠରିର ଚାରିଆଡ଼କୁ ଆଖି ଘୂରି ଆସିଲା ମୁହୂର୍ତ୍ତକରେ । ସବୁ ଯେମିତି ନୂଆ ନୂଆ । ନୂଆ ରୂପ, ନୂଆ ଦୃଶ୍ୟ, ନୂଆ ମଣିଷ, ନୂଆ ଅନୁଭୂତି, ନୂଆ ପୁଲକ, ଉଚ୍ଛକିତ ଲାଗିଲା । ଭାବିଲେ – ଇଏ କ'ଣ ଜୀବନର ପୂର୍ଣ୍ଣରୂପ; ଯାକୁ ହିଁ କୁହନ୍ତି ପୂର୍ଣ୍ଣତା ? ଗୋଟାଏ ନିଶ୍ଚିନ୍ତପଣ! ତା'ହେଲେ....! ଏଇ ନିଶ୍ଚିନ୍ତପଣର କେନ୍ଦ୍ରବିନ୍ଦୁ କ'ଣ ଲକ୍ଷ୍ମୀ!!

ଭାବୁ ଭାବୁ ଶିହରଣ ଖେଳିଗଲା ଦେହ ମନରେ । ମନେ ମନେ ସ୍ୱଗତୋକ୍ତି କଲେ, "ନିତି ସକାଳେ ଆଖି ଖୋଲିଲା ବେଳକୁ ଯେମିତି ମୋ' ଆଗରେ ଏଇ ଲକ୍ଷ୍ମୀ ପ୍ରତିମାକୁ ଦେଖେ - ବାସ୍, ଏତିକି ମୋର କାମନା ପ୍ରଭୁ ।'

ଏଥର ସେ ବିଛଣା ଛାଡ଼ି ଚୁପ୍‌ଚାପ୍ ଝରକା ପାଖକୁ ଯାଇ ଲକ୍ଷ୍ମୀ ପଛରେ ଠିଆ ହେଇ ନିବିଷ୍ଟ ମନରେ ଚାହିଁଲେ ମୁହୂର୍ତ୍ତଟିଏ । ଲକ୍ଷ୍ମୀର ତନ୍ମୟତା ଭାଙ୍ଗିଲା । ହଠାତ୍ ସେ ପଛକୁ ଚାହିଁ ଦେଖେ ତ ଖୁବ୍ ନିକଟରେ ଭୃଗୁ ଠିଆ ହେଇଛନ୍ତି । ଅପ୍ରସ୍ତୁତ ହେଇଗଲା, ସଂକୋଚ ଲାଗିଲା ତାକୁ ।

ସେମିତି ମୁଗ୍ଧ ଦୃଷ୍ଟି ନେଇ ଭୃଗୁ କହିଲେ- ଥ୍ୟାଙ୍କସ୍ ଲକ୍ଷ୍ମୀ, ମେନି ମେନି ଥ୍ୟାଙ୍କସ୍ ।

- "ଥ୍ୟାଙ୍କସ୍ ! କାହିଁକି ? ?"

- "ତମେ ମୋତେ ପରିପୂର୍ଣ୍ଣ ଜୀବନଟିଏ ଦେଇଥିବାରୁ...." ।

❑❑❑



ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ର

ବହ୍ନିଳ ବିପର୍ଯ୍ୟୟ ଭିତରୁ ଜୀବନର ସବୁଜତମ ସଂଭାବନା ସଂଧାନ କରିବା ଡକ୍ଟର ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ରଙ୍କ କଥାକାରିଗରିର ବିରଳ ବିଭବ । ତୃଣମୂଳୀୟ ଚରିତ୍ରକୁ ନିଜ ଉପନ୍ୟାସରେ ପ୍ରତିନିଧିତ୍ୱ ଦେଇ ତା'ର ସକଳ ଅସହାୟତା ଭିତରୁ ବଂଚି ରହିବାର ବୃହତ୍ତର ବ୍ୟାକରଣ ପ୍ରସ୍ତୁତ କରିବାକୁ ସ୍ରଷ୍ଟା ଭଲପାଆନ୍ତି । ସ୍ୱରାଜ୍ୟଲକ୍ଷ୍ମୀଙ୍କ ଉପନ୍ୟାସ ଏହି ଅର୍ଥରେ ବୃହତ୍ତର ଓଡ଼ିଆ ସମାଜର ପ୍ରତିନିଧିତ୍ୱ କରେ । ଜଗତୀକରଣ ପରବର୍ତ୍ତୀ ନିମ୍ନବିତ୍ତ ପରିବାରର ଆର୍ଥ-ସାମାଜିକ ଦୁର୍ଦ୍ଦଶା ତାଙ୍କ ଉପନ୍ୟାସର ପ୍ରତିବଦ୍ଧ ଉପଲବ୍ଧି ।

'ଲକ୍ଷ୍ମୀ' ସେହି ଅଗଣିତ ନିଅଣ୍ଟିଆ ଓଡ଼ିଆ ଗ୍ରାମୀଣ ପରିବାରର ମାଣେ ସ୍ୱପ୍ନ । ଯିଏ ଅନ୍ନପୀଡ଼ିତ ବାପା-ମାଆଙ୍କୁ ବଂଚେଇ ରଖେ ଭବିଷ୍ୟତର ସୂର୍ଯ୍ୟୋଦୟର ପ୍ରତୀକ୍ଷାରେ । ଏ 'ଲକ୍ଷ୍ମୀ' ବଳରାମ ଦାସଙ୍କ ଠାକୁରାଣୀ କି ମନୋଜ ଦାସଙ୍କ କୁନିଝିଅ ନୁହେଁ । ସ୍ୱରାଜ୍ୟଲକ୍ଷ୍ମୀ ମିଶ୍ରଙ୍କ 'ଲକ୍ଷ୍ମୀ' ଦାରିଦ୍ର୍ୟର ଶିଳାଖଣ୍ଡ- ଯିଏ ନିଜ ପ୍ରଚେଷ୍ଟାରେ ପାଲଟିଛି ଶାଳଗ୍ରାମ । ଅନ୍ଧାରର ଏନ୍ତୁଡ଼ି ଚିରି ସିନ୍ଦୂରା ଫାଟିବାର ଏହି ସ୍ୱପ୍ନିଳ ସଂଭାବନାକୁ ଆସନ୍ତୁ ଭେଟିବା "ସକାଳର କଥା" ଉପନ୍ୟାସରେ... ।

— ଡକ୍ଟର ଦିଲୀପ କୁମାର ସ୍ୱାଇଁ




ISBN 93-88422-47-3
9789388422475